ଶିବରାମ ପାତ୍ରଙ୍କ ସ୍ମୃତିରେ ଦିଆଯାଉଥିବା ଏହି ସମ୍ମାନ ପଛରେ ନିହିତ ରହିଛି ସ୍ୱର୍ଗତଃ ଶିବରାମ ପାତ୍ରଙ୍କର ଏକ ଅନ୍ତିମ ଇଚ୍ଛା । ଜୀବନ ବ୍ୟାପୀ ସାହିତ୍ୟ ସାଧନା ସହ ସାହିତ୍ୟିକମାନଙ୍କୁ ପ୍ରେରଣା ଦେଇଛନ୍ତି ସେ । ସଚ୍ଚା ସାହିତ୍ୟିକଟିଏ ନିଷ୍ଠାର ସହିତ ସାଧନା କରୁ ଓ ଜଣେ ସାହିତ୍ୟିକ ଭାବେ ସମାଜରେ ମର୍ଯ୍ୟାଦା ଲାଭ କରୁ ଏହା ଥିଲା ତାଙ୍କର ସ୍ୱପ୍ନ । ଯେଉଁମାନେ ତାଙ୍କ ସହ ମିଶିଛନ୍ତି ସେମାନେ ତାଙ୍କ ଭିତରେ ଥିବା ସାହିତ୍ୟ ଓ ସାହିତ୍ୟିକମାନଙ୍କ ପ୍ରତି ଅନାବିଳ ପ୍ରେମ ଓ ଆଗ୍ରହକୁ ନିଶ୍ଚିତ ଭାବେ ଲକ୍ଷ୍ୟ କରିଥିବେ ।

-ପ୍ରକାଶକ

ବିଚାରର ଲଢ଼େଇରେ ନ ଅଟକି ଲଢ଼େଇ
ଭିତରେ ବିଚାର ଜାରି ରଖିଥିବା ପ୍ରତିଟି ମଣିଷଙ୍କୁ

- ସରୋଜ

# ଭୂମିକା

ଆମେ କେତେ ଜଣ ବନ୍ଧୁ ଯେଉଁମାନେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ପଢୁଥିଲୁ, ଆମ ଆଖ ପାଖ, ରାଜ୍ୟ, ଦେଶ ଓ ଦୁନିଆରେ ଯାହା ସବୁ ଘଟୁଥିଲା ସେ ନେଇ ଚର୍ଚ୍ଚା କରୁଥିଲୁ । ନିଜ ଭିତରେ ତର୍କବିତର୍କ ହେଉଥିଲା । ସେ ସଂପର୍କରେ ଅଧିକ ଜାଣିବା, ସ୍ପଷ୍ଟ ହେବା ପାଇଁ ସ୍ୱଚ୍ଛ ହେଉ ପଛେ ଅଧ୍ୟୟନ କରୁଥିଲୁ । ସେ ସବୁ ସଂପର୍କରେ ଅଧିକ ଜାଣିଥିବା ଲୋକଙ୍କ ପାଖକୁ ଯାଇ ତାଙ୍କଠୁ ଶୁଣୁଥିଲୁ । ଅନେକ ସମୟରେ ଆମକୁ ଆନ୍ଦୋଳିତ କରୁଥିବା ଘଟଣା, ବିଷୟମାନଙ୍କୁ ନେଇ କର୍ମଶାଳା, ସମ୍ମିଳନୀ ଓ ବକ୍ତୃତାର ଆୟୋଜନ କରୁଥିଲୁ । ମିଳିତ ଭାବେ ନିଜ ପାଇଁ ଓ ସମାଜ ତଥା ଦେଶପାଇଁ ସ୍ୱପ୍ନ ଦେଖୁଥିଲୁ, ଭାବପ୍ରବଣ ହେଉଥିଲୁ । ସ୍ୱପ୍ନ ଅନୁରୂପ ପରିବର୍ତ୍ତନର କାମନା ରଖି ଆଗାମୀ ଦିନମାନଙ୍କରେ କିଛି କରିବାର ସଂକଳ୍ପ ନେଉଥିଲୁ । ବିଶ୍ୱବିଦ୍ୟାଳୟରେ ଆନୁଷ୍ଠାନିକ ପାଠ ସରିବା ପରେ ଆମେ ସଭିଏଁ କିଏ କୁଆଡ଼େ ଚାଲିଗଲୁ ସତ, ତା ସତ୍ତ୍ୱେ ସେ ସମୟରେ ଦେଖିଥିବା ପରିବର୍ତ୍ତନର ସ୍ୱପ୍ନ ଅନେକ ଦିନ ଧରି ଆମକୁ ଭୂତ ହେଇ ଗୋଡ଼େଇ ଥିଲା । ବିଶ୍ୱ ବିଦ୍ୟାଳୟରେ ଥିଲାବେଳେ ବାଲ୍‌କୋ ବିରୋଧୀ ଗନ୍ଧମାର୍ଦ୍ଦନ ସୁରକ୍ଷା ଆନ୍ଦୋଳନ ଥାଏ ଶେଷ ପର୍ଯ୍ୟାୟରେ । ଆମେ ସଭିଏଁ ମାନସିକ ସ୍ତରରେ ସେ ଆନ୍ଦୋଳନ ସହ ସଂପୃକ୍ତ ମନେ କରୁଥିଲୁ । ଦେଶର କେଉଁ କେଉଁଠି ଓ କେଉଁ ଲୋକମାନଙ୍କ ଦ୍ୱାରା ସମାଜିକ-ରାଜନୈତିକ ପରିବର୍ତ୍ତନର କାମ ଚାଲୁଥିଲା ତାର ଖୋଜ ଖବର ନେଉଥିଲୁ । ଠିକ୍ ସେହି ସମୟରେ ଚିଲିକାରେ ଟାଟା ବିରୋଧୀ ଆନ୍ଦୋଳନ ଜୋର୍ ଧରିଥାଏ ଓ ଉତ୍କଳ ବିଶ୍ୱ ବିଦ୍ୟାଳୟର ଏକ ଛାତ୍ର ଗୋଷ୍ଠୀ ସେଥିରେ ଯୋଡ଼ି ହୋଇଥିଲେ । ସଂଯୋଗ କ୍ରମେ ସେମାନଙ୍କ ସହ ଭାବ, ଚିନ୍ତା ଓ ବିଚାରଗତ ଆଦାନପ୍ରଦାନ ଘଟିଲା ।

ସେ ସମୟରେ ହେଉଥିବା ଯାବତୀୟ ଚର୍ଚ୍ଚାରେ ସବୁଠୁ ବେଶୀ ଆକ୍ରମଣର ଶରବ୍ୟ ହେଉଥିଲା ରାଜନୀତି । ଅଶୀ ଦଶକରେ ରାଜନୈତିକ ଦଳ ଓ ସଂଗଠନଗୁଡ଼ିକ ପ୍ରତି ଲୋକଙ୍କ ଭିତରେ ଏତେ ଗଭୀର ଅନାସ୍ଥା ଆସିଯାଇଥିଲା ଯେ ସମାଜର ସବୁ ବର୍ଗ ଓ କ୍ଷେତ୍ରରେ ଅଣରାଜନୈତିକ ସଂଗଠନମାନ ତିଆରି ହେଉଥିଲା । ଜୀବନର ସବୁ କନ୍ଦି ବିକନ୍ଦିରେ ରାଜନୀତି ନାମକ ଜୀବାଣୁର ଅନୁପ୍ରବେଶ ଯୋଗୁଁ ଯାବତୀୟ ବିଭ୍ରାଟ ଘଟୁଛି

ବୋଲି ଏକ ଅଭିଯୋଗର ତୀବ୍ର ଆବେଦନ ଥିଲା । ସେତେବେଳେ ଓ ଆଜି ବି ଅଧିକାଂଶ ମଣିଷଙ୍କ ବୁଝାମଣା ଅନୁସାରେ ରାଜନୀତି କହିଲେ କେବଳ ଭୋଟ ରାଜନୀତି । କେବଳ ଚିହ୍ନ, ଚେହେରା, ବାନା ଓ ସ୍ଲୋଗାନମାନଙ୍କର ଲଢ଼େଇ । ସଚେତନ ଭାବେ ଏକ ମତାଦର୍ଶରେ ବିଶ୍ୱାସ ରଖିବା, ତାର ପ୍ରେରଣାରେ ପରିବର୍ତ୍ତନର ଏକ ରାସ୍ତା ଖୋଜିବା ଏବଂ ରାଜନୀତିକୁ ସାମାଜିକ ପରିବର୍ତ୍ତନ ପାଇଁ ଏକ ମାଧ୍ୟମ ଭାବରେ ଗ୍ରହଣ କରିବାର ପରଂପରା ସେତେବେଳକୁ ବିରଳ ହୋଇ ଆସୁଥିଲା । ଯାହା ଯେମିତି ଚାଲିଛି ତାକୁ ନେଇ ଜନ ଅସନ୍ତୋଷ ଥିଲେ ବି ଅସଲ କ୍ଷମତାରେ ଡୋରି କା ହାତରେ ଅଛି, କାହା ସ୍ୱାର୍ଥରେ, କାହା ଇଙ୍ଗିତରେ ଏ ବ୍ୟବସ୍ଥା ଚାଲିଛି ଓ ଏ ବ୍ୟବସ୍ଥା କାହିଁକି ବଦଳୁ ନାହିଁ, ଏହାଠୁ ଅଲଗା ଓ ସୁନ୍ଦର ବିକଳ୍ପ ଅଛି ନା ନାହିଁ ତଥା ତାର ପ୍ରତିଷ୍ଠା ପାଇଁ ବିକଳ୍ପ ରାସ୍ତାର ଅନ୍ୱେଷଣର ମୂଳ ପ୍ରଶ୍ନଟି ପ୍ରଚଳିତ ରାଜନୀତି ଓ ରାଜନୈତିକ ଦଳ ଭିତରେ ବିସ୍ମୃତ ହୋଇସାରିଥାଏ । ଘଟଣା ଓ ଘୋଟାଲାର ହଇଚଇ ଭିତରେ ପ୍ରକୃତ ରାଜନୀତିର ମରୁଡ଼ି ପଡ଼ି ଆସୁଥାଏ । ରାଜନୈତିକ ଶୂନ୍ୟତା ଭିତରେ ଛତୁ ଫୁଟିଲା ପରି ସ୍ୱେଚ୍ଛାସେବୀ ସଂଗଠନମାନ ରାଜ୍ୟ ଓ ଦେଶର ଛତ୍ରେ ଛତ୍ରେ ଗଢ଼ି ଉଠୁଥାଏ । ସତୁରୀ ଦଶକରେ ରାଷ୍ଟ୍ରୀୟ ଦମନ ହେତୁ ପରାଜିତ ଓ ପରାହତ ହୋଇଥିବା ନକ୍ସଲ ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟର ପଦଧ୍ୱନୀ ଆନ୍ଧ୍ରପ୍ରଦେଶ, ବିହାର ଆଦି ରାଜ୍ୟରେ ଶୁଣିବାକୁ ମିଳୁଥାଏ । ମନ୍ଦିର ଓ ମଣ୍ଡଳ କମିଶନକୁ ନେଇ ଧର୍ମ ଓ ଜାତିଗତ ଅସ୍ମିତାର ରାଜନୀତି ପ୍ରବଳ ହେଉଥାଏ । ସମୟକ୍ରମେ ବାବ୍‌ରି ମସଜିଦ ଭାଙ୍ଗେ, ଦଙ୍ଗା ଓ ବମ୍ ବ୍ଲାଷ୍ଟର ଧୂଳିଧୂଆଁରେ ଆଚ୍ଛନ୍ନ ହୋଇ ରହିଯାଏ ହୃଦୟ ଓ ମସ୍ତିଷ୍କ । ସେ ସବୁ ଭିତରେ ଜଗତୀକରଣର ରାଜନୈତିକ-ଅର୍ଥନୀତି, ସୀମିତ ସମାଲୋଚନାର ଶରବ୍ୟ ହେବା ସତ୍ତ୍ୱେ ନିର୍ବିବାଦରେ ନିଜର ଆସ୍ଥାନ ଜମଉଥାଏ । ଏଭଳି ଏକ ଅଭାବନୀୟ ପରିସ୍ଥିତି ଥିବାବେଳେ ରାଜନୀତିକ ବୁଝାମୁଣାର ଅଭାବ, ରାଜନୀତିକୁ ନେଇ ସଂକୁଚିତ ଦୃଷ୍ଟିକୋଣ ତଥା ରାଜନୀତି ବିମୁଖତା, ଶୋଷଣ ଓ ବୈଷମ୍ୟଧର୍ମୀ ବ୍ୟବସ୍ଥା ମଜବୁତ ହେବାର ସମ୍ଭାବନାକୁ ବ୍ୟାପକ କରାଉଥାଏ ।

ଓଡ଼ିଶାରେ ଏକଥା ଆହୁରି ଅଧିକ ଏଇଥିପାଇଁ ଯେ ଏଠି ନିଜକୁ, ନିଜ ସଂଗଠନ, ଅନୁଷ୍ଠାନ ଓ ଗତିବିଧିକୁ ଅଣରାଜନୈତିକ କହି ଗର୍ବ କରୁଥିବା ଲୋକଙ୍କ ସଂଖ୍ୟା ବେଶି । ଏ ପ୍ରବଣତା ଶିକ୍ଷିତ ଲୋକଙ୍କଠି ଅଧିକ । ଦୁର୍ଭାଗ୍ୟର କଥା ଯେ ଏଠିକାର ଅଧିକାଂଶ ଲେଖକ, କବି, ଗାଳ୍ପିକ ଓ ସାମଗ୍ରିକ ଭାବେ କଳା ଓ ସାହିତ୍ୟରେ ଥିବା ମଣିଷଙ୍କ ଭିତରେ ଏକ ଅଣରାଜନୈତିକ ଦୃଷ୍ଟି ଘର କରି ରହିଛି । ନକଲି ରାଜନୀତି କରୁଥିବା ଲୋକ ରାଜନୀତି ବାବଦରେ ଲୋକଙ୍କୁ ବିମୁଖ କରିବାରେ ଏଠି ବେଶ୍ ସଫଳ । ରାଜନୀତିକୁ ନେଇ ସଂକୀର୍ଣ୍ଣ ବୁଝାମଣା, ବିମୁଖତା ଓ ଉଦାସୀନତା ଏ ବ୍ୟବସ୍ଥାକୁ ଭାଙ୍ଗିବା ଲାଗି

ଆବଶ୍ୟକ ସୃଜନଶୀଳ ସାମୂହିକ କ୍ରୋଧର ନିଆଁକୁ ପ୍ରଜ୍ୱଳିତ କରେ ନାହିଁ ବରଂ ପରାସ୍ତ, ହତାଶ 'ଏକାକୀ ନାଗରିକ' ମାନଙ୍କର ଏକ ସମୂହକୁ ଜନ୍ମ ଦିଏ । ସମୟକ୍ରମେ ବ୍ୟକ୍ତି ମଣିଷଟି ଅଲୌକିକ ଶକ୍ତି, ବ୍ୟତିକ୍ରମ ମନେହେଉଥିବା ଜଣେ ଭଲ ଅମଲା କିମ୍ବା ରାଜନୈତିକ ଶୂନ୍ୟତାର ସୁଯୋଗରେ ଅତି ତତ୍ପର ହୋଇ ଉଠିଥିବା ନ୍ୟାୟପାଳିକା ଉପରେ ଆସ୍ଥାବାନ ହେଇଉଠେ । (ଅବଶ୍ୟ ଏବେ ଆସ୍ଥାଟି ଭୁଷୁଡ଼ିବାରେ ଲାଗିଛି) । ବେଳେ ବେଳେ ସେ ଜଣେ ଭଲ ଏକଛତ୍ରବାଦୀ ଶାସକ ବା ମିଲିଟାରୀ ଶାସନ ଦରକାର ବୋଲି କହିବାକୁ ପଛାଏ ନାହିଁ । ଆଉ ଥୋକେ ଲୋକ ରାଜାରାଜୁଡ଼ା ଶାସନ ଭଲ ଥିଲା କହି ଭାବପ୍ରବଣ ହୋଇ ଉଠନ୍ତି । ଏଭଳି ରାଜନୈତିକ ଆଦର୍ଶଗତ ଫମ୍ପାପଣ ହିଁ ଅଗଣତାନ୍ତ୍ରିକ, ଫାସିବାଦୀ ରାଜନୀତି ପାଇଁ ସୁଯୋଗ ସୃଷ୍ଟିକରେ । ଜାତିରାଷ୍ଟ୍ର ବ୍ୟବସ୍ଥାରେ ରାଜନୀତି ଯେଉଁଠି କେନ୍ଦ୍ରୀୟ ତତ୍ତ୍ୱ ଓ ନିୟାମକ ଶକ୍ତି ଯାହା ଆମର ସାମାଜିକ ଓ ବ୍ୟକ୍ତିଗତ ଜୀବନକୁ ପ୍ରଭାବିତ ଓ ନିୟନ୍ତ୍ରିତ କରୁଛି ସେଠି ରାଜନୀତି ବିମୁଖତା ହେଉ କି ରାଜନୀତିକୁ ଛିଃ କହି ଅସଲ ଆହ୍ୱାନରୁ ଆତ୍ମ ପ୍ରତ୍ୟାହାରର ସଂସ୍କୃତି, ମନ୍ଦତତ୍ତ୍ୱ ବିଚ୍ଛର ଓ ବ୍ୟକ୍ତିମାନଙ୍କ ଲାଗି ଏକ ସୁନ୍ଦର ଅବସର ସୃଷ୍ଟି କରେ । ରାଜନୀତିର ପରିସରଟିକୁ ଭୋଟ ସର୍ବସ୍ୱ କରି ରଖିବାରେ ସେମାନେ ସଫଳ ହୋଇଯାନ୍ତି । ଅସଲ ରାଜନୀତିର ପରିସରଟି ବ୍ୟାପକ ହୁଏ ନା କି ଆମର ରାଜନୀତିବିମୁଖ ସାମାଜିକ ଚେତନା ଓ ଗତିବିଧି ତାର ପରିସର ଭିତରେ ରାଜନୀତିକୁ ରଖିପାରେନା । ତେଣୁ ପ୍ରାୟତଃ ଏମିତି ହୁଏ ଯେ ରାଜନୀତି ଆମ ଜୀବନକୁ ପ୍ରଭାବିତ, ନିୟନ୍ତ୍ରିତ କରୁଥାଏ ଅଥଚ ଆମେ ରାଜନୀତିକୁ ପ୍ରଭାବିତ କରିପାରୁନା ।

ଆମର ତଥାକଥିତ ଭାରତୀୟ ସମାଜ ବ୍ୟବସ୍ଥାଟି ଯାବତୀୟ ବିବିଧତା ଓ ସ୍ଥାନୀୟ ଅନନ୍ୟତା ସତ୍ତ୍ୱେ ଇତିହାସ ଜଣାପଡୁଥିବା ବେଳଠୁ ରାଜା, ଜମିଦାରଙ୍କ ବାଟ ଦେଇ ବିଦେଶୀ ଓ ଦେଶୀଶାସନର ଗଳି ଦେଇ ବହୁ ସରକାର ପରିବର୍ତ୍ତନ ଭିତରେ ବି ଆଜିଯାଏଁ ସାମନ୍ତବାଦୀ ହେଇ ରହିଆସିଛି । ଏହି ସମାଜ ବ୍ୟବସ୍ଥାରେ ଧର୍ମ ହେଲା ଅନ୍ୟତମ ମୁଖ୍ୟ କେନ୍ଦ୍ରୀୟ ଶକ୍ତି । ଆଜିର ଗଣତାନ୍ତ୍ରିକ ବୁର୍ଜୁଆ ବ୍ୟବସ୍ଥାର ମୂଳ ପ୍ରେରଣା ହେଲା 'ରାଜନୀତି' । ମଣିଷର ସମସ୍ତ ସଂପର୍କ ଧର୍ମର ବାଟ ଦେଇ ନିର୍ଦ୍ଧାରିତ ଓ ସଂଚାଳିତ ହେଉଛି ଏବଂ ଜୀବନମୂଲ୍ୟ ରୂପେ ଚେତନା ଭିତରେ ସଂସ୍କାର ଓ ଆସ୍ଥାର ରୂପ ନେଉଛି । ତାକୁ ମଣିଷ ଜୀବନର ଶାଶ୍ୱତ ମୂଲ୍ୟ ରୂପରେ ଥୋଇ ଦିଆଯାଉଛି । ଏସବୁକୁ ନେଇ ଯେଉଁ ଧାର୍ମିକ, ରାଜନୈତିକ ଓ ନୈତିକ ମୂଲ୍ୟବୋଧ ତିଆରି ହେଉଛି ସେଥିରେ ଏବେ ବଜାର ଓ ପ୍ରଯୁକ୍ତିର ଏକ ବଡ଼ ଭୂମିକା ଯୋଡ଼ି ହେଲାଣି । ତା ବିରୋଧରେ ସ୍ୱର ଉତ୍ତୋଳନ କଲେ ବ୍ୟବସ୍ଥାର ଅସ୍ତିତ୍ୱ ପ୍ରତି ସଂକଟ ଅନୁଭୂତ ହୁଏ । ସେ ପ୍ରକାର ଗତିବିଧିକୁ ତଥାକଥିତ

ମୁଖ୍ୟଧାରା, ସମାଜ ବିରୋଧୀ ଓ ସଂସ୍କୃତି ବିରୋଧୀ ବୋଲି ଆଖ୍ୟା ଦିଆଯାଏ । ବଜାରୀ ନୈତିକତାକୁ ବିରୋଧ କଲେ ବିକାଶ ବିରୋଧୀ । ଏ ନୈତିକତାକୁ ସୁରକ୍ଷା ଓ ପ୍ରୋତ୍ସାହନ ଦେଉଥିବା ତନ୍ତ୍ରକୁ ବିରୋଧ କଲେ ରାଷ୍ଟ୍ର ବିରୋଧୀ । ଧର୍ମକୈନ୍ଦ୍ରିକ ସାମନ୍ତବାଦୀ ସଂସ୍କୃତି ଓ ବଜାରର ମେଣ୍ଟ । ତାର ପରଖ ହେଲା - (୧) ନାରୀ ସହ ପୁରୁଷ ସଂପର୍କରେ ଲିଙ୍ଗଗତ ବୈଷମ୍ୟ ଓ ଶୋଷଣ (୨) ସାଥୀ ମଣିଷ ସହିତ ସଂପର୍କରେ ମାଲିକ-ନୌକର ଈଶ୍ୱରଙ୍କ ପାଖ ଲୋକ - ଦୂର ଲୋକ, ଜାତିଗତ - ବର୍ଣ୍ଣଗତ ଉଚ୍ଚନୀଚ ଲୁଟିଖାଉ - ଖଟିଖାଇର ବର୍ଗୀକରଣ ଭିତରେ ଥିବା ଶୋଷଣ ଓ ବୈଷମ୍ୟ, ପ୍ରକୃତି ଉପରେ ଲୁଟିଖାଉଙ୍କ ମାଲିକାନା, ଜ୍ଞାନ ଉପରେ ଏକାଧିକାରର ସମାବେଶରେ ତିଆରି ବ୍ୟବସ୍ଥାକୁ ଭାରତୀୟ ବ୍ୟବସ୍ଥା ଓ ଅସ୍ମିତା ଭାବରେ ଓ ସେ ଜନିତ ଆବେଗ, ମାନସିକତାକୁ ହିନ୍ଦୁସ୍ଥାନର ଭାବନା ରୂପରେ ପ୍ରତିଷ୍ଠିତ କରିବା ପାଇଁ ଅଣନିଶ୍ୱାସୀ ପ୍ରୟାସ ଜାରି ରହିଛି ।

ସ୍ଥିତାବସ୍ଥା ସହ ଯେଉଁମାନଙ୍କ ହିତ ବା ସ୍ୱାର୍ଥ ସୁରକ୍ଷିତ ହୋଇ ରହିଥାଏ, ସେମାନେ ପରିବର୍ତ୍ତନ ବା ଅସନ୍ତୋଷର ଏହି ସ୍ୱର ପ୍ରତି ଅସହିଷ୍ଣୁ ହୋଇ ଉଠନ୍ତି । ପରଂପରା, ସଂସ୍କୃତି ଓ ସଂସ୍କାର ନାଁରେ ତାର ସ୍ଥାୟିତ୍ୱ ପାଇଁ ଯୁକ୍ତି କରନ୍ତି । ସେ ମାନସିକତା ଯେତେ ଅବୈଜ୍ଞାନିକ ହେଉ, ଯେତେ ଯୁକ୍ତିହୀନ ହେଉ ତା ବିରୋଧରେ କିଛି କୁହାଗଲେ, କରାଗଲେ କଥା ଉଠିବ - ଜାତୀୟ ସ୍ୱାର୍ଥ, ସଂସ୍କୃତି ଓ ଅସ୍ମିତା ପ୍ରତି ଆକ୍ରମଣ ଓ ମଣିଷ ସମୂହର ଧର୍ମ, ଜାତି, ସଂପ୍ରଦାୟ, ଭାଷା, ଆଂଚଳିକ ଭାବନା, ଆବେଗ, ବିଶ୍ୱାସ ଓ ଆସ୍ଥାର ଅବମାନନା । ବ୍ୟବସ୍ଥା, ଆମ ଜୀବନ ଓ ଜୀବନଦ୍ୱନ୍ଦ୍ୱକୁ ନେଇ ଆହୁରି ସୂକ୍ଷ୍ମ କଥା ଅଛି କିନ୍ତୁ ଆମେ ସ୍ଥୁଳ ମନେ କରୁଥିବା, ସାଧାରଣ ମନେ କରୁଥିବା ଅନେକ କଥା ସତରେ କଣ ଏତେ ସରଳ ନା ଆମେ ସତରେ ବୁଝିଥାଉ । ବୁଝୁଥିଲେ ହୁଏତ ଆମର ଭଲ ପାଇବା କେବେଠୁ ଜାତି, ଧର୍ମ, ଲିଙ୍ଗ, ଭାଷା, ଅଂଚଳ ଓ ବର୍ଗ ନିରପେକ୍ଷ ହୋଇପାରିଥାନ୍ତା । ତେଣୁ ମୋର ଲେଖାର ସଂସାରଟି ଇହଲୋକ ଓ ତାର ସୁଖ ଦୁଃଖ ସହ ଜଡ଼ିତ । ନିଜ ଭିତରର ପୂର୍ବାଗ୍ରହ ସହ ଯୁଝୁଯୁଝୁ ଆସୁଥିବା ପରିବର୍ତ୍ତିତ ଅନୁଭବର ବଖାଣ ମୋର ଲେଖା । ଅନେକ କୁହନ୍ତି - "ସମସ୍ୟାଟିକୁ ବୁଝିଯିବା ହିଁ ଆପେ ଆପେ ଏକ ସମାଧାନ ।" ଏକାନ୍ତ ବ୍ୟକ୍ତିଗତ ସ୍ତରରେ ସମସ୍ୟାଟିକୁ ବୁଝିଯିବାରେ ସମାଧାନ ନଥାଏ । ମଣିଷ ଏକାଧାରରେ ବ୍ୟକ୍ତି ମଣିଷ, ସାମାଜିକ ମଣିଷ, ସଚେତନ ଥାଉ ନ ଥାଉ ଜଣେ ରାଜନୈତିକ ମଣିଷ ବି । ନିଜକୁ ଅଣରାଜନୈତିକ କହିବା ଅନେକ ସମୟରେ ଏକ ରାଜନୈତିକ ନିଷ୍ପତ୍ତି ହୋଇଥାଏ । ଅନେକ ସମୟରେ ତାହା ଅଜ୍ଞାନତା । ସମାଜ ଓ ରାଜନୀତି ତା ବ୍ୟକ୍ତି ଜୀବନକୁ ପ୍ରଭାବିତ କରନ୍ତି । ନିଜେ ବ୍ୟକ୍ତିଗତ ଭାବେ ବୁଝିଥିବା ସତ୍ତ୍ୱେ ସେଇ ସମସ୍ୟାକୁ ନେଇ ସମାଜର

ନିଜସ୍ୱ ବୁଝାମଣାଟି ଯଦି ଭୁଲ, ସେ ଭୁଲଜନିତ କ୍ଷୟକ୍ଷତିର ଶିକାର ସଭିଏଁ ହେବେ । ବୁଝିଥିବା ବ୍ୟକ୍ତି ମଣିଷଟି ବି ସେଥିରୁ ସୁରକ୍ଷିତ ରହିପାରିବ ନାହିଁ । ତେଣୁ 'ବ୍ୟକ୍ତି ମଣିଷ'କୁ ଏଠି ସାମାଜିକ ମଣିଷର, ରାଜନୀତି ଯେହେତୁ ବ୍ୟବସ୍ଥାର କେନ୍ଦ୍ରୀୟ ତତ୍ତ୍ୱ ତେଣୁ ଏକ ସଚେତନ ରାଜନୈତିକ ମଣିଷର ଭୂମିକା ନେବାର ଆବଶ୍ୟକତା ଅନୁଭୂତ ହୁଏ । ଦେଶ, ସମାଜ, ସଂସ୍କୃତି, ଦୁନିଆ ତଥା ନିଜକୁ ଜାଣିବା ବୁଝିବା ପାଇଁ ଅନ୍ୟ ବହୁ କଥା ବୁଝିବା ସହ ରାଜନୀତିକୁ ମଧ ବୁଝିବା ଜରୁରୀ । ଏ ସଂପର୍କରେ କେହି ଅମତ ନ ଥିବେ ।

ବ୍ୟବସ୍ଥା ସହ ଜଡ଼ିତ ଅମାନୁଷିକ ବୈଷମ୍ୟ, ଶୋଷଣ ବିରୋଧରେ କିଛି ଲୋକ ନିଶ୍ଚୟ ସକ୍ରିୟ ଅଛନ୍ତି । ହୁଏତ ସେମାନେ ରାଜନୀତି ଓ ଗଣମାଧ୍ୟମର ମୁଖ୍ୟ ଧାରାରେ ନାହାନ୍ତି କିନ୍ତୁ ଏଇ ଚିନ୍ତାହୀନତାର ଅନ୍ଧାରୀ ସମୁଦ୍ର ଭିତରେ ସେମାନେ ବତୀଘରର ଆଲୁଅ ହୋଇ ଝଟକୁଛନ୍ତି ନିଶ୍ଚୟ । ସେମାନେ ବିକଳ୍ପ ଚେତନାର ପ୍ରତିନିଧି । ସମ୍ବାଦ, ତଥ୍ୟ, ଖବର, ଗଣମାଧ୍ୟମ, ଗବେଷଣା ଓ କଳା ସାହିତ୍ୟ ଉପରେ ପୁଞ୍ଜିବାଦୀ ମାଲିକାନା ସେମାନଙ୍କର ସ୍ୱରକୁ କ୍ଷୀଣତର ଓ ତାଙ୍କ ସଂଘର୍ଷକୁ ମହତ୍ତ୍ୱହୀନ କରିବାରେ ଅହରହ ଉଦ୍ୟମରତ । ତା ଛଡ଼ା ପ୍ରତିରୋଧର ଏ ସ୍ୱର ସବୁ କେବେ କେବେ ଆପଣା ବିଶେଷତ୍ୱ ଓ ସ୍ୱାତନ୍ତ୍ର୍ୟ ଜାହିର କରିବାକୁ ଯାଇ ବହୁ ଗୋଷ୍ଠୀରେ ବିଭାଜିତ । ତେଣୁ ନାରୀବାଦୀ, ପରିବେଶବାଦୀ, ଦଳିତ ଓ ପ୍ରଜାତିଗତ ଅସ୍ମିତାର ଆନ୍ଦୋଳନ ସବୁ ନିଜସ୍ୱ ସ୍ୱାତନ୍ତ୍ର୍ୟ ସହ କେବଳ ଏକ ଋପ ପ୍ରୟୋଗକାରୀ ଗୋଷ୍ଠୀ ହେଇରହିଯାଇଛନ୍ତି । କିନ୍ତୁ ଲୋକଙ୍କ ଜୀବନ ଜୀବିକା ସହ ଜଡ଼ିତ କ୍ଷମତା ଢାଞ୍ଚାର ବିଭିନ୍ନ ଚରିତ୍ରକୁ ପ୍ରଶ୍ନ କରୁଥିବା ଏହି ସ୍ଥାନୀୟ ଓ ପ୍ରସଙ୍ଗ ଭିତ୍ତିକ ଆନ୍ଦୋଳନ ସବୁର ପାରସ୍ପରିକ କଥୋପକଥନ ନିଶ୍ଚିତରୂପେ ବ୍ୟବସ୍ଥାର ସାମଗ୍ରିକ ଚରିତ୍ର ସଂପର୍କରେ ବେଶୀ ସଚେତନତା ସୃଷ୍ଟି କରିବ ଓ ସେସବୁରୁ ହିଁ କିଛି ବିକଳ୍ପର ଖୋଜା ଲୋଡ଼ା ହେବ । ଏକ ବହୁ ତଳୀୟ, ବହୁପକ୍ଷୀୟ, ବିକେନ୍ଦ୍ରିତ, କଟକଣା ଓ ନିୟନ୍ତ୍ରଣ ରହିତ କଥାବାର୍ତ୍ତା ଦ୍ୱାରା ହିଁ ଏହା ସମ୍ଭବ ।

ସାମାଜିକ ଓ ବ୍ୟକ୍ତିଗତ ଜୀବନର ବିଭିନ୍ନ ନିଷ୍ପତ୍ତି ଉପରେ ଲୋକେ ଅଧିକରୁ ଅଧିକ କଥାବାର୍ତ୍ତା ହେବା ଜରୁରୀ ତଥା ସେଥିପାଇଁ ଆଉ କିଛି ବିକଳ୍ପ ନାହିଁ ଭଳି ନୈରାଶ୍ୟ ସହ ଲଢ଼ିବାକୁ ପଡ଼ିବ ।

ନିଜ ଭିତରର ପ୍ରଶ୍ନ, ଦ୍ୱନ୍ଦ୍ୱ ଓ ସଂଘର୍ଷର ଉତ୍ତର ଖୋଜିବା, ଗଣ ନୀରବତାର ସଂସ୍କୃତିକୁ ଭାଙ୍ଗି ପ୍ରକୃତ ରାଜନୀତିର ବିସ୍ତୃତ ପ୍ରଶ୍ନମାନଙ୍କୁ ସମକାଳୀନ ସମାଜର ଦର୍ପଣରେ ପୁଣିଥରେ ପରଖିବା ଲାଗି ଆମେ ନିଜେ କଲମ ଧରିବା ଓ ଲେଖା ଗୁଡ଼ିକର ପ୍ରକାଶ ପାଇଁ ଏକ ପତ୍ରିକାର ଚିନ୍ତାରୁ 'ଅନ୍ୱେଷା' ଜନ୍ମ ନେଲା ୧୯୯୮ ମସିହାରେ । ସେହି ଦିନଠୁ

କୌଣସି ନିର୍ଦ୍ଦିଷ୍ଟ ମତବାଦ ବା ଗୋଷ୍ଠୀର ମୁଖପାତ୍ର ଭାବେ ନୁହେଁ, ମଣିଷକୁ କେନ୍ଦ୍ରରେ ରଖୁଥିବା ଏକ ଚେତନା, ସାଧାରଣ ଲୋକଙ୍କ ସ୍ୱାର୍ଥକୁ ନେଇ ସାଧାରଣମାନଙ୍କର ବିତର୍କର କ୍ଷେତ୍ର ପ୍ରସ୍ତୁତିଜନିତ ଏକ ସୀମିତ ଅଥଚ ଅଙ୍ଗୀକାରବଦ୍ଧ ପଦକ୍ଷେପରୁ ଲେଖାଲେଖିର ଆରମ୍ଭ । ଅନ୍ୟମାନଙ୍କ କଥା ମୁଁ କହିବି ନାହିଁ କିନ୍ତୁ ମୁଁ କେବେ ଲେଖକ ନଥିଲି । ଲେଖକ ହେବା ଯୋଗ୍ୟତା ମୋର ନାହିଁ । ନିଜ ଭିତରର ପ୍ରଶ୍ନକୂଳତା ଓ ନିଜେ ଭେଟୁଥିବା ଦ୍ୱନ୍ଦ୍ୱର ଉତ୍ତର ଖୋଜା, ନିଜର ଯାବତୀୟ ଅଯୋଗ୍ୟତା ଓ ଅପାରଗତା ସତ୍ତ୍ୱେ ସମାଜର ଅବହେଳିତ, ନିର୍ଯ୍ୟାତିତ ଓ ମୂକ ସମ୍ବେଦନଶୀଳତାମାନଙ୍କୁ ଛୁଇଁବାର କୋମଳ ଭାବନାରୁ ଏ ଲେଖାଲେଖି । ଭାଷା ଉପରେ ଦଖଲ ନଥାଇ, ନିଜ ଭାଷା ସାହିତ୍ୟର ସଂବୃଦ୍ଧ ପରମ୍ପରା ସଂପର୍କରେ ଅତ୍ୟନ୍ତ ସୀମିତ ଧାରଣା ଓ ସୀମିତ ଶବ୍ଦ ଜ୍ଞାନ ସତ୍ତ୍ୱେ ମୁଁ ଏଯାଏଁ କିଛି କିଛି ଲେଖି ଆସିଛି । ଲେଖୁଥିବା ଲେଖାତକ କିଏ ଛପେଇବ ସେ ପ୍ରଶ୍ନ ଗୋଟିଏ ସମୟରେ ମନକୁ ସନ୍ଦିହାନ କରି ରଖୁଥିଲା । କାରଣ ଓଡ଼ିଶାରେ ଖୁବ୍ କମ ପତ୍ର ପତ୍ରିକା ସେଥିରେ ପୁଣି ଅଧିକାଂଶ ସାହିତ୍ୟ ପତ୍ରିକା, ରାଜନୈତିକ ଲେଖା ଗୁଡ଼ିକ ପ୍ରତି ଏକ ରକମର ଅସ୍ପୃଶ୍ୟ ଭାବନା ପୋଷଣ କରୁଥିଲେ । ଏବେ ବି ସେ ସଂପର୍କୀତ ଚିନ୍ତାରେ ବିଶେଷ ପରିବର୍ତ୍ତନ ଆସିନାହିଁ । ଲେଖାଲେଖି କଲା ବେଳକୁ କିଶନ ପଟ୍ଟନାୟକଙ୍କ ସଂପାଦିତ 'ବିକଳ୍ପ ବିଚାର' ବନ୍ଦ ହୋଇ ଯାଇଥାଏ । ଦୈନନ୍ଦିନ ଖବର କାଗଜରେ ସ୍ତମ୍ଭ ଲେଖିବା ପାଇଁ ଆବଶ୍ୟକ ହେଉଥିବା କୌଶଳ ଓ ଦକ୍ଷତା ଦୃଷ୍ଟିରୁ ମୁଁ ଖୁବ୍ ଦୁର୍ବଳ । ତେଣୁ ମୋର ପ୍ରାୟ ଲେଖା ନିଜ ସଂପାଦିତ 'ଅନ୍ୱେଷା'ରେ ଛପି ଆସିଛି । ଗତ ଚାରି ପାଞ୍ଚ ବର୍ଷ ମଧ୍ୟରେ ଅଳ୍ପ କେତୋଟି ଲେଖା ଖବର କାଗଜ ଓ କିଛି ପତ୍ର ପତ୍ରିକାରେ ସ୍ଥାନିତ ହୋଇଛି । ଏ ଅବସରରେ ବିକଳ୍ପ ବିଚାର, ସମଦୃଷ୍ଟି, ପଶ୍ଚିମା, ବିଜୟା, ଅନୁରୂପା, ଅନୁପମ ଭାରତ, ସମ୍ବାଦ, ରୁଦ୍ର ଆହ୍ୱାନ ଆଦି ପତ୍ରିକା ଓ ଖବର କାଗଜର ସଂପାଦନା ସହ ଜଡ଼ିତ ମଣିଷଙ୍କୁ ଧନ୍ୟବାଦ ଜଣାଉଛି । ମୋଟାମୋଟି ଭାବେ କୁହାଯାଇ ପାରେ, ନିଜେ ଏକ ତାର୍କିକ ଓ ନ୍ୟାୟ ସଂଗତ ଜୀବନ ଜୀଇଁବା ଓ ସେହି ଦୃଷ୍ଟିରୁ ନିଜ ଆଖପାଖ ବିଶେଷତଃ ନିଜ ବ୍ୟକ୍ତିଗତ ଓ ଆମ ସାମୂହିକ ଜୀବନକୁ ପ୍ରଭାବିତ ଓ ନିୟନ୍ତ୍ରିତ କରୁଥିବା ବ୍ୟବସ୍ଥାକୁ ନ୍ୟାୟସଂଗତ କରିବାର ଅଭୀପ୍ସା ହେତୁ ଭେଟୁଥିବା ପ୍ରଶ୍ନ, ଦ୍ୱନ୍ଦ୍ୱ ଓ ସଂଘାତମାନଙ୍କର ଉତ୍ତର ଖୋଜା ଓ ଅନ୍ୱେଷା ପତ୍ରିକାର ସମ୍ପାଦନାର ଦାୟରେ ମୁଁ କିଛି ଲେଖାଲେଖି କରିଛି ଯା'ର ଗୁଣାତ୍ମକମାନ ଅବଶ୍ୟ ପ୍ରଶ୍ନବାଚୀ ।

ମୋର ସବୁଯାକ ଲେଖାକୁ ସମସାମୟିକ ଘଟଣା ଉପରେ ଲିଖିତ ଟିପ୍ପଣୀ କୁହାଯାଇପାରେ । ଏକ ନିର୍ଦ୍ଦିଷ୍ଟ ସମୟ ପାଇଁ ହିଁ ତାର ପ୍ରାସଙ୍ଗିକତା ଓ ଉପଯୋଗୀତା । ଜଣେ ସାମାଜିକ ରାଜନୈତିକ କର୍ମୀ ରୂପେ ନିଜେ ଓ ଆମ ସାମୂହିକ ଜୀବନରେ ଘଟୁଥିବା

ଘଟଣା, ଘାଣ୍ଟି ହେଉଥିବା ଦ୍ୱନ୍ଦ୍ୱ ଓ ସଂଘାତକୁ ନିଜ ବାଗରେ ବୁଝିବା ଓ ସେ ସମ୍ପର୍କରେ ସାଥୀ ମଣିଷ ସହ କଥାବାର୍ତ୍ତାର ଆଗ୍ରହରୁ ଏ ଲେଖାତକ । ମୁଁ ଜାଣେ ମୁଁ ଲେଖିଥିବା କୌଣସି ଲେଖା ମୌଳିକ ପ୍ରବନ୍ଧର ମାନ୍ୟତା ପାଇବାକୁ ହକ୍‌ଦାର ନୁହେଁ । ଏପରିକି ନିହାତି ନୂଆ କଥା କିଛି ଲେଖା ହୋଇନାହିଁ । ସେହି ସମାନ କଥା ଅନେକେ ଲେଖିଛନ୍ତି, ଲେଖୁଛନ୍ତି । ଅନେକ କଥା ଯାହା ମୁଁ ଲେଖିଛି ତାହା ମୋର ଏକାନ୍ତ ନିଜସ୍ୱ ନୁହେଁ । ଅନ୍ୟମାନଙ୍କଠୁ ଶୁଣିଛି, ପଢ଼ିଛି । ଅନ୍ୟମାନଙ୍କ ସହ କଥା ହେଉ ହେଉ ସେମାନଙ୍କଠୁ ଆହରଣ କରିନେଇଛି ଅନେକ କଥା । ତା ସତ୍ତ୍ୱେ ମୁଁ ଯାହା ବିଶ୍ୱାସ କରେ ତାହା ହିଁ ତ ଲେଖିଛି । ତା'ର ଉତ୍ତରଦାୟିତ୍ୱ ବି ମୋର । ଲେଖୁଥିବା ଓ ଅନ୍ୟର ଲେଖା ପଢୁଥିବା 'ଜଣେ ପାଠକ ମଣିଷ ଭାବେ' ମୋ ନିଜ ଲିଖନରେ ଥିବା ଦୋଷ ଦୁର୍ବଳତା ସଂପର୍କରେ ମୁଁ ଅନେକଟା ସଚେତନ । ସେଥିପାଇଁ "ଶିବରାମ ପାତ୍ର ସ୍ମୃତି ସମ୍ମାନ" ପରିପ୍ରେକ୍ଷୀରେ ମୋର ଲେଖାତକକୁ ଏକ ପୁସ୍ତକରେ ରୂପ ଦେବା ଆଗ୍ରହ ସମ୍ପର୍କରେ ସୂଚନା ପାଇ ମୁଁ ଆଶ୍ଚର୍ଯ୍ୟ ଓ ଆତଙ୍କିତ । ମୋତେ ଲାଗୁଛି ଏ ଯାଏଁ ମୁଁ ଯାହା ଲେଖିଛି ସେତକ ପାଇଁ ଏ ସମ୍ମାନ ଉଦ୍ଦିଷ୍ଟ ନୁହେଁ । ହୁଏତ ଭବିଷ୍ୟତରେ ମୁଁ କିଛି ଭଲ ଲେଖି ପାରିବି ସେ ପାଇଁ ଏକ ପ୍ରୋତ୍ସାହନ । ଭଲ ଲେଖିବାର ସମ୍ଭାବନା ମୋ ଭିତରେ ଅଛି ଏବଂ ସେ ଦୃଷ୍ଟିରୁ ମୁଁ ଯେ ପ୍ରୋତ୍ସାହନଯୋଗ୍ୟ ଏ ନିଷ୍କର୍ଷରେ ପହଞ୍ଚିଥିବା ମଣିଷମାନଙ୍କୁ ମୁଁ ସମ୍ମାନ ଜଣାଉଛି ।

ସରୋଜ

ତା. ୧୫.୧୨.୨୦୧୦

# ସୂଚୀ

# ମୁକ୍ତିଚିନ୍ତା

ଆଜି ମନେ ପଡୁଛି ହରିଣ ଓ ବ୍ୟାଧର ଗପ । ଗୋଟିଏ ପଟେ ବ୍ୟାଧର ଜାଲ । ଗୋଟିଏ ପଟେ ନିଆଁ । ଆଉ ଗୋଟିଏ ପଟେ ତାହାଙ୍କ କୁକୁର ଓ ଶେଷ ଦିଗରେ ଧନୁଶର ଧରି ନିଜେ ବ୍ୟାଧ । କୁଆଡେ ଯିବ ହରିଣ ? ସାଧାରଣ ମଣିଷର ବ୍ୟକ୍ତିସ୍ୱାଧୀନତା, ଅଭିବ୍ୟକ୍ତିର ଅବସର, ମତ ପ୍ରକାଶ ଓ ପ୍ରତିବାଦର ଅଧିକାର, ଜୀବନ ଜୀବିକା ଓ ଧାର୍ମିକ ସ୍ୱାଧୀନତାର ଅଧିକାରକୁ ଆମେ ଆଜି ସେ ଗପର ଅସହାୟ ହରିଣର ସ୍ଥିତି ସହ ତୁଳନା କରି ଦେଖିପାରିବା । ହରିଣର ସରଳତା, ନିରୀହତା ସହ ତାର ନରମ କଅଁଳ ସ୍ୱଭାବ, ଛନଛନ ଡିଆଁ ଓ ଦଉଡ଼ ଆମ ସଭିଂକୁ ଏକ ବିପଦଶୂନ୍ୟ ସ୍ୱାଧୀନତାର ଅବବୋଧ ଦିଏ । ଆମେ ଅବଶ୍ୟ ସାଧାରଣ ମଣିଷକୁ ହରିଣ ପରି ସରଳ ଓ ନିରୀହ ବୋଲି କହି ପାରିବା ନାହିଁ । ମଣିଷ ମୁଣ୍ଡଟା ଜାତି, ଧର୍ମ, ଆଂଚଳିକତା, ଭାଷା, ଲିଙ୍ଗ, ନୃଜାତି ଇତିହାସ, ଛୋଟବଡ଼ ଜାତୀୟତା, ବର୍ଗ, ସଂଖ୍ୟାଲଘୁ ଓ ସଂଖ୍ୟାଗୁରୁ ଜନିତ ଭାବନା ଓ ଆବେଗ, ବର୍ଣ୍ଣ ଓ ବାଦ ତଥା ଆହୁରି କେତେ କ'ଣ ପୂର୍ବାଗ୍ରହ ଦ୍ୱାରା ପୀଡ଼ିତ ଓ ଭାରାକ୍ରାନ୍ତ । ସେ ନେଇ ସୁବିଧା ଅସୁବିଧା ତ ରହିଛି କିନ୍ତୁ ସେ ସବୁକୁ ମଜବୁତ କରି ଯଦି ସଂଗଠିତ ସାମାଜିକ ରାଜନୈତିକଶକ୍ତିଗୁଡ଼ିକ ନିଜର ନିହିତ ସ୍ୱାର୍ଥ ଓ ଉଦ୍ଦେଶ୍ୟ, ଏଇ ଯେମିତି ସାମାଜିକ ଶକ୍ତିସନ୍ତୁଳନ ଭୋଟ ବ୍ୟାଙ୍କ ରାଜନୀତି ଓ ବେପାରରେ ବ୍ୟବହାର କରନ୍ତି ତେବେ କଥାଟା ଆମ ଭାରତୀୟ ସମାଜ ପରି ଖୁବ୍ ଜଟିଳ ହେବାଟା ସ୍ୱାଭାବିକ । ଏ କଥା କିଛିଟା ଅପବାଦ ସହ ସାରା ପୃଥିବୀ ପାଇଁ ମଧ୍ୟ କୁହାଯାଇପାରେ ।

ନିଜର ପୂର୍ବାଗ୍ରହ ତଥା ମୌଳବାଦୀ, ସାମାଜିକ ରାଜନୈତିକ ଶକ୍ତି ଓ ତତ୍ତ୍ୱ ଗଡ଼ିକର ବୁଣାଜାଲରେ କ୍ରମଶଃ ସିଲ୍ ହେଇଯାଉଛି ମଣିଷ ମୁକ୍ତିର ମାର୍ଗ । ଧାର୍ମିକ ମୌଳବାଦ ଓ ଜାତିବାଦ ଘୃଣାର ନିଆଁ ହେଇ ଜଳୁଛି । ବେଳେ ବେଳେ ଆଂଚଳିକ ଭାବନା ମାନ, ଏ ନିଆଁରେ ଘିଅ ଢାଳୁଛନ୍ତି । ଭାଷାକୁ ନେଇ ବିବାଦ ଅବଶ୍ୟ ଆଗଭଳି ଆଉ ମୁଖର ନୁହେଁ। ଅନ୍ୟ ପଟେ ବିଦେଶୀ ପୁଂଜିର ଅନିର୍ବାଯ୍ୟତା, ମୁନାଫା, ଆର୍ଥିକ ଅଭିବୃଦ୍ଧି, ସେନସେକ୍ସ ଉଠାଚଢ଼ା, ପ୍ରଯୁକ୍ତି ବିପ୍ଳବ, ଜାତୀୟ ବିକାଶ, ଜାତୀୟ ସ୍ୱାର୍ଥ ଓ ଲୋକ ସ୍ୱାର୍ଥ ଭଳି ଶବ୍ଦର

ସଞ୍ଜ୍ଞା ଓ ବ୍ୟାଖ୍ୟାକୁ ନିଜ ସ୍ୱାର୍ଥ ଅନୁରୂପ ନିର୍ମାଣ କରୁଥିବା ଗଣମାଧ୍ୟମର ସହାୟତାରେ ତିନିତୁଣ୍ଡରେ ଛେଳି କୁକୁର ନୀତିରେ ସାଧାରଣ ଜନତାକୁ ଭ୍ରମିତ କରିବାରେ ସଫଳ ହୋଇସାରିଥିବା କର୍ପୋରେଟ ଶକ୍ତି ଓ ଇନ୍ଦ୍ରିୟଗୁଡ଼ାକ ଅଚେତ ହେବାଯାଏଁ ଭୋଗ ବଜାସର ଅବସର ଖୋଜୁଥିବା ଏକ ଅତି ଧନୀକ ଶ୍ରେଣୀର ଅସାଧୁ ମେଣ୍ଟ । ତାଙ୍କ ପଛରେ ଦୌଡୁଛନ୍ତି ନବ ନିର୍ମିତ ଗ୍ରାମୀଣ ମଧ୍ୟବିତ୍ତ ଓ ମିଛ ସ୍ୱପ୍ନରେ ମସ୍‌ଗୁଲ କିଛି ନିମ୍ନ ମଧ୍ୟବିତ୍ତ । ଏମାନେ ଜନକଲ୍ୟାଣ ପାଇଁ ଆସୁଥିବା ଯୋଜନାର ଅର୍ଥ, ସବ୍‌ସିଡି ଓ ରିହାତିକୁ ନେଇ ଚାଲୁଥିବା ଦୁର୍ନୀତିରୁ ଜନ୍ମ ନେଇଛନ୍ତି ।

ଏ ଦି ପ୍ରକାରର ତତ୍ତ୍ୱ ପରସ୍ପରର ପରିପୂରକ ଓ ଅନୁପ୍ରେରକ ସାଜି ଶକ୍ତିଶାଳୀ ହୋଇ ତଥାକଥିତ ଗଣତାନ୍ତ୍ରିକ ରାଷ୍ଟ୍ର, ରାଜନୈତିକ ଦଳ ଓ ସାମ୍ରାଜ୍ୟବାଦୀ ବିଶ୍ୱ ବ୍ୟବସ୍ଥାକୁ ନିୟନ୍ତ୍ରିତ କରୁଛନ୍ତି । ଅନେକ ସମୟରେ / ସ୍ଥାନରେ ଏ ଦି ପ୍ରକାର ଶକ୍ତିଂକ ସାହଚର୍ଯ୍ୟରେ ରାଷ୍ଟ୍ରଶକ୍ତି ନିର୍ମିତ ଓ ପ୍ରତିଷ୍ଠିତ ହୋଇଛି । ରାଷ୍ଟ୍ର ଏଠି ନିଜେ ବ୍ୟାଧ । ପ୍ରଶାସନ ଓ ସୈନ୍ୟ ଶକ୍ତିର ଡାହାଳ କୁକୁର ତା ହାତରେ । ଏ ଭିତରେ ପେଶି ହୋଇଯାଉଛି ସବୁ ପ୍ରକାରର ସ୍ୱାଧୀନତା ଓ ଅଭିବ୍ୟକ୍ତିର ଅବସର । ଏଇ ଶକ୍ତି ଓ ତତ୍ତ୍ୱମାନେ ନିଜେ ପୋଷଣ କରୁଥିବା ମତଠୁ ଭିନ୍ନ କୌଣସି ମତ ବା ବିରୋଧୀମତ ପ୍ରକାଶ ଓ ସାବ୍ୟସ୍ତ କରିବାର ଗଣତାନ୍ତ୍ରିକ ଅଧିକାରକୁ ଦଳି ଦେଉଛନ୍ତି । ଏପରିକି ଏ ବ୍ୟବସ୍ଥା, ଜୀବନ ଜୀବିକା, ସର୍ବନିମ୍ନ ଶିକ୍ଷା-ସ୍ୱାସ୍ଥ୍ୟ ସୁବିଧା ପାଇବାର ଓ କାମ କରିବାର ମାନବୀୟ ଅଧିକାରକୁ ମଧ୍ୟ ସ୍ୱୀକୃତି ଦେବାକୁ ପ୍ରସ୍ତୁତ ନୁହେଁ । ସବୁ ବର୍ଗ ପାଇଁ ସ୍ୱାଭିମାନର ସହ ଜୀଇଁ ରହିବାର ଅବସରକୁ ଏ ବ୍ୟବସ୍ଥା ଏତେ ବେଶି ସଂକୁଚିତ କରିଦେଉଛି ଓ ଏ ସଂକୋଚନରେ ବ୍ୟବସ୍ଥାରେ କୌଣସି ଭୁଲ ନାହିଁ ବା ତାର କିଛି ବିକଳ୍ପ ନାହିଁ ବୋଲି ଆମ ଲୋକଙ୍କୁ ଏମିତି ବୁଝେଇ ଦିଆଯାଇ ପାରୁଛି ଯେ ବ୍ୟବସ୍ଥାକୁ ଚ୍ୟାଲେଂଜ କରିବା କଥା ଅଧିକାଂଶ ଲୋକ କଳ୍ପନା ମଧ୍ୟ କରି ପାରୁନାହାଁନ୍ତି । କଳ୍ପନାର ସାହସ କରୁଥିବା ଲୋକଙ୍କୁ ବହୁ ବିଖଣ୍ଡିତ ଋଷ ଓ ପୁଂଜିବାଦୀ ସଂସ୍କାରରେ ମାତିଥିବା ଚୀନର ଉଦାହରଣ ଦେଇ ନିରୁତ୍ସାହିତ କରାଯାଉଛି ।

ଆମର ଅସହାୟତା ସଂବଧରେ ଗୋଟିଏ ଦିଟା ଉଦାହରଣ ଯଥେଷ୍ଟ ହେବ । ପ୍ରଥମଟି ହେଲା ଆକାଶଫଟା ପେଟ୍ରୋଲ ଓ ଡିଜେଲର ଦର । ଏହାକୁ ଅନ୍ତରାଷ୍ଟ୍ରୀୟ ବଜାର ବ୍ୟବସ୍ଥାର ଅବଦାନ କହି ଆମକୁ ଚୁପ୍ କରି ଦିଆଯାଉଛି । ଦେଶର ଟିକସ ଢାଂଚାରେ ପରିବର୍ତ୍ତନ ଓ ଦେଶରେ ମହଜୁଦ ଥିବା ତେଲର ବଲିଭିଆ ଦେଶ ପରି ସରକାରୀ କରଣ କଲେ (ରିଲାଏନ୍ସ ଭଳି କଂପାନୀକୁ ତେଲ ଖଣି ଦେବା ବନ୍ଦ କଲେ), ଏ ସମସ୍ୟାର କିଛି ମାତ୍ରାରେ ସମାଧାନ ହୋଇପାରନ୍ତା । ଏପରିକି କ୍ୟୁବା ଦେଶ ଭଳି ତେଲ ବ୍ୟବହାରରେ ନିୟନ୍ତ୍ରଣ, କାର-ଅଟୋ ମୋବାଇଲର ଉତ୍ପାଦନ ଓ ଆମଦାନୀର ମାତ୍ରାରେ ହ୍ରାସ କରି,

ଉନ୍ନତ ପବ୍ଲିକ ଟ୍ରାନସ୍‌ପୋର୍ଟ ବ୍ୟବସ୍ଥା ସହ ସାଇକେଲ ସଂସ୍କୃତିର ବିକଳ୍ପ କଥା ଚର୍ଚ୍ଚା ହୋଇ ପାରନ୍ତା । ଠିକ୍ ସେହିଭଳି ଉନ୍ନତ ଟେକ୍‌ନୋଲୋଜି, ବିଦେଶୀ ପୁଂଜିରେ ରପ୍ତାନୀ ଭିତ୍ତିରେ ବୃହତ୍ ଶିଳ୍ପ ଓ ତଦ୍‌ଜନିତ ଆର୍ଥିକ ଅଭିବୃଦ୍ଧିରେ ଦେଶର ବେକାରୀ ଦୂର ହେବାର ଅନ୍ଧବିଶ୍ୱାସକୁ ଆମେ ମାନିନେଇଛୁ ।

ଏସବୁ ସତ୍ୟତାକୁ ଜାଣି ବ୍ୟବସ୍ଥାକୁ ଚ୍ୟାଲେଂଜ କରିବା ବଦଳରେ ତୀବ୍ର ଗତିରେ କ୍ରମ ସଂକୁଚିତ ଅବସରଗୁଡ଼ିକୁ ହାସଲ କରିବା ପାଇଁ ଲୋକେ ନୀତିହୀନ ପ୍ରତିସ୍ପର୍ଦ୍ଧା ଓ ପ୍ରତିଯୋଗିତାରେ ମାତି ଯାଉଛନ୍ତି । ଅନ୍ୟମାନଂକୁ ବାଦ ଦେଲେ କିମ୍ବା ଅନ୍ୟ ପ୍ରତି ସମ୍ବେଦନହୀନ ହେଲେ ଯାଇ ନିଜ ପାଇଁ ସୁଖ, ସମ୍ମାନ, ପ୍ରତିଷ୍ଠା ଓ ବଜାରରେ ମିଳୁଥିବା ଉପଭୋଗର ସାମଗ୍ରୀଗୁଡ଼ିକ ହାସଲ କରିହେବ ଭଳି ଅମାନବୀୟ ସର୍ତ୍ତକୁ ଗ୍ରହଣ କରିନେବାର ଏକ ସଂସ୍କୃତି ଚେର ଧରିବାକୁ ଆରମ୍ଭ କଲାଣି । ତେଣୁ ଆର୍ଥିକ ସମସ୍ୟାର ସମାଧାନ ଜାତି ଓ ଧାର୍ମିକ ବିବାଦର ଜିତ୍ / ହାରରେ ଖୋଜିବାର ଅମାନବିକତା ଆମ ଉପରେ ସବାର କରେଇବାରେ ମୌଳବାଦୀମାନେ ସକ୍ଷମ ହେଉଛନ୍ତି । ସଠିକ ବିଶ୍ଳେଷଣ କଲେ ଆମେ ତାର ଚରମ ଓ ଦୁଃଖଦ ପରିଣତି ଗୁଜରାଟ ଦଙ୍ଗା ଓ ବମ୍ବେ ବ୍ଲାଷ୍ଟରେ ଦେଖି ପାରିବା । ଆସାମରେ ବିହାରି ଶ୍ରମିକ ଓ ଛାତ୍ରମାନଙ୍କୁ ହତ୍ୟା ଓ ମାଡ଼, ବମ୍ବେରୁ ଅଣମରାଠୀମାନଙ୍କୁ ତଡ଼ିବା ଲାଗି ଶିବସେନା ଦେଉଥିବା ଆହ୍ୱାନ, ଉତ୍ତର ପୂର୍ବ ରାଜ୍ୟରେ ଅଣ ଆଦିବାସୀଙ୍କ ପ୍ରତି ବିଦ୍ୱେଷ ଓ ସେଠିକାର ବିଭିନ୍ନ ଆଦିବାସୀ ସମୁଦାୟ ଭିତରେ ହେଉଥିବା ସଂଘର୍ଷ, ଆନ୍ଧ୍ରପ୍ରଦେଶରେ ଦଳିତ ମାଦିଗା ଓ ମାଳାଙ୍କ ଭିତରେ ସଂରକ୍ଷଣଜନିତ ସୁବିଧାକୁ ନେଇ ହେଉଥିବା ସଂଘର୍ଷ ମଧ୍ୟ ସେଇ ପ୍ରକ୍ରିୟାର ପରିଣତି । ଆଉ ଏକ ଦିଗରେ ଗରିବ ଓ ଦୁର୍ବଳ ଶ୍ରେଣୀକୁ କରାଯାଉଥିବା ତଥାକଥିତ ସାହାଯ୍ୟ ଓ ସହଯୋଗ ପ୍ରତି ମଧ୍ୟବିତ୍ତଙ୍କ ଭିତରେ ଅସହିଷ୍ଣୁତା ବଢୁଛି । ମଣ୍ଡଳ କମିଶନର ରିପୋର୍ଟକୁ ସରକାର ଗ୍ରହଣକରିବା ଓ ସେଇ ରିପୋର୍ଟ ଅନୁସାରେ ଉଚ୍ଚତର ଶିକ୍ଷାରେ ପଛୁଆ ବର୍ଗଙ୍କୁ ସଂରକ୍ଷଣ ଦେବାର ଘୋଷଣା ବେଳେ ସାରା ଦେଶରେ ଧନୀକ ଶ୍ରେଣୀର ଛାତ୍ର ଅନଶନ ଓ ଧର୍ମଘଟ ଆରମ୍ଭ କରି ଦେଇଥିଲେ ।

ଏ ବ୍ୟବସ୍ଥା ଉପଭୋଗର ଆଗ୍ରହକୁ ପ୍ରବଳ କରେଇ ସାଥୀ ମଣିଷ ଓ ପ୍ରକୃତି ପ୍ରତି ସମ୍ବେଦନହୀନତା ଶିଖାଉଛି । ରାଜନୈତିକ ନେତା ଓ ଅମଲାତନ୍ତ୍ରକୁ ଦୁର୍ନୀତିଗ୍ରସ୍ତ କରାଉଛି । ଉପଭୋଗର ପ୍ରବଳ ଆଗ୍ରହର ପୂର୍ତ୍ତି ପାଇଁ ଅପର୍ଯ୍ୟାପ୍ତ ଧନ ଓ ନିରଙ୍କୁଶ କ୍ଷମତା ଜରୁରୀ । ସେଥିପାଇଁ ଶାସକ ବର୍ଗ ଧନ ଠୁଳରେ ମାତିଛି । କ୍ଷମତାର ବଳୟ ଓ ନିଷ୍ପତ୍ତି ଗ୍ରହଣର କେନ୍ଦ୍ରକୁ ସାଧାରଣ ମଣିଷ ପ୍ରଭାବିତ କରିପାରିବା ପରିପ୍ରେକ୍ଷୀରେ ଥିବା ସୀମିତ ସମ୍ଭାବନାକୁ ମଧ୍ୟ ନଷ୍ଟ କରିବାରେ ଲାଗିଛି । ଧନ ଠୁଳକୁ ପ୍ରାଥମିକତା ଦେଇ ନୀତି ଓ

ଯୋଜନା କରୁଛି । ସେ ଧନଠୁଳ ଦେଶ ପାଇଁ ନୁହେଁ । ନିଜ ପାଇଁ, ନିଜ ପରିବାର, ବିରାଦରି ଓ ଦଳ ପାଇଁ । କି ପ୍ରକାରର ରାଜନୈତିକ - ଅର୍ଥନୀତିରେ, ବିକାଶ ଢାଂଚାରେ, ପ୍ରକଳ୍ପରେ ଏକା ସାଙ୍ଗରେ ଅଧିକ ଧନ ହାତେଇ ହେବ ସେ ତାର ବାଟ ଖୋଜୁଛି । ସେ ବାଟ ଦେଖେଇବା ପାଇଁ ଅଛନ୍ତି ଋଣ ପ୍ରଦାନକାରୀ ସଂସ୍ଥା, ଦେଶ ଓ ଅନ୍ତଃରାଷ୍ଟ୍ରୀୟ ପରାମର୍ଶଦାତା । ଏଭଳି ଏକ ଆଗ୍ରହ ଓ କିଛି ପଶ୍ଚିମୀ ଦେଶ ଦ୍ୱାରା ତୃତୀୟ ବିଶ୍ୱର ଲୁଣ୍ଠନ ଓ ଶୋଷଣର ଷଡଯନ୍ତ୍ରରୁ ଜନ୍ମିଛି ଜଗତୀକରଣର ନାଟକ ।

ଭାରତ ପରି ଦେଶରେ ପର୍ଯ୍ୟାପ୍ତ ଧନ ଠୁଳୀକରଣର ଅର୍ଥ ହେଲା ସାଧାରଣ ଜନତାର ଆକଣ୍ଠ ଶୋଷଣ ଓ ପ୍ରକୃତିର ଧର୍ଷଣ । ସେଭଳି ଆଗ୍ରହରୁ ଜନ୍ମ ନେଇଛି ଗାଁ ଗାଁର ପକ୍କା ରୋଡ (ସିସି ରୋଡ) । ଆଖି ରହିଲା ସିମେଣ୍ଟ କଂପାନୀର କମିଶନି ଉପରେ । ଜଳସେଚନ, ପ୍ରାଥମିକ ଶିକ୍ଷା ଓ ସ୍ୱାସ୍ଥ୍ୟକୁ ପ୍ରାଥମିକତା ନ ଦେଇ ପକ୍କା ରୋଡ । ନିର୍ମାଣ କଂପାନୀ ଓ ପାଣି, ବିଜୁଳିର ବଜାରୀକରଣ ପାଇଁ ଅପେକ୍ଷାରତ ବହୁ ରାଷ୍ଟ୍ରୀୟ କଂପାନୀଠୁ କମିଶନି ପାଇଁ ହିଁ ନଦୀ ସଂଯୋଗୀକରଣର ପାଗଳାମୀ । ଏୟାରପୋର୍ଟ ସ୍ଥିତ ବଜାରର ଘରୋଇକରଣ, ଲାଭଦାୟକ ପବ୍ଲିକ ସେକ୍ଟର ଓ ଗୋଡ଼ି ମାଟି ଦରରେ ସୀମିତ ଖଣିଜ ସଂପଦର ବିକ୍ରି ପଛରେ ବି ସେଇ ଚରମଭୋଗ ଲିପ୍‌ସା । ପ୍ରଶ୍ନ ପଚାରିବା ପାଇଁ ସାଂସଦଙ୍କ ଲାଂଚ, ଏକରୁ ଅଧିକ ଲାଭଜନକ ପଦବୀରେ ରହିବାର ବିଲ୍ ଆଣିବା ପଛରେ ସେଇ ଅର୍ଥର ଲାଳସା, କୋକ୍ ଓ ପେପ୍‌ସି କଂପାନୀର ସେଲ୍ସମ୍ୟାନ ସାଜି ବିଜ୍ଞାପନ କରୁଥିବା ସଚିନ ଓ ଐଶ୍ୱର୍ଯ୍ୟା ରାୟ ମଧ୍ୟ ଅର୍ଥର ଲାଳସାରେ ଲୋକଙ୍କୁ ବିଷପିଇବାକୁ ପ୍ରେରିତ କରୁଛନ୍ତି । ବୋଫର୍ସ, ଟେଲିକମ୍, କଫିନ୍, ଗୋଖାଦ୍ୟ ଓ ତାଜମହଲ ଦୁର୍ନୀତି ପଛରେ ବି ସେଇ ଅର୍ଥ ଲୋଲୁପତା । ଚାହିଦା ନ ଥିବା ଓ ରୋଜଗାର ସୃଷ୍ଟିର ଅକ୍ଷମ ତଥା ପ୍ରଦୂଷଣକାରୀ ଶିଳ୍ପାୟନ ନାଁରେ ସାରା ଦେଶରେ ଲକ୍ଷାଧିକ ଏକର ଚାଷ ଓ ଜଙ୍ଗଲ ଜମିକୁ ଘରୋଇ କଂପାନୀକୁ ଲିଜ୍ ଦେବା ପଛରେ ସେଇ ଗୋଟିଏ କାରଣ । ଜେନେଟିକାଲ୍ ମୋଡିଫାଏଡ ବିହନ ଓ ଖାଦ୍ୟ ଆମଦାନୀ, ବିଟି କପାର ପ୍ରଚଳନ, ମନସେଣ୍ଟୋ ଓ କାରଗିଲ ଭଳି କଂପାନୀକୁ ବିହନ ଓ କୃଷି ବଜାରରେ ପ୍ରବେଶାଧିକାର ଭଳି ନିଷ୍ପତ୍ତି ପଛରେ ରହିଛି ବିହନ କଂପାନୀଠୁ କମିଶନ ପାଇବାର ଆଶା । ଅଲିଖିତ, ଅଘୋଷିତ ବେଆଇନ୍ ଏ କମିଶନି ପ୍ରକ୍ରିୟାରେ ଲକ୍ଷାଧିକ ଆଦିବାସୀ ବିସ୍ଥାପିତ ହେଉଛନ୍ତି । ଶ୍ରମିକ ହେଉଛି ବେକାର । କୃଷକ କରୁଛି ଆତ୍ମହତ୍ୟା । ବେକାରୀର ହତାଶାକୁ ନେଇ ଯୁବକ ନିଶାଗ୍ରସ୍ତ ହେଉଛି ନ ହେଲେ କୌଣସି ଅତିବାଦୀ ସଂଗଠନର କର୍ମୀ । ଅନ୍ୟ ଦିଗରେ ଅନିୟମିତ ବର୍ଷା, ଏସିଡ ବର୍ଷା, ସୁନାମୀ, ମହାଭୂକଂପ, ମହାବାତ୍ୟା, କ୍ରମାଗତ ମରୁଡ଼ି, ଭଳି ଗ୍ଲୋବାଲ ୱାର୍ମିଙ୍ଗ୍ ପରି ପ୍ରାକୃତିକ ବିପର୍ଯ୍ୟୟର ସମ୍ମୁଖୀନ ହେଉଛି ଦେଶ । ବୃହତ୍ ଶ୍ରେଣୀ ଭିତରେ ଉଭୟ ଅସ୍ତିତ୍ୱ ଓ ଅସ୍ମିତାର ସଂକଟକୁ ଅତି ପ୍ରବଳ କରୁଛି ଏଇ ବ୍ୟବସ୍ଥା ।

ଏଇ ପ୍ରକାରର ସାମାଜିକ ଶକ୍ତିଙ୍କୁ ଦୁର୍ବଳ କରିବା, ତାଂକଠୁ ଧନଠୁଳ ଓ ହିଂସା କରିବାର ଏକଚାଟିଆ କ୍ଷମତା ଛଡେଇ ଆଣିବା, ବିଭିନ୍ନ ପରିଚୟ ନେଇଥିବା ପୂର୍ବାଗ୍ରହ ତଥା ସାମୟିକ ଲାଭ ଲୋଭରେ ମାତି ସମଗ୍ର ଓ ଦୀର୍ଘସୂତ୍ରୀ କଥାକୁ ଅବହେଳା କରିବାର ମାନସିକତାରୁ ସମାଜକୁ ମୁକ୍ତ କରିବା, ସାମାଜିକ (ଧର୍ମ,ଜାତି, ଲିଙ୍ଗ) ଆର୍ଥିକ (ଆଂଚଳିକ, ସହର -ଗାଁ, ଧନୀ-ଗରିବ ) କ୍ଷେତ୍ରରେ ଥିବା ଚରମ ବିଷମତାକୁ ନିୟନ୍ତ୍ରିତ କରିବା, ରାଜନୀତିକୁ ସଂଖ୍ୟାଗରିଷ୍ଠତା - ସଂଖ୍ୟାଲଘୁ ବାଦରୁ ମୁକ୍ତ କରିବା, 'ରାଷ୍ଟ୍ରତନ୍ତ୍ର' କୁ ଧନତନ୍ତ୍ର ଓ ହିଂସାର ଦୁଃଷ୍ଚକ୍ରରୁ ମୁକୁଳେଇବା ବିନା ଜାତି,ଧର୍ମ, ବର୍ଗ, ଅଂଚଳ, ଲିଂଗ ନିର୍ବିଶେଷରେ ସବୁମଣିଷର  ବ୍ୟକ୍ତିସ୍ୱାଧୀନତା, ଅଭିବ୍ୟକ୍ତିର ଅବସରକୁ ସୁରକ୍ଷିତ ରଖିବା ତ ଦୂରର କଥା, ଜିଇଁ ରହିବାର ସର୍ବନିମ୍ନ ଅଧିକାର (ମୁଠେ ଖାଇ ଖଣ୍ଡେ ପିନ୍ଧିବା ପାଇଁ ସାଧନ ଓ କାମ, ପ୍ରାଥମିକ ଶିକ୍ଷା, ସ୍ୱଚ୍ଛ ସ୍ୱାସ୍ଥ୍ୟଗତ ସୁବିଧା ) ମଧ୍ୟ ସୁରକ୍ଷିତ ରହି ପାରିବ ନାହିଁ ।

ଏଥିପାଇଁ ସାମାଜିକ-ରାଜନୈତିକ ସଚେତନତା ଥିବା ଏକ ମୁକ୍ତ, ସ୍ୱାଧୀନ, ସମ୍ବେଦନଶୀଳ ବ୍ୟକ୍ତି ବା ନାଗରିକ ସେତେବେଳେ ଯାଏଁ ବିପଦ ମୁକ୍ତ, ଆତଙ୍କମୁକ୍ତ ହୋଇ ବଂଚି ପାରିବ ନାହିଁ, ସର୍ଜନଶୀଳ ହୋଇ ପାରିବ ନାହିଁ ଯେତେବେଳ ଯାଏଁ ଆମ ସମାଜର ବଡ଼ଭାଗ ଲୋକ ବୁଝିବେନି ଯେ ପ୍ରଚଳିତ ସାମାଜିକ ବ୍ୟବସ୍ଥା, ରାଜନୈତିକ-ଅର୍ଥନୀତିରେ ସମାନତା, ସ୍ୱାଧୀନତା ଓ ଭ୍ରାତୃତ୍ୱ ପରି ମୂଲ୍ୟବୋଧଭିତ୍ତିକ ଜୀବନ ସମ୍ଭବ ନୁହେଁ । ଯେଉଁଠି ସାଧାରଣ ନାଗରିକର ଜୀବନ ଜୀବିକା ସୁରକ୍ଷିତ ନୁହେଁ ସେଠି ସାହିତ୍ୟ ଓ କଳାରେ ଥିବା ସ୍ରଷ୍ଟାର ସ୍ୱାଧୀନତା ଯେ ସୁରକ୍ଷିତ ରହିପାରିବ ନାହିଁ ସେ କଥା ଆମେ ବୁଝିବା ଜରୁରୀ । ଆମକୁ ଅନ୍ୟ ଏକ ସମାଜ, ରାଜନୀତି ଓ ଆର୍ଥିକ ବ୍ୟବସ୍ଥା ତଥା ବିକାଶ ଢାଂଚା ବା ବୃହତ୍ତର ଅର୍ଥରେ କହିଲେ ଅନ୍ୟଏକ ରକମର ଦେଶ ଓ ପୃଥିବୀ ନିର୍ମାଣର ସ୍ୱପ୍ନ ପାଇଁ ପ୍ରସ୍ତୁତ ହେବାକୁ ପଡିବ । ଏମିତି ଏକ ସ୍ୱପ୍ନ ଏକଦା ସ୍ୱାଧୀନତା ଆନ୍ଦୋଳନ ବେଳେ ଲୋକେ ଦେଖିଥିଲେ । ସେ ସ୍ୱପ୍ନ ଆଜି ନେପାଳର ଜନତା ଦେଖୁଛି । କିନ୍ତୁ ସେମାନେ ରାଜତନ୍ତ୍ରରୁ ଯାଉଛନ୍ତି ବହୁଦଳୀୟ ଗଣତନ୍ତ୍ରକୁ, ଯାହା ଭାରତରେ କେବେଠୁ ଆମେ ହାସଲ କରି ସାରିଛୁ ।  ମାତ୍ର ଏଠି ବହୁ ଦଳୀୟ ଗଣତନ୍ତ୍ରର କଟୁସ୍ୱାଦ ଆମେ ସଭିଏଁ ଚାଖି ସାରିଛୁ । ବିକଳ୍ପ ସମାଜ ଓ ରାଜନୈତିକ ବ୍ୟବସ୍ଥାର ନିର୍ମାଣ ସମ୍ଭବ ଓ ସେ ସମ୍ଭାବନାକୁ ବିଶ୍ୱାସ କରି ସେଥିପାଇଁ କାମରେ ଲାଗିଯିବା ବିନା ସତରେ କଣ ଅନ୍ୟ ବାଟ ଅଛି ? ଅନ୍ତତଃ, କୃଷକ, ଶ୍ରମିକ, ଆଦିବାସୀ-ଦଳିତ ଓ ନାରୀ ପାଇଁ ତ ନାହିଁ । ଏପରିକି ନିମ୍ନ ମଧ୍ୟବିତ୍ତଙ୍କ ପାଇଁ ବି ରାସ୍ତା ନାହିଁ ।

ତା ଛଡା ସମତା, ସ୍ୱାଧୀନତା ଓ ଭ୍ରାତୃତ୍ୱର ଭାବନା ଓ ପରିବେଶ ଥିବା ଏକ ସମାଜର ସ୍ୱପ୍ନ ଦେଖୁଥିବା ଲେଖକ, କବି, ଶିଳ୍ପୀ, କଳାକାର ପାଇଁ ସତରେ କଣ ଅନ୍ୟ

ବାଟ ଅଛି । ଯେଉଁ ସର୍ଜକ ନିଜ କଳା ଓ ସାହିତ୍ୟର କେନ୍ଦ୍ରରେ ମଣିଷକୁ, ପ୍ରକୃତିକୁ, ପ୍ରେମ ଓ ନ୍ୟାୟକୁ ରଖେ ତା ପାଇଁ ବି ଅନ୍ୟ ବାଟ ନାହିଁ । ହଁ ଏମିତି ହେଇପାରେ ଯେ ଗ୍ରୀକ୍ ଓ ରୋମରେ ଯେମିତି 'ଦାସ' ପାଇଁ ନ୍ୟାୟ, ସମତା କି ଗଣତନ୍ତ୍ର ଲାଗୁ ହେଉ ନ ଥିଲା ଏବଂ ସେଠି ଅନେକ ସାହିତ୍ୟିକ, କଳାକାର ଓ ଶିଳ୍ପୀମାନେ 'ଦାସ'ଙ୍କୁ ମଣିଷ ବୋଲି ମନେ କରୁ ନ ଥିଲେ, ସେ କଥା ଆଜି ଏଠି ବି ସମ୍ଭବ । ଆଜି ବି ଆମେରିକା ଓ ୟୁରୋପରେ କଳା ଲୋକଂକୁ, ତୃତୀୟ ବିଶ୍ୱର ଲୋକଂକୁ ଗୋରାଙ୍କ ସମକକ୍ଷ ମନେ କରାଯାଉନାହିଁ । ଆମେରିକାରେ କାଟ୍ରିଆନା (ସାମୁଦ୍ରିକ ଝଡ) ବେଳେ ବିପନ୍ନ କଳା ଲୋକଂକ ପ୍ରତି ଆମେରିକା ପ୍ରଶାସନ ଓ ବୁଶ୍ ଦେଖେଇ ଥିବା ଉଦାସୀନତାର ରାସ୍ତାକୁ ମୋଡେଲ ମନେ କରି ଆମେ ଭାରତରେ ଆଦିବାସୀ, ଦଳିତ, ଶ୍ରମିକଙ୍କୁ ନେଇ ଏକ ଦାସ ଶ୍ରେଣୀ ସୃଷ୍ଟି କରିପାରିବା । ତାଙ୍କ ପାଇଁ ନ୍ୟାୟ, ସମତା, ଗଣତନ୍ତ୍ର କାର୍ଯ୍ୟକାରୀ ହେବ ନାହିଁ । ନିଜ ନିଜ ସମୟର ପ୍ରଚଳିତ ବ୍ୟବସ୍ଥାକୁ ମାନି କଳା,ସାହିତ୍ୟ ଓ ଅଭିନୟରେ ଥିବା ଜଣେ ମଣିଷ ପୁରସ୍କୃତ ଓ ସମ୍ମାନିତ ହେଇପାରେ । ରାଜାର ପାଖ ଲୋକ ହେଇପାରେ ଓ ପୁରସ୍କାରଗୁଡ଼ିକ ସହ କର୍ପୋରେଟ ଅର୍ଥ ଯୋଡ଼ି ହେଉଥିବାରୁ ବେପାରୀର ଗୁଣ ଗାନ କରିପାରେ । 'ପୁରସ୍କାର ଦେବା ନେବାର ରାଜନୀତି' ଲେଖାରେ, ରାଜେନ୍ଦ୍ର ଯାଦବ ଏ ସମ୍ବନ୍ଧରେ ସବିସ୍ତାରରେ ଲେଖିଛନ୍ତି । ସମାଜର ଗୋଟିଏ ବର୍ଗକୁ ମଣିଷ ଓ ଅନ୍ୟ ବର୍ଗକୁ ଦ୍ୱିତୀୟ ଦର୍ଜାର ମଣିଷ ବା ପଶୁ ମନେ କରି ଜଣେ ଲେଖା ଲେଖିପାରେ, ଚିତ୍ର ଆଙ୍କିପାରେ, ନାଟକ ଓ ସିନେମା କରିପାରେ ।

ଏମିତିରେ ତ ହିଟଲରଙ୍କୁ ବି ପୃଥିବୀର ଅନେକ ନାମଜାଦା ଲେଖକ, ଔପନ୍ୟାସିକ, ବୈଜ୍ଞାନିକ ସମର୍ଥନ କରୁଥିଲେ । ଲାଦେନ, ବୁଶ୍ ଓ ମୋଦି ଭଳି ବ୍ୟକ୍ତିଙ୍କୁ ପ୍ରଶଂସା କରୁଥିବା ସ୍ରଷ୍ଟାଂକ ସଂଖ୍ୟାବି କିଛି କମ୍ ନୁହେଁ । ଏଭଳିଆ କଳାକାର, ସାହିତ୍ୟକାର, ଶିଳ୍ପୀଟିଏ ବା ନାଗରିକଟିଏ ବ୍ୟକ୍ତି ସ୍ୱାଧୀନତାକୁ, ଲେଖକୀୟ ବା କଳାକାରର ସ୍ୱାଧୀନତାକୁ କେମିତି ବ୍ୟବହାର କରିବ ଭାବନ୍ତୁ । ତାହା ନିଶ୍ଚୟ ଆଉ ଗୋଟିଏ ବର୍ଗ, ଧର୍ମ, ଜାତି, ଲିଙ୍ଗ, ଅଂଚଳ ଓ ଭାଷାର ମଣିଷ ବିରୋଧରେ ବ୍ୟବହୃତ ହେବ କିମ୍ବା ଗୋଟିଏ ନିର୍ଦ୍ଦିଷ୍ଟ ବର୍ଗକୁ ସନ୍ତୁଷ୍ଟ ଓ ପ୍ରଶଂସା କରିବା ପାଇଁ ବ୍ୟବହୃତ ହେବ । ଏଇ ଯେମିତି ଆମ ଆଲବମ୍ ଗୀତର ରଚନାକାର ଓ ଦୂରଦର୍ଶନ ତଥା ସିନେମାର ହାସ୍ୟ ଅଭିନେତାମାନେ କଳାକାରର ସ୍ୱାଧୀନତାକୁ ଗରିବ, ପଛୁଆ, ତଳଜାତି ଓ ନାରୀ ପ୍ରତି ଆକ୍ଷେପ କରିବାରେ ବ୍ୟବହାର କରୁଛନ୍ତି । ସାଂସଦ ହେଇଥିବା ନବଜ୍ୟୋତ ସିଦ୍ଧୁ, ଅଭିନେତ୍ରୀ ବିପାଶା, 'ଷ୍ଟାର ୱାନ'ଚ୍ୟାନେଲର ସେଇ ହାସ୍ୟ ଅଭିନେତାଙ୍କୁ ପ୍ରୋତ୍ସାହିତ କରୁଛନ୍ତି । ଓଡିଶାରେ ବ୍ୟଙ୍ଗ କବିତା ନାରୀ ବିରୋଧୀ ଆକ୍ଷେପର ସମବାଚକ ହେଇ ରହିଛି । ଆମ ଦେଶରେ ଗୁଜରାଟ

ଦଙ୍ଗାକୁ ସମର୍ଥନ କରୁଥିବା ଜ୍ଞାନପୀଠ ବିଜେତା କବି ଅଛନ୍ତି । ସିମି ଭଳି ଫାସିବାଦୀ ସଂଗଠନକୁ କ୍ଲିନ ଚିଟ୍ ଦେଉଥିବା, ମୁଲାୟମ ସିଂ ପରି ନେତା ଅଛନ୍ତି। ଇମ୍ରାନା ପ୍ରତି ହେଉଥିବା ଅତ୍ୟାଚାରକୁ ଯଥାର୍ଥ କହୁଥିବା ମୌଲା, ଅମିନ ଓ ମୁଲାୟମ ସିଂ ମାନଙ୍କର ଦେଶ ହେଲା ଭାରତ । ଶାହାବାନୁମାନଙ୍କ ପ୍ରତି ବା ସାମଗ୍ରିକ ଭାବେ ମୁସଲିମ ମହିଳାଙ୍କ ପ୍ରତି ହେଉଥିବା ଅନ୍ୟାୟକୁ କାନୁନୀ ପୋଷାକ ପିନ୍ଧଉଥିବା ସଂସଦର ଦେଶ ଭାରତ । ନିଜ ଭଉଣୀ ସତୀ ହୋଇ ନିଆଁ ରେ ଜଳିଲା ବୋଲି ଗର୍ବ କରୁଥିବା ରୂପ କନ୍‌ୱରର ଭାଇମାନଙ୍କର ଦେଶ ଭାରତ । କନ୍ୟା ଭ୍ରୁଣକୁ ହତ୍ୟା କରୁଥିବା ବାପ-ମାଆଙ୍କର ଦେଶ ଭାରତ । ବମ୍ବେ ବ୍ଲାଷ୍ଟ (୨୦୦୬) ପରେ ଗୁଜରାଟ ଦଙ୍ଗାର ପୁନରାବୃତ୍ତିର ଧମକ ଦେଉଥିବା ଅଶୋକ ସିଂହଲ ପରି ମଣିଷ ଆମ ଦେଶରେ ଅଛନ୍ତି । ସ୍ଥାୟୀ ଘରପଟ୍ଟା ଓ ଶୁଦ୍ଧ ପାନୀୟ ଜଳ ପାଉ ନ ଥିବା ବସ୍ତି ବାସିନ୍ଦାଙ୍କୁ ହନୁମାନ ଜୟନ୍ତୀ ନାଁରେ ନିଜେ ଖଣ୍ଡା ଧରି ଧାର୍ମିକ ଭିତ୍ତିରେ ହିଂସା ଶିଖଉଥିବା ମନ୍ତ୍ରୀ ବି ଅଛନ୍ତି ଆମ ଓଡ଼ିଶାରେ । ଏ ପ୍ରକ୍ରିୟାରେ କିଛି ଅଧ୍ୟାପକ ଓ ସାଂବାଦିକ ମଧ୍ୟ ଜଡ଼ିତ ହେବାକୁ ଲଜ୍ଜାବୋଧ କରିନାହାଁନ୍ତି । ତୁଚ୍ଛା ଲୋକପ୍ରିୟତା, ଚାଂଚଲ୍ୟ ସୃଷ୍ଟି, ମୂଲ୍ୟହୀନ ବିବାଦ ମାଧ୍ୟମରେ ପରିଚିତି ନିର୍ମାଣର ଦୁରାଗ୍ରହ ଓ ଉପର ବର୍ଣ୍ଣିତ ପୂର୍ବାଗ୍ରହରୁ ମୁକ୍ତ ହେବା ସହ ବ୍ୟବସ୍ଥା ସଚେତନ ହେଇ ଏକ ନ୍ୟାୟ ଓ ସମତାର ସମାଜ / ପୃଥିବୀ ନିର୍ମାଣର ସ୍ୱପ୍ନକୁ ସତ କରିବା ପରିପ୍ରେକ୍ଷୀରେ ନିଜର କଳା, ସାହିତ୍ୟ, ଶିଳ୍ପ, ଅଭିନୟକୁ ବ୍ୟବହାରର ଉଦ୍ଦେଶ୍ୟ ବିନା କଳା ଓ ସାହିତ୍ୟ ସହ ଜଡ଼ିତ ଏକ ବ୍ୟକ୍ତିର ସ୍ୱାଧୀନତା ସାମଗ୍ରିକ ଭାବେ ମଣିଷ ଲାଗି ବିଶେଷ କିଛି ଅର୍ଥ ରଖେନା । ଏପରିକି ତାକୁ ନିର୍ଦ୍ଦିଷ୍ଟ ରାଜନୈତିକ ମତାଦର୍ଶ ଓ ବିକାଶ ସଂପର୍କରେ ଆତ୍ମପୋଷିତ ରଢ଼ିବାଦୀ ସଂସ୍କାରରୁ ମୁକ୍ତ ହେବାକୁ ପଡ଼ିବ । ଏ କଥା ବିଜ୍ଞାନ ସହ ଜଡ଼ିତ ଗବେଷକ ପାଇଁ ମଧ୍ୟ ପ୍ରଯୁଜ୍ୟ । ତାକୁ ଠିକ୍ କରିବାକୁ ପଡିବ ଯେ ସେ ମେଲେରିଆ ପାଇଁ ଶସ୍ତା ଓ ସଠିକ ଔଷଧର ଉଦ୍ଭାବନରେ ଲାଗିବ ନା ମିଶାଇଲ୍ ଓ ବମ୍ ତିଆରିରେ ମାତିବ ।

ଏ ଭଳି ସଂକଟରୁ ମୁକୁଳିବାର ବାଟ କଣ ? ହରିଣକୁ ରକ୍ଷା କରିବା ପାଇଁ ଈଶ୍ୱର ଥିଲେ । ଝଡ଼ବର୍ଷା ଡାକିଦେଲେ । ହେଲେ ମଣିଷ ପାଇଁ ସତରେ କ'ଣ ଈଶ୍ୱର ଅଛନ୍ତି ନା ମଣିଷ ନିଜ ବାଟ ନିଜେ ତିଆରିବ । ଏ ପ୍ରଶ୍ନ କୌଣସି ଆଧ୍ୟାତ୍ମିକ ପ୍ରଶ୍ନ ନୁହେଁ । ଯଜ୍ଞ / ପ୍ରବଚନ / ଏପରିକି ରାମଦେବ ବାବାଂକ 'ଯୋଗ'ରେ ଏ ସବୁର ସମାଧାନ ନାହିଁ । ଆଜିର ଜାତିରାଷ୍ଟ୍ର ବ୍ୟବସ୍ଥା (Nation State System) ରେ ସବୁ ପ୍ରଶ୍ନ ରାଜନୈତିକ । ଆମେ ସାମ୍ନା କରୁଥିବା ପ୍ରତିଟି ସମସ୍ୟା ମୂଳରେ ରହିଛି ଏକ ନିର୍ଦ୍ଦିଷ୍ଟ ରାଜନୈତିକ ଅର୍ଥନୀତି । ସେ ସଂବଂଧରେ ଅନେକ ଥର ଆଲୋଚନା ହେଇ ସାରିଛି । ଏ କଥା ବି ଆଲୋଚନା ହେଇଛି ଯେ ମୁଖ୍ୟଧାରାର ରାଜନୈତିକ ଦଳ କଂଗ୍ରେସ, ବି.ଜେ.ପି. ଅବା କ୍ଷେତ୍ରିୟ ଦଳଗୁଡିକର ବିଚାର ଓ ରାଜନୀତି ହେଲା ସାଧାରଣ ଜନତାର ବିରୋଧୀ ।

ବାଟ ଅଛି । ଯେଉଁ ସର୍ଜକ ନିଜ କଳା ଓ ସାହିତ୍ୟର କେନ୍ଦ୍ରରେ ମଣିଷକୁ, ପ୍ରକୃତିକୁ, ପ୍ରେମ ଓ ନ୍ୟାୟକୁ ରଖେ ତା ପାଇଁ ବି ଅନ୍ୟ ବାଟ ନାହିଁ । ହଁ ଏମିତି ହୋଇପାରେ ଯେ ଗ୍ରୀକ୍ ଓ ରୋମରେ ଯେମିତି 'ଦାସ' ପାଇଁ ନ୍ୟାୟ, ସମତା କି ଗଣତନ୍ତ୍ର ଲାଗୁ ହେଉ ନ ଥିଲା ଏବଂ ସେଠି ଅନେକ ସାହିତ୍ୟିକ, କଳାକାର ଓ ଶିକ୍ଷୀମାନେ 'ଦାସ'ଙ୍କୁ ମଣିଷ ବୋଲି ମନେ କରୁ ନ ଥିଲେ, ସେ କଥା ଆଜି ଏଠି ବି ସମ୍ଭବ । ଆଜି ବି ଆମେରିକା ଓ ୟୁରୋପରେ କଳା ଲୋକଂକୁ, ତୃତୀୟ ବିଶ୍ୱର ଲୋକଂକୁ ଗୋରାଙ୍କ ସମକକ୍ଷ ମନେ କରାଯାଉନାହିଁ । ଆମେରିକାରେ କାଟ୍ରିଆନା (ସାମୁଦ୍ରିକ ଝଡ) ବେଳେ ବିପନ୍ନ କଳା ଲୋକଂକ ପ୍ରତି ଆମେରିକା ପ୍ରଶାସନ ଓ ବୁଶ୍ ଦେଖେଇ ଥିବା ଉଦାସୀନତାର ରାସ୍ତାକୁ ମୋଡେଲ ମନେ କରି ଆମେ ଭାରତରେ ଆଦିବାସୀ, ଦଳିତ, ଶ୍ରମିକଙ୍କୁ ନେଇ ଏକ ଦାସ ଶ୍ରେଣୀ ସୃଷ୍ଟି କରିପାରିବା । ତାଙ୍କ ପାଇଁ ନ୍ୟାୟ, ସମତା, ଗଣତନ୍ତ୍ର କାର୍ଯ୍ୟକାରୀ ହେବ ନାହିଁ । ନିଜ ନିଜ ସମୟର ପ୍ରଚଳିତ ବ୍ୟବସ୍ଥାକୁ ମାନି କଳା,ସାହିତ୍ୟ ଓ ଅଭିନୟରେ ଥିବା ଜଣେ ମଣିଷ ପୁରସ୍କୃତ ଓ ସମ୍ମାନିତ ହେଇପାରେ । ରାଜାର ପାଖ ଲୋକ ହେଇପାରେ ଓ ପୁରସ୍କାରଗୁଡ଼ିକ ସହ କର୍ପୋରେଟ ଅର୍ଥ ଯୋଡ଼ି ହେଉଥିବାରୁ ବେପାରୀର ଗୁଣ ଗାନ କରିପାରେ । 'ପୁରସ୍କାର ଦେବା ନେବାର ରାଜନୀତି' ଲେଖାରେ, ରାଜେନ୍ଦ୍ର ଯାଦବ ଏ ସମ୍ବନ୍ଧରେ ସବିସ୍ତାରରେ ଲେଖିଛନ୍ତି । ସମାଜର ଗୋଟିଏ ବର୍ଗକୁ ମଣିଷ ଓ ଅନ୍ୟ ବର୍ଗକୁ ଦ୍ୱିତୀୟ ଦର୍ଜାର ମଣିଷ ବା ପଶୁ ମନେ କରି ଜଣେ ଲେଖା ଲେଖିପାରେ, ଚିତ୍ର ଆଙ୍କିପାରେ, ନାଟକ ଓ ସିନେମା କରିପାରେ ।

ଏମିତିରେ ତ ହିଟଲରଙ୍କୁ ବି ପୃଥିବୀର ଅନେକ ନାମଜାଦା ଲେଖକ, ଔପନ୍ୟାସିକ, ବୈଜ୍ଞାନିକ ସମର୍ଥନ କରୁଥିଲେ । ଲାଦେନ, ବୁଶ୍ ଓ ମୋଦି ଭଳି ବ୍ୟକ୍ତିଙ୍କୁ ପ୍ରଶଂସା କରୁଥିବା ସ୍ରଷ୍ଟାଂକ ସଂଖ୍ୟାବି କିଛି କମ୍ ନୁହେଁ । ଏଭଳିଆ କଳାକାର, ସାହିତ୍ୟକାର, ଶିଳ୍ପୀଟିଏ ବା ନାଗରିକଟିଏ ବ୍ୟକ୍ତି ସ୍ୱାଧୀନତାକୁ, ଲେଖକୀୟ ବା କଳାକାରର ସ୍ୱାଧୀନତାକୁ କେମିତି ବ୍ୟବହାର କରିବ ଭାବନ୍ତୁ । ତାହା ନିଶ୍ଚୟ ଆଉ ଗୋଟିଏ ବର୍ଗ, ଧର୍ମ, ଜାତି, ଲିଙ୍ଗ, ଅଂଚଳ ଓ ଭାଷାର ମଣିଷ ବିରୋଧରେ ବ୍ୟବହୃତ ହେବ କିମ୍ବା ଗୋଟିଏ ନିର୍ଦ୍ଦିଷ୍ଟ ବର୍ଗକୁ ସନ୍ତୁଷ୍ଟ ଓ ପ୍ରଶଂସା କରିବା ପାଇଁ ବ୍ୟବହୃତ ହେବ । ଏଇ ଯେମିତି ଆମ ଆଲବମ୍ ଗୀତର ରଚନାକାର ଓ ଦୂରଦର୍ଶନ ତଥା ସିନେମାର ହାସ୍ୟ ଅଭିନେତାମାନେ କଳାକାରର ସ୍ୱାଧୀନତାକୁ ଗରିବ, ପଛୁଆ, ତଳଜାତି ଓ ନାରୀ ପ୍ରତି ଆକ୍ଷେପ କରିବାରେ ବ୍ୟବହାର କରୁଛନ୍ତି । ସାଂସଦ ହେଇଥିବା ନବଜ୍ୟୋତ ସିଦ୍ଧୁ, ଅଭିନେତ୍ରୀ ବିପାଶା, 'ଷ୍ଟାର ୱାନ'ଚ୍ୟାନେଲର ସେଇ ହାସ୍ୟ ଅଭିନେତାଙ୍କୁ ପ୍ରୋତ୍ସାହିତ କରୁଛନ୍ତି । ଓଡିଶାରେ ବ୍ୟଙ୍ଗ କବିତା ନାରୀ ବିରୋଧୀ ଆକ୍ଷେପର ସମବାଚକ ହେଇ ରହିଛି । ଆମ ଦେଶରେ ଗୁଜରାଟ

ଦଙ୍ଗାକୁ ସମର୍ଥନ କରୁଥିବା ଜ୍ଞାନପୀଠ ବିଜେତା କବି ଅଛନ୍ତି । ସିମି ଭଳି ଫାସିବାଦୀ ସଂଗଠନକୁ କ୍ଲିନ ଚିଟ୍ ଦେଉଥିବା, ମୁଲାୟମ ସିଂ ପରି ନେତା ଅଛନ୍ତି। ଇମ୍ରାନା ପ୍ରତି ହୋଇଥିବା ଅତ୍ୟାଚାରକୁ ଯଥାର୍ଥ କହୁଥିବା ମୌଲା, ଅମିନ ଓ ମୁଲାୟମ ସିଂ ମାନଙ୍କର ଦେଶ ହେଲା ଭାରତ । ଶାହାବାନୁମାନଙ୍କ ପ୍ରତି ବା ସାମଗ୍ରିକ ଭାବେ ମୁସଲିମ ମହିଳାଙ୍କ ପ୍ରତି ହେଉଥିବା ଅନ୍ୟାୟକୁ କାନୁନୀ ପୋଷାକ ପିନ୍ଧଉଥିବା ସଂସଦର ଦେଶ ଭାରତ । ନିଜ ଭଉଣୀ ସତୀ ହୋଇ ନିଆଁ ରେ ଜଳିଲା ବୋଲି ଗର୍ବ କରୁଥିବା ରୂପ କନ୍ୱରର ଭାଇମାନଙ୍କର ଦେଶ ଭାରତ । କନ୍ୟା ଭ୍ରୁଣକୁ ହତ୍ୟା କରୁଥିବା ବାପ-ମାଆଙ୍କର ଦେଶ ଭାରତ । ବମ୍ବେ ବ୍ଲାଷ୍ଟ (୨୦୦୬) ପରେ ଗୁଜରାଟ ଦଙ୍ଗାର ପୁନରାବୃତ୍ତିର ଧମକ ଦେଉଥିବା ଅଶୋକ ସିଂହଲ ପରି ମଣିଷ ଆମ ଦେଶରେ ଅଛନ୍ତି । ସ୍ଥାୟୀ ଘରପଟ୍ଟା ଓ ଶୁଦ୍ଧ ପାନୀୟ ଜଳ ପାଉ ନ ଥିବା ବସ୍ତି ବାସିନ୍ଦାଙ୍କୁ ହନୁମାନ ଜୟନ୍ତୀ ନାଁରେ ନିଜେ ଖଣ୍ଡା ଧରି ଧାର୍ମିକ ଭିତ୍ତିରେ ହିଂସା ଶିଖଉଥିବା ମନ୍ତ୍ରୀ ବି ଅଛନ୍ତି ଆମ ଓଡ଼ିଶାରେ । ଏ ପ୍ରକ୍ରିୟାରେ କିଛି ଅଧ୍ୟାପକ ଓ ସାଂବାଦିକ ମଧ୍ୟ ଜଡ଼ିତ ହେବାକୁ ଲଜ୍ଜାବୋଧ କରିନାହାଁନ୍ତି । ତୁଚ୍ଛା ଲୋକପ୍ରିୟତା, ଚାଂଚଲ୍ୟ ସୃଷ୍ଟି, ମୂଲ୍ୟହୀନ ବିବାଦ ମାଧ୍ୟମରେ ପରିଚିତି ନିର୍ମାଣର ଦୁରାଗ୍ରହ ଓ ଉପର ବର୍ଣ୍ଣିତ ପୂର୍ବାଗ୍ରହରୁ ମୁକ୍ତ ହେବା ସହ ବ୍ୟବସ୍ଥା ସଚେତନ ହୋଇ ଏକ ନ୍ୟାୟ ଓ ସମତାର ସମାଜ / ପୃଥିବୀ ନିର୍ମାଣର ସ୍ୱପ୍ନକୁ ସତ କରିବା ପରିପ୍ରେକ୍ଷୀରେ ନିଜର କଳା, ସାହିତ୍ୟ, ଶିଳ୍ପ, ଅଭିନୟକୁ ବ୍ୟବହାରର ଉଦ୍ଦେଶ୍ୟ ବିନା କଳା ଓ ସାହିତ୍ୟ ସହ ଜଡ଼ିତ ଏକ ବ୍ୟକ୍ତିର ସ୍ୱାଧୀନତା ସାମଗ୍ରିକ ଭାବେ ମଣିଷ ଲାଗି ବିଶେଷ କିଛି ଅର୍ଥ ରଖେନା । ଏପରିକି ତାକୁ ନିର୍ଦ୍ଦିଷ୍ଟ ରାଜନୈତିକ ମତାଦର୍ଶ ଓ ବିକାଶ ସଂପର୍କରେ ଆତ୍ମପୋଷିତ ରଢ଼ିବାଦୀ ସଂସ୍କାରରୁ ମୁକ୍ତ ହେବାକୁ ପଡ଼ିବ । ଏ କଥା ବିଜ୍ଞାନ ସହ ଜଡ଼ିତ ଗବେଷକ ପାଇଁ ମଧ୍ୟ ପ୍ରଯୁଜ୍ୟ । ତାକୁ ଠିକ୍ କରିବାକୁ ପଡିବ ଯେ ସେ ମେଲେରିଆ ପାଇଁ ଶସ୍ତା ଓ ସଠିକ ଔଷଧର ଉଦ୍ଭାବନରେ ଲାଗିବ ନା ମିଶାଇଲ୍ ଓ ବମ୍ ତିଆରିରେ ମାତିବ ।

ଏ ଭଳି ସଂକଟରୁ ମୁକୁଳିବାର ବାଟ କଣ ? ହରିଣକୁ ରକ୍ଷା କରିବା ପାଇଁ ଈଶ୍ୱର ଥିଲେ । ଝଡ଼ବର୍ଷା ଡାକିଦେଲେ । ହେଲେ ମଣିଷ ପାଇଁ ସତରେ କ'ଣ ଈଶ୍ୱର ଅଛନ୍ତି ନା ମଣିଷ ନିଜ ବାଟ ନିଜେ ତିଆରିବ । ଏ ପ୍ରଶ୍ନ କୌଣସି ଆଧ୍ୟାତ୍ମିକ ପ୍ରଶ୍ନ ନୁହେଁ । ଯଜ୍ଞ / ପ୍ରବଚନ / ଏପରିକି ରାମଦେବ ବାବାଂକ 'ଯୋଗ'ରେ ଏ ସବୁର ସମାଧାନ ନାହିଁ । ଆଜିର ଜାତିରାଷ୍ଟ୍ର ବ୍ୟବସ୍ଥା (Nation State System) ରେ ସବୁ ପ୍ରଶ୍ନ ରାଜନୈତିକ । ଆମେ ସାମ୍ନା କରୁଥିବା ପ୍ରତିଟି ସମସ୍ୟା ମୂଳରେ ରହିଛି ଏକ ନିର୍ଦ୍ଦିଷ୍ଟ ରାଜନୈତିକ ଅର୍ଥନୀତି । ସେ ସଂବଂଧରେ ଅନେକ ଥର ଆଲୋଚନା ହୋଇ ସାରିଛି । ଏ କଥା ବି ଆଲୋଚନା ହୋଇଛି ଯେ ମୁଖ୍ୟଧାରାର ରାଜନୈତିକ ଦଳ କଂଗ୍ରେସ, ବି.ଜେ.ପି. ଅବା କ୍ଷେତ୍ରିୟ ଦଳଗୁଡ଼ିକର ବିଚାର ଓ ରାଜନୀତି ହେଲା ସାଧାରଣ ଜନତାର ବିରୋଧୀ ।

ସେମାନଂକୁ କେବଳ ଭୋଟ ରାଜନୀତିରେ ହରେଇବା ଜିତେଇବାରେ ସମସ୍ୟାର ସମାଧାନ ନାହିଁ । ସେମାନଙ୍କର ସାମାଜିକ ଭିତ୍ତିକୁ ମଧ୍ୟ ନଷ୍ଟ କରିବାକୁ ହେବ । ଆମେ ଏ କଥା ବି ଅନୁଭବ କରୁଛୁ ଯେ ସଂସଦୀୟ ବାମପନ୍ଥୀ ଓ ଅବ୍ୟବସ୍ଥିତ 'ନାଗରିକସମାଜ'ର ହସ୍ତକ୍ଷେପରେ ମିଳୁଥିବା ସାମୟିକ ରିହାତି, କିଛି ଦୟାଭିତ୍ତିକ ଯୋଜନା ଓ  ପଦକ୍ଷେପ, ଜୀବନ ଜୀବିକାର ପ୍ରଶ୍ନ କିମ୍ବା ଗଣତାନ୍ତ୍ରିକ ସ୍ୱାଧୀନତା ଓ ମାନବିକ ଅଧିକାରକୁ ନେଇ ଉପୁଜୁଥିବା ଦ୍ୱନ୍ଦ୍ୱର  ସମାଧାନ ଲାଗି ଯଥେଷ୍ଟ  ହେଉନାହିଁ । ସେତିକି ଶକ୍ତିକୁ ପୁଂଜିକରି ଆମେ ସାଧାରଣ ଲୋକର ମତ ପ୍ରକାଶର ଅଧିକାର କୁ ରକ୍ଷା କରି ପାରୁନାହୁଁ । ଅର୍ଥ ଓ ବାହୁ ବଳରେ ପରିଚାଳିତ ଗଣତନ୍ତ୍ରର ଚରିତ୍ରକୁ ବଦଳାଇ ପାରୁନୁ । ଉପର ମୁହାଁ ଅମଲାତନ୍ତ୍ରକୁ ଲୋକଂକ ପ୍ରତି ସଂବେଦନଶୀଳ କରେଇପାରୁ ନାହୁଁ । ଅମାନବୀୟ କର୍ପୋରେଟର ଶୋଷଣକୁ ବନ୍ଦ କରି ପାରୁନୁ । ନିରପେକ୍ଷ ବୈଦେଶିକ ନୀତିକୁ ଆପଣେଇ ପାରୁନୁ ।  ଏ କଥା ବି ଆଲୋଚନା ହେଇଛି ଯେ ଶସ୍ତା ଚାଉଳ, ଗହମ, କିରୋସିନି ଯୋଗେଇ କିମ୍ବା କେବଳ ଜାତି ଓ ଧର୍ମ ଭିତ୍ତିରେ ସଂରକ୍ଷଣ ଦେଇ (ସଂସାଧନ ଓ ସଂପଦ ଉପରେ ମାଲିକାନା ଓ ନିୟନ୍ତ୍ରଣର ଅଧିକାର ନ ଦେଇ, ସମାନ ଶିକ୍ଷା, ସ୍ୱାସ୍ଥ୍ୟ ଓ ପୃଷ୍ଠଭୂମିର ବ୍ୟବସ୍ଥା ନ କରି) ଏଭଳି ସଂକଟର ମୋଚନ ସଂଭବ ନୁହେଁ ।

ଅନ୍ୟ ଦିଗରେ ନ୍ୟାୟୋଚିତ ଗଣତାନ୍ତ୍ରିକ ଆନ୍ଦୋଳନକୁ, ଜୀବନ ଜୀବିକା ଓ ପରିବେଶକୁ ନେଇ ଆନ୍ଦୋଳନରତ ପରିବର୍ତ୍ତନକାମୀ ଶକ୍ତିର ପ୍ରଦର୍ଶନକୁ ସରକାର ଆଇନ ଶୃଙ୍ଖଳା ପ୍ରଶ୍ନ ଭାବେ ଦେଖୁଛି ଓ ସେମାନଙ୍କୁ ବିକାଶ ବିରୋଧୀ, ଦେଶ ବିରୋଧୀ, ଲୋକ ବିରୋଧୀ, ଆତଙ୍କବାଦୀ, ଅସାମାଜିକ ତତ୍ତ୍ୱ ଓ ନକ୍‌ସଲ କହି ଦମନ କରୁଛି । ନକ୍‌ସଲ ବାଦକୁ ଏକ ରାଜନୈତିକ ଆନ୍ଦୋଳନ ମନେ କରିବା ବଦଳରେ ଆତଙ୍କବାଦୀ, ସନ୍ତ୍ରାସବାଦୀ, ଗତିବିଧି ଭାବରେ ନାମିତ କରି ସେମାନଂକ ଦ୍ୱାରା ନିର୍ମିତ ଜନସଂଗଠନ ଗୁଡିକୁ ନିଷିଦ୍ଧ ଘୋଷଣା କରୁଛି । କୋଉଠି ଆଦିବାସୀଙ୍କୁ ସରକାରୀ ଅସ୍ତ୍ରଶସ୍ତ୍ର ଧରେଇ ଶାନ୍ତି ପ୍ରତିଷ୍ଠା ନାଁରେ ଗଣହତ୍ୟାର ଭୟଙ୍କର ନାଟକ ଖେଳୁଛି (ଛତିଶଗଡରେ ସଲ୍‌ୱା ଜୁଡୁମ୍) ତ କୋଉଠି ବଡ ଜମି ମାଲିକଂକ ପ୍ରତିନିଧିତ୍ୱ କରୁଥିବା ରଣବୀର ସେନାର ବନ୍ଧୁକରେ ପ୍ରଶାସନ ସରକାରୀ ବୁଲେଟ ଭରୁଛି । ସରକାରୀ ଅର୍ଥକୁ ଶିକ୍ଷା, ସ୍ୱାସ୍ଥ୍ୟ / ଜଳସେଚନ / ଭଳି ଜନମଙ୍ଗଳ କାମରେ ନ ଲଗେଇ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର, ମାରଣାସ୍ତ୍ର କିଣିବାରେ ଖର୍ଚ୍ଚ କରୁଛି । ଦେଶକୁ ଗୃହଯୁଦ୍ଧ ଆଡକୁ ଟାଣି ନେଉଛି । ଦାରିଦ୍ର୍ୟ, ବେକାରୀ, ଜଳାଭାବ, ଖାଦ୍ୟଶସ୍ୟ ଉତ୍ପାଦନରେ ହ୍ରାସଜନିତ ସମସ୍ୟାର ସମାଧାନ ଖୋଜିବା ବଦଳରେ ସେ ସବୁର ସମାଧାନ ପାଇଁ ସଂଘର୍ଷ କରୁଥିବା ଲୋକଂକୁ ଦମନ କରିବାରେ ରାଷ୍ଟ୍ରତନ୍ତ୍ରର ସମସ୍ତ ଶକ୍ତିକୁ ବିନିଯୋଗ କରାଯାଉଛି ।

ଏ ପରିପ୍ରେକ୍ଷୀରେ ମୁଖ୍ୟଧାରାର ବାହାରେ ଥିବା ବାମପନ୍ଥୀ, ସମାଜବାଦୀ, ଜନଆନ୍ଦୋଳନକାରୀ ଦଳ ଓ ସଂଗଠନ ଗୁଡ଼ିକ ମଧ୍ୟରେ ସଂପର୍କ, ସଂବାଦ ଓ ସମନ୍ୱୟର ଆବଶ୍ୟକତା କଥା ବାରମ୍ବାର ଆଲୋଚନାକୁ ଆସୁଛି । ଏକ ସମନ୍ୱିତ ଶକ୍ତିର ନିର୍ମାଣ କଥା ଆଲୋଚିତ ହୋଇ ଆସୁଛି, ହେଲେ ସେ ଦିଗରେ ଆମେ କାହିଁକି ଆଗେଇପାରୁନୁ ସେ ଏକ ଗମ୍ଭୀର ପ୍ରଶ୍ନ । ଅସଲ ପ୍ରଶ୍ନ ହେଲା - ପରିବର୍ତ୍ତନକାମୀ ରାଜନୈତିକ ଦଳ, ଆନ୍ଦୋଳନରତ ଜନସଂଗଠନ ଗୁଡ଼ିକ ଭିତରେ ଉଭୟ ବିଚାର ଓ କାର୍ଯ୍ୟକ୍ରମଗତ ତଥା ଆଲୋଚନାତ୍ମକ (ଗଣତାନ୍ତ୍ରିକ) ସଂବାଦ ସହ ସ୍ଥାୟୀ ସମନ୍ୱୟ ସମ୍ଭବ କି ? ରାଷ୍ଟ୍ରତନ୍ତ୍ର ଓ କର୍ପୋରେଟ୍ ଶକ୍ତିର ସଂପ୍ରସାରଣଶୀଳ ତଥା ଆକ୍ରାମକ ଗତିବିଧିରୁ ଉତ୍ପାଦକ ଶ୍ରେଣୀର ଜୀବନ ଜୀବିକା ଓ ସାମଗ୍ରିକ ଭାବେ ସାଧାରଣ ଜନତାର ଗଣତାନ୍ତ୍ରିକ ଅଧିକାର, ସ୍ୱାଧୀନତା ତଥା ଜାତୀୟ ବ୍ୟବସ୍ଥାରେ ବଂଚିରହିଥିବା ( ? ) ଗଣତାନ୍ତ୍ରିକ ପରିସର ଏବଂ ଦେଶର ସାର୍ବଭୌମତ୍ୱ ପ୍ରତି ମାଡ଼ିଆସୁଥିବା ବିପଦର ଗମ୍ଭୀରତାକୁ ହୃଦୟର ସହିତ ଅନୁଭବ କରାଯିବା ଉଚିତ । ତା ସାମ୍ନାରେ ଏକକ ଭାବେ ଗୋଟିଏ ଦଳ, ଗୋଷ୍ଠୀ, ସଂଗଠନ ଓ ବ୍ୟକ୍ତିବିଶେଷ ଭୀଷଣ ଭାବେ ଅସହାୟ ଓ ଦୁର୍ବଳ, ଏହି ସତ୍ୟକୁ ଅହଙ୍କାରମୁକ୍ତ ଓ ଆବିଳହୀନ ଭାବେ ସଭିଏଁ ଉପଲବ୍ଧି କଲେ ଅସଲ ସମ୍ବାଦ ଓ ସମନ୍ୱୟ ସମ୍ଭବ ହେବ । ତା ସହ ଆଉ ଏକ ଆତ୍ମସ୍ୱୀକାରୋକ୍ତିର ଆଜି ଆବଶ୍ୟକତା ପଡ଼ୁଛି । ସେ ହେଲା - କୌଣସି ଦଳ / ଗୋଷ୍ଠୀ / ବ୍ୟକ୍ତିବିଶେଷ ପାଖରେ ଆଜିର କର୍ପୋରେଟ ରାଷ୍ଟ୍ରତନ୍ତ୍ର ଓ ସାମ୍ରାଜ୍ୟବାଦୀ ଶକ୍ତିକୁ ପରାଜିତ କରିବାର, ଏପରିକି ଏକ ବଡ଼ ଆଘାତ ପହଂଚେଇ ପାରିବାର ପ୍ରାମାଣିକ ବିଚାର କି ରଣନୀତି ନାହିଁ । ଆମକୁ ମିଳି ମିଶି ସେ ସୂତ୍ର ଖୋଜିବାକୁ ହେବ । ସେ ପ୍ରକାର ଏକ ବିଚାର ନିର୍ମାଣ କରିବା ଓ ରଣନୀତି ପ୍ରସ୍ତୁତ କରିବାର କାମଟି ଏକା ନୁହେଁ କେବଳ ମିଳିତ ଭାବେ ହିଁ ସମ୍ଭବ ।

ଏମିତି ନୁହେଁ ଯେ ଭାରତରେ କି ଓଡ଼ିଶାରେ ପରିବର୍ତ୍ତନକାମୀ ଶକ୍ତି ଓ ତତ୍ତ୍ୱଗୁଡ଼ିକ ଭିତରେ ଏ ଚେଷ୍ଟା ହେଉ ନାହିଁ । ହେଉଛି ମାତ୍ର ତାହା ଗୋଟିଏ ଦିଟା ମିଳିତ କାର୍ଯ୍ୟକ୍ରମ ପର୍ଯ୍ୟନ୍ତ । ସେ କଥା ବି କିଛି ଅଭାବନୀୟ ଘଟଣା ପରିପ୍ରେକ୍ଷୀରେ ଘଟିଛି, ଯେମିତି କାଶୀପୁରରେ ଗୁଳିକାଣ୍ଡ କି କଳିଙ୍ଗନଗରରେ ଗଣହତ୍ୟା । ଏମିତି କାହିଁକି ହେଉଛି ? ତା'ର ଅନେକ କାରଣ ଅଛି, ମାତ୍ର ଶତ୍ରୁ ଓ ବିପଦକୁ ସାମ୍ନା କରିବା ପରିପ୍ରେକ୍ଷୀରେ ସମନ୍ୱୟର ବ୍ୟାକୁଳତା ଅପେକ୍ଷା ନିଜ ନିଜର ଅସ୍ମିତାକୁ ଜାବୁଡ଼ି ଧରିବାର ଗୁଗ୍‌ଣ ମାନସିକତା ଏକ ବଡ଼ କାରଣ ନିଶ୍ଚୟ । ପରିବର୍ତ୍ତନକାମୀ ଶକ୍ତି ଓ ତତ୍ତ୍ୱଗୁଡ଼ିକ ଭିତରେ ବୈଚାରିକ ଲଢ଼େଇ କମ, ନିଜ ନିଜ ଅସ୍ମିତା, ଝଣ୍ଡା, ବ୍ୟାନର ଓ ଅହଂକାରକୁ ସାବ୍ୟସ୍ତ କରିବାର ପ୍ରବଣତାକୁ ନେଇ ବିବାଦ ବେଶ । ଶତ୍ରୁର ଦୋଷ ଦୁର୍ବଳତା ଖୋଜି ତା ସହ ଲଢ଼ିବାର ରଣନୀତି ତିଆରି ଅପେକ୍ଷା ପ୍ରତି ଦଳ ଓ ଗୋଷ୍ଠୀ ଅନ୍ୟମାନଂକ ତୁଳନାରେ ନିଜକୁ ବେଶି ଆଦର୍ଶବାଦୀ ଓ

ପ୍ରଗତିଶୀଳ ବୋଲି ପ୍ରମାଣିତ କରିବାର ପ୍ରତିଦ୍ୱନ୍ଦ୍ୱିତାରେ ପରସ୍ପରର ଗୋଡ଼ କାଟିବାରେ ଶକ୍ତି ଓ ସମୟ ଖର୍ଚ୍ଚ କରିବାର ଦୁର୍ଭାଗ୍ୟଜନକ ଉଦାହରଣ ଦେଖିବାକୁ ମିଳୁଛି । ପରସ୍ପର ଭିତରେ ଅସଲ ଅର୍ଥରେ ସମ୍ବାଦ, ସଂପର୍କ ଓ ସମନ୍ୱୟ ପାଇଁ କେବଳ ନେତୃତ୍ୱ ସ୍ତରରେ ନୁହେଁ କର୍ମୀ ସ୍ତରରେ ମଧ୍ୟ ଆଲୋଚନାତ୍ମକ ବିବେକ, ବିଶ୍ଳେଷଣାତ୍ମକ ସଚେତନତା ଓ ଗଣତାନ୍ତ୍ରିକ ସଂସ୍କୃତିର ଅବଶ୍ୟକତା କେହି ଅନୁଭବ କରୁଛନ୍ତି ବୋଲି ମନେ ହେଉ ନାହିଁ । ସେ ଦିଗରେ ଦଳ ବା ସଂଗଠନ ଗୁଡ଼ିକରେ ଯେମିତି ପ୍ରୟାସ ହେବା କଥା ସେମିତି ହେଉନାହିଁ । ଆମେ ବହୁ ସମୟରେ ସାଧାରଣ ଜନତାର ରାଜନୀତିକରଣ କଥା କହୁଛୁ । ଦେଖିଲା ବେଳକୁ ବିପ୍ଳବୀ ଦଳ ଓ ଜନ ଆନ୍ଦୋଳନରେ ଥିବା କର୍ମୀମାନଂକର ରାଜନୀତିକରଣ ମଧ୍ୟ ଏ ଯାଏଁ ସମ୍ଭବ ହେଇନାହିଁ । ସାଧାରଣ ସ୍ୱାର୍ଥର ଭାତରେ ଧୂଳି ଛାଟୁଥିବା ରାଜନୈତିକ ଦଳ ମାନଂକୁ ଅସ୍ୱୀକାର କରିବାର ପ୍ରବୃତ୍ତି ଏ ଯାଏଁ ପ୍ରବଳ ହେଇ ନାହିଁ । କୃଷକ / ଶ୍ରମିକ / ଦଳିତ / ଆଦିବାସୀମାନଂକ ଭିତରେ ଶୋଷଣକାରୀ ଦଳମାନଂକ ପ୍ରତି ଥିବା ଅକାରଣ ଆନୁଗତ୍ୟ ଓ ଆବିଳତାର ପୂର୍ଣ୍ଣଚ୍ଛେଦ ପଡୁନାହିଁ କି ସାମୂହିକ ସ୍ୱାର୍ଥ ପାଇଁ କାମ କରିବାକୁ ଏମାନେ ସେ ଦଳଗୁଡ଼ିକୁ ବାଧ୍ୟ କରିପାରୁନାହାଁନ୍ତି । ସଠିକ ଅର୍ଥରେ 'ଗଣ ରାଜନୀତିକରଣ' କାହିଁକି ଏ ଯାଏଁ ସମ୍ଭବ ହେଉନାହିଁ ତାର ବି ଉତ୍ତର ଖୋଜିବାକୁ ପଡ଼ିବ ।

କିଛି ଦଳ ଓ ଗୋଷ୍ଠୀ ହିଂସାର ବଦ୍ଧ ସଂସ୍କାରକୁ ଜାବୁଡ଼ି ଧରିଥିବା ବେଳେ ଆଉ ଦଳେ ସଂଘର୍ଷର ଆରମ୍ଭରୁ ଅହିଂସାର ବଦ୍ଧ ସଂସ୍କାରକୁ । ଗଣ ସଂଗଠନ, ଗଣଭିତ୍ତି ଓ ଗଣ ଅଂଶଗ୍ରହଣ ସହ ନିୟନ୍ତ୍ରିତ ହିଂସା କିମ୍ବା ସରକାରୀ ଓ କର୍ପୋରେଟ ହିଂସାକୁ ସାମ୍ନା କରିପାରିବାର, ସହି ସମ୍ଭାଳି ପାରିବାର 'ଗଣ ଅହିଂସା'। 'ହିଂସାର ବଦ୍ଧ ସଂସ୍କାର', ଗଣଭିତ୍ତି ଓ ଗଣ ଅଂଶଗ୍ରହଣର ରାସ୍ତାରେ ବାଧକ ନ ହେଉ। ଠିକ୍ ସେମିତି ଅହିଂସାର ବଦ୍ଧସଂସ୍କାର ଆମକୁ ପଳାୟନପନ୍ଥୀ ନ କରୁ । ଏ ନେଇ ଦଳ ଓ ସଂଗଠନଗୁଡ଼ିକ ଭିତରେ ଖୋଲାଖୋଲି ଆଲୋଚନା ହେଉ, ଯେଉଁଥିରେ ଉପର ଧାଡ଼ିର ନେତୃତ୍ୱ ସହ ସକ୍ରୀୟ କର୍ମୀମାନଂକୁ ସାମିଲ କରାଯାଉ ।



# ସଂକୀର୍ଣ୍ଣ ରାଷ୍ଟ୍ରବାଦ ଓ ଉଦାସୀନ ନାଗରିକ ସମାଜ

ଅଫଜଲ୍ ପ୍ରସଙ୍ଗର ମୋଟେ ବିଚାର ନ ହେଉ ବୋଲି ଚାହୁଁଥିବା ରାଜନୈତିକ ଦଳ, ସଙ୍ଗଠନ ଓ ବ୍ୟକ୍ତିବିଶେଷଙ୍କ ଭାବନା ପଛରେ ରହିଛି ଏକ ସଂକୁଚିତ ରାଷ୍ଟ୍ରବାଦ। ଆମ ରାଷ୍ଟ୍ରବାଦ କେତେବେଳେ ସଂକୀର୍ଣ୍ଣ ବ୍ରାହ୍ମଣବାଦୀର ଭାଷା କୁହେ ତ କେତେବେଳେ ନ୍ୟାୟ, ସମତା ଓ ମାନବତା ପରି ସିଦ୍ଧାନ୍ତର ପରିପନ୍ଥୀ ପରି ମଧ୍ୟ ମନେ ହୁଏ। ସେମିତିରେ ବି ବିଶ୍ୱ ଇତିହାସରେ ଆମେ ଅନ୍ଧ ଦେଶପ୍ରେମର ଅନେକ ଅମାନବୀୟ ସ୍ୱରୂପ ଦେଖିସାରିଛୁ। ସେ ଅନୁଭବର ତିକ୍ତତା ଏକଦା ଚାର୍ଲି ଚାପ୍‌ଲିନ୍‌ଙ୍କ ମୁହଁରେ କୁହାଇଥିଲା, "ଜାତୀୟତା ନାଁରେ ମରିବାଭଳି ମୂର୍ଖାମି ମୁଁ କେବେ କରିବାକୁ ଚାହିଁବି ନାହିଁ।" ଇ.ଏମ୍. ଫୋଷ୍ଟର୍ ପରି ଲୋକ ଦେଇଥିବା ମନ୍ତବ୍ୟର ସାରକଥା ଥିଲା, "ମୁଁ ବନ୍ଧୁତାକୁ ଦେଶପ୍ରେମ ଅପେକ୍ଷା ବେଶୀ ଗୁରୁତ୍ୱ ଦିଏ। ମୁଁ ବନ୍ଧୁତା ପାଇଁ ଦେଶ ସହ ଦ୍ରୋହ ମଧ୍ୟ କରିପାରେ।"

ଦେଶର ସୀମାରେ, ସୀମା ବାହାରେ ଥିବା ଶତ୍ରୁ ସହ ଯୁଦ୍ଧ, ନ୍ୟାୟ, ସମତା ଓ ସ୍ୱାଧୀନତା ପାଇଁ ସୀମା ଭିତରେ ଥିବା 'ଜନତାର ଶତ୍ରୁ' ବିରୋଧରେ ଲଢ଼େଇ ପରିପ୍ରେକ୍ଷୀରେ ଦେଶପ୍ରେମ ଓ ତଦ୍‌ଜନିତ ଆବେଦନର ସ୍ୱରୂପ ଖୁବ୍ ଅଲଗା। ଦେଶ ଦଶଙ୍କୁ ନେଇ ନୁହଁ କି ? ଅଥଚ ଜାତି, ଧର୍ମ, ବର୍ଗ, ଅଞ୍ଚଳ, ଭାଷା ଓ ବିଚାର ନିର୍ବିଶେଷରେ 'ମଣିଷ ପ୍ରେମ' 'ଦେଶ ପ୍ରେମ'ର ସମାନ୍ତରାଳ ହେଇପାରୁନି କାହିଁକି ? ଅତୀତରେ 'ଜର୍ମାନ ଜାତି' ଓ 'ଜର୍ମାନ ପ୍ରେମ' ଲକ୍ଷାଧିକ ଜିଉଙ୍କ ହତ୍ୟାର କାରଣ ହୋଇଛି। ଚୀନରେ ସାମ୍ୟବାଦୀ ଦଳର ସରକାର ତିବ୍ବତରେ ଅମାନବୀୟ ଅତ୍ୟାଚାର ପାଇଁ ପଛେଇ ନାହିଁ। ରୁଷରେ ସାମ୍ୟବାଦୀ ସରକାର ବିଚାର ନାଁରେ ଭିନ୍ନମତ ରଖୁଥିବା କବି, ଲେଖକ ଓ ସଂସ୍କୃତିକର୍ମୀଙ୍କୁ ଦେଶାନ୍ତର ଓ ମୃତ୍ୟୁଦଣ୍ଡ ଦେଇଛି। ବିଶ୍ୱର ସୁରକ୍ଷା ଓ ଗଣତନ୍ତ୍ରର ମାଳା ଜପୁଥିବା ଆମେରିକା (କଙ୍କଡ଼ାଖିଆ ବଗର ସନ୍ନ୍ୟାସ) ଓ ଇଉରୋପରେ ରଙ୍ଗଭେଦ ଭିତ୍ତିରେ ଅନ୍ୟାୟ ଆଜି ବି ଜାରି ରହିଛି। ଆମେରିକାବାସୀଙ୍କ ତଥାକଥିତ ଗଣତନ୍ତ୍ର ଓ ମାନବପ୍ରେମ ଆମେରିକା ସରକାରଙ୍କୁ ଇରାକଧ୍ୱଂସ କାର୍ଯ୍ୟକ୍ରମରୁ ବିରତ କରିପାରିଲା ନାହିଁ। ନିଜ ଦେଶ ପାଇଁ ଗୋଟିଏ ମାପଦଣ୍ଡ ଓ ଅନ୍ୟ ଦେଶ ପାଇଁ ଗୋଟିଏ।

ଏବେ ଆମ ଦେଶର କଥାକୁ ଆସିବା। ବିକାଶ ନାଁରେ ବିସ୍ଥାପନର ଶିକାର, ଜଙ୍ଗଲ ଜମିରୁ ଆଦିବାସୀ ବିତାଡ଼ନ, କର୍ମଚାରୀ-ଶ୍ରମିକ ଅଧିକାର ହନନ ଓ ବସ୍ତିଭଙ୍ଗା ଅଭିଯାନରେ ସୁପ୍ରିମ କୋର୍ଟର ଅମାନବୀୟ ଭୂମିକା / ଏକତା-ଅଖଣ୍ଡତା ନାଁରେ ଉତ୍ତର-ପୂର୍ବ ରାଜ୍ୟ ଓ କାଶ୍ମୀରବାସୀଙ୍କ ଯାତନାରେ ପୁଲିସ ଓ ମିଲିଟାରୀର ଭୂମିକା / ନୂତନ କୃଷି ନୀତି କାରଣରୁ ଚାଷୀଙ୍କ ଆତ୍ମହତ୍ୟା / ଦଳିତ ଓ ନାରୀପ୍ରତି ଲୋମହର୍ଷଣକାରୀ ଅତ୍ୟାଚାରରେ ଉଚ୍ଚଜାତି, ଶ୍ରେଣୀ ଓ ପ୍ରଶାସନର ସମ୍ପୃକ୍ତି / ଆତଙ୍କବାଦ ଓ ନକ୍ସଲ ଦମନ ନାଁରେ ହଜାର ହଜାର ନିରୀହ ଗ୍ରାମବାସୀଙ୍କୁ ହତ୍ୟା ଓ ଜେଲ ଭଳି ପ୍ରଶ୍ନକୁ ନେଇ ଆମର ଦେଶପ୍ରେମୀମାନଙ୍କର ସମ୍ବେଦନା ଓ ସ୍ପର୍ଶକାତରତା କାହିଁକି ଏତେଟା ଦୁର୍ବଳ। ଏସବୁ କଥାରେ ଆମର ଏ ଭୟଙ୍କର ଉଦାସୀନତା କାହିଁକି ?

କବି ପାଶ୍‌ଙ୍କ ଭାଷାରେ - "ଓ ଗନ୍ଧ୍ ବହତ୍ ଖତରନାକ୍ ହୋତା ହୈ, ଯୋ ହର୍ କତଲେ ଆମ୍ କି ବାଦ୍ ନିକଲତା ହେ, ପର୍ ହମାରି ଆଖୋଁ ମେ କାଟୋଁ କି ତରହ ନହିଁ ଚୁବ୍‌ତା।" ବଂତ ସିଂହ ଦଳିତ। ଉଚ୍ଚ ଜାତିର ଲୋକେ ତାଙ୍କର ହାତଗୋଡ଼ କାଟି ଦେଇଛନ୍ତି। ଦୋଷ ହେଲା, ଧର୍ଷଣ କରିଥିବା ଲୋକଟି ବିରୋଧରେ ସେ ସାକ୍ଷ୍ୟ ପ୍ରଦାନ କରିଥିଲେ। ହରିଆନାର ଗୋହନାରେ ଦଳିତଙ୍କ ବାଲ୍ମିକୀ କଲୋନୀରେ ଗ୍ୟାସ ସିଲିଣ୍ଡରରୁ ନିଆଁ ଲଗେଇ ଦିଆଯାଏ ପୁଲିସର ଉପସ୍ଥିତିରେ। ନାଗପୁରର ଖୈରଲାଞ୍ଜିରେ ଦଳିତ ଜାତିର ମାଁ ଓ ଝିଅଙ୍କୁ ଉଚ୍ଚଜାତି (ଓ.ବି.ସି.) ଲୋକେ ଧର୍ଷଣ କଲାପରେ ସେ ପରିବାରର ସମସ୍ତ ସଦସ୍ୟଙ୍କୁ ହତ୍ୟା କରନ୍ତି। ପ୍ରଶାସନ ନୀରବ ସମର୍ଥନ କରେ। ଗାଁରୁ ଅଧିକାଂଶ ଲୋକ ସକ୍ରିୟ ସମର୍ଥନ ଦିଅନ୍ତି। ଏଇ ଜଘନ୍ୟ ହତ୍ୟାରେ ଜଡ଼ିତ ସେଇ ଉପର ଜାତିର ସମର୍ଥନ ଭୋଟ ରାଜନୀତି ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ହେଇଥିବାରୁ ସବୁ ରାଜନୈତିକ ଦଳ ଏ ପ୍ରସଙ୍ଗରେ ଚୁପ୍ ରହିଲେ। ଓଡ଼ିଶାରେ ସାଇକେଲ ଚଢ଼ି ଯାଉଥିବା ତଳ ଜାତିର ଝିଅଟିକୁ ଗାଁ ରାସ୍ତାରେ ଗଡ଼େଇ ଦିଆଯାଏ। ମହାରାଷ୍ଟ୍ର, ମଧ୍ୟପ୍ରଦେଶ, ବିହାର, ଓଡ଼ିଶା ଓ ଉତ୍ତର ପ୍ରଦେଶରେ ଦଳିତଙ୍କ ଉପରେ ହିଂସା ବୃଦ୍ଧି ପାଉଛି। ତାର ଏକମାତ୍ର କାରଣ ସେମାନେ ନିଜ ଦାବି ସମ୍ବନ୍ଧରେ ସଚେତନ ହେଉଛନ୍ତି ଓ ଦାବି ଜାହିର କରୁଛନ୍ତି। ଏଭଳି ଘଟଣାରେ ଆମର ସମ୍ବେଦନା କୁଆଡ଼େ ଯାଏ ? ଏ ଅତ୍ୟାଚାରୀ ଶ୍ରେଣୀ ଓ ସେ ଅତ୍ୟାଚାର ପଛରେ ଥିବା ବିଚାର ବିରୋଧରେ ଆମ ଭିତରର ଆକ୍ରୋଶ କାହିଁକି ନିର୍ଦ୍ଦିଷ୍ଟ ରୂପ କି ଆକାର ପାଏ ନାହିଁ ? ଶର୍ମିଳା ସାନୁ, ମଣିପୁରର ନାରୀ, ୨ ନଭେମ୍ବର ୨୦୦୦ ରୁ ସେ ଅନଶନରେ। ସେ ପ୍ରତିବାଦ କରୁଛନ୍ତି, ଉତ୍ତର ପୂର୍ବରେ ମିଲିଟାରୀକୁ ୧୯୫୮ରୁ ଦିଆଯାଇଥିବା 'ସ୍ପେଶିଆଲ ଆର୍ମସ୍ ଏକ୍‌ଟ'ର। ସେ ଆଇନ ଅନୁସାରେ ଯେ କୌଣସି ଲୋକଙ୍କୁ କେବଳ ସନ୍ଦେହର ଆଧାରରେ ଜେଲରେ ଭର୍ତ୍ତି କରାଯାଇପାରିବ। ମଣିପୁରରେ ଆର୍ମି, ବି.ଏସ୍.ଏଫ୍.

ଓ ପୁଲିସର ଅତ୍ୟାଚାର ବିରୋଧରେ ସେଠାର ମହିଳାମାନେ ନଗ୍ନ ହୋଇ କରିଥିବା ପ୍ରତିବାଦ କଥା ସାରା ଦେଶରେ ଚର୍ଚ୍ଚିତ । ଶର୍ମିଳା, ଗାନ୍ଧୀବାଦୀ ରାସ୍ତାରେ ଯାଇ ଛଅବର୍ଷ ମଣିପୁରରେ ସତ୍ୟାଗ୍ରହ କଲେ ଏବଂ ୨୦୦୬ ଅକ୍ଟୋବରରୁ ଦିଲ୍ଲୀରେ ଅନଶନ କଲେ । ଅନଶନର ଚତୁର୍ଥ ଦିନ ତାଙ୍କୁ ହାସପାତାଲରେ ପହଞ୍ଚାଇଦେଲା ପୁଲିସ । କାଶ୍ମୀର, ମିଜୋରାମ ଓ ନାଗାଲାଣ୍ଡରେ ପୁଲିସ ଓ ମିଲିଟାରୀ ଅତ୍ୟାଚାର ଜାରି ରହିଛି । କାଶ୍ମୀରରେ ହଜାର ହଜାର ବିବାହିତ ପୁରୁଷ ଆଜି ନିଖୋଜ । ସ୍ୱାମୀହରା ନାରୀମାନଙ୍କ ନାଁ ହେଉଛି ହାଫ୍-ୱିଡ୍ୱୋ ବା ଅଧା ବିଧବା । ସ୍ୱାମୀ ବଞ୍ଚିଛି କି ନାହିଁ ସେମାନେ ଜାଣନ୍ତି ନାହିଁ । ଏବେ କବରରୁ ଦେହାବଶେଷ ଆଣିଲାବେଳେ ତାହା ନଜିର ଅହମ୍ମଦ ଡେକାଙ୍କର ବୋଲି ଜଣାପଡୁଛି । ସେ ନିଖୋଜ ହେବା ବେଳେ ତାଙ୍କ ସ୍ତ୍ରୀ ଗର୍ଭବତୀ ଥିଲେ । ସେ ଗର୍ଭରୁ ଜନ୍ମିତ ଝିଅ ଏବେ ତା ବାପାର ଭସ୍ମାବଶେଷକୁ ଦେଖୁଛି । ଭାରତୀୟ ନିରାପତ୍ତା ବାହିନୀ ପାକିସ୍ତାନ ଉଗ୍ରପନ୍ଥୀ ବୋଲି ସନ୍ଦେହ କରି ଡେକାଙ୍କୁ ନେଇ ଯାଇଥିଲା । ତାପରଠୁ ତାଙ୍କ ପତ୍ତା ନ ଥିଲା । ଇଏ ଗୋଟିଏ କାହାଣୀ ନୁହେଁ, କାଶ୍ମୀର ଉପତ୍ୟକାରୁ ଦଶ ହଜାର ଲୋକ ନିଖୋଜ ହେବା କଥା ସରକାର ନିଜେ କହୁଛନ୍ତି । ପୋଲିସ ଓ ମିଲିଟାରୀ ଅଫିସରମାନେ ପୁରସ୍କାର ଓ ପଦୋନ୍ନତି ପାଇଁ ଅନେକ ସାଧାରଣ ନାଗରିକମାନଙ୍କୁ ହତ୍ୟା କରିଥିବା କଥା ସରକାର ନିଜେ ସ୍ୱୀକାର କରିଛନ୍ତି ।

ଏ ସମ୍ବନ୍ଧରେ ଆମର ଜାତିବାଦୀ, ପୁଞ୍ଜିବାଦୀ, ରକ୍ଷଣଶୀଳ ଓ ସାମ୍ପ୍ରଦାୟିକ ଚେତନାଗ୍ରସ୍ତ ଦେଶପ୍ରେମୀମାନେ ନୀରବ ରୁହନ୍ତି କାହିଁକି ? ଚାଷୀ, ଆଦିବାସୀ, ଦଳିତ, ବିସ୍ଥାପିତ, ଶ୍ରମିକଙ୍କ ଜୀବନ ଓ ଜୀବିକା ଏବଂ ଅସ୍ତିତ୍ୱ ଓ ଅସ୍ମିତାର କଥା କଣ ଦେଶ ପାଇଁ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ କି ପ୍ରସଙ୍ଗ ନୁହେଁ ? ଏମାନଙ୍କ ମତ ପ୍ରକାଶର ସ୍ୱାଧୀନତା, ନ୍ୟାଯ୍ୟ ଦାବିର ଆନ୍ଦୋଳନ କଣ ଦେଶର ସ୍ୱତନ୍ତ୍ରତା ଓ ସାର୍ବଭୌମତ୍ୱ ପ୍ରତି ଏକ ଚ୍ୟାଲେଞ୍ଜ ?

ଏଠି ଆଉ ଏକ କଥା ବିଚାର୍ଯ୍ୟ । ଆମ ଦେଶରେ ପଛୁଆ, ଗରିବ, ଅଳ୍ପସଂଖ୍ୟକ, ଦଳିତ ଓ ଆଦିବାସୀ ସମୁଦାୟର ଲୋକଙ୍କୁ ହିଁ ବେଶୀ ସଂଖ୍ୟାରେ ଫାଶୀରେ ଝୁଲାଯାଇଛି । ଫାଶୀଦଣ୍ଡରୁ ରାଜକ୍ଷମା ପାଇଥିବା ଲୋକଙ୍କ ଭିତରୁ ଅଧିକାଂଶ ଲୋକହେଲେ ଉଚ୍ଚ ଜାତିର । ଆମ ଦେଶର କୌଣସି ଜେଲର ସର୍ଭେ କରନ୍ତୁ, ଜାଣିପାରିବେ ଏମିତି ବହୁଲୋକ ଜେଲରେ ଅଛନ୍ତି ଯେଉଁମାନେ ଓକିଲ ଲଗାଇ ପାରିବେ ନାହିଁ କିମ୍ବା ଆଇନକୁ ପଇସା / ପଦପଦବୀ, ଜାତି ଓ ଶ୍ରେଣୀଜନିତ ଓଜନ ବ୍ୟବହାର କରି ଫାଙ୍କି ପାରିନାହାଁନ୍ତି ।

ଆବୁ ସାଲେମ ଓ ବମ୍ବେ ବ୍ଲାଷ୍ଟ ସହ ସମ୍ପର୍କିତ ଆତଙ୍କବାଦୀଙ୍କ ସହ ସଂଜୟ ଦତ୍ତଙ୍କ ସ୍ପଷ୍ଟ ସମ୍ପର୍କ ଥିବା ଓ ତାଙ୍କଠୁ ବନ୍ଧୁକ ରଖିଥିବା ସତ୍ତ୍ୱେ ସେ ଗୋଟିଏ ରକମ ମୁକ୍ତି ପାଇଗଲେ । ଆବୁ ସାଲେମର ପୋଷ୍ଟର ଲଗେଇଥିବା ଦି'ଜଣ ସାଧାରଣ ଲୋକଙ୍କ ବେଲ୍

ଖାରଜ କରି ଜେଲରେ ଭରିଦିଆଗଲା । ନବଜୋତ ସିଂ ସିଦ୍ଧୁ ହତ୍ୟା କରିବା ସତ୍ତ୍ୱେ ଅନୁରୂପ ଦଣ୍ଡ ପାଇଲେ ନାହିଁ । ସେ ଅମୃତସରରୁ ନିର୍ବାଚନ ଲଢ଼ିଲେ । ତାଙ୍କର ଗତିବିଧି ଦେଖିଲେ ଜଣାପଡୁଛି, ସେ ନିଜର କୃତକର୍ମ ପାଇଁ ଟିକିଏ ବି ଲଜ୍ଜିତ କିମ୍ବା ଅନୁତପ୍ତ ନୁହନ୍ତି । ଅଫଜଲ୍ ଫାଶୀ ପାଇଁ ସବୁଠୁ ବେଶୀ ପ୍ରଦର୍ଶନ କରୁଥିବା ଭାଜପା ସିଦ୍ଧୁଙ୍କୁ ପଞ୍ଜାବ ନିର୍ବାଚନର ଷ୍ଟାର ରୂପେ ବ୍ୟବହାର କରିଥିଲା । ବୋଫର୍ସ ଭଳି ଦୁର୍ନୀତି ଯାହା ଦେଶର ସୁରକ୍ଷା ସହ ଜଡ଼ିତ ସେଭଳି ପ୍ରସଙ୍ଗରେ ଜଣେ ବି ଦଣ୍ଡିତ ହେଲେ ନାହିଁ । ଏମାନେ ମୁକୁଳି ଯିବା ପଛରେ ତାଙ୍କ ଧର୍ମ / ଶ୍ରେଣୀ / ଅର୍ଥ / ପରିଚୟ / ଦଳୀୟ ରାଜନୀତିର ହାତ ରହିଛି । ଆମ ଭିତରୁ ଅନେକ ଲୋକ ସେମାନଙ୍କ ପ୍ରତି ସମ୍ବେଦନଶୀଳ । ସମ୍ବେଦନା ଓ କ୍ଷମାଶୀଳତା କିଛି ଖରାପ ଗୁଣ ନୁହଁ ମାତ୍ର ଏ ସମ୍ବେଦନଶୀଳତା କାହିଁକି ଜାତି / ଧର୍ମ / ଶ୍ରେଣୀ / ଅଞ୍ଚଳ ଜନିତ ପୂର୍ବାଗ୍ରହରେ ପୀଡ଼ିତ ? ଆମ ଦେଶରେ ନ୍ୟାୟ, ଜାତି, ଧର୍ମ, ଶ୍ରେଣୀ, ଲିଙ୍ଗ ଓ ଦଳଗତ ରାଜନୀତି ନିରପେକ୍ଷ ହୋଇପାରିନାହିଁ ।

ଗୁଜରାଟ ଦଙ୍ଗାରେ ମରିଥିବା ହଜାର ହଜାର ଲୋକଙ୍କ ଅସଲ ହତ୍ୟାକାରୀ ମୋଦି ଓ ମୋଦିଙ୍କ ନିର୍ଦ୍ଦେଶିତ ପ୍ରଶାସକଙ୍କୁ ଦଣ୍ଡିତ କରିବା ଜରୁରୀ ନୁହେଁ କି ? ଏ ଗୁଜରାଟ ଦଙ୍ଗା ଦେଶର ଏକତା ଓ ଅଖଣ୍ଡତା ପ୍ରତି ସବୁଠୁ ବଡ଼ ବିପଦ ଆଣିଛି । ଗୁଜରାଟ ଦଙ୍ଗା ଅନେକ ଦଙ୍ଗା ଓ ବମ୍ବେ ବ୍ଲାଷ୍ଟ ତଥା ଅକ୍ଷରଧାମ ଉପରେ ଆତଙ୍କବାଦୀ ଆକ୍ରମଣକୁ ଡାକି ଆଣିଛି । ଆମ ଦେଶର ସବୁଠୁ ବେଶୀ ଧର୍ମ ନିରପେକ୍ଷ ଗୁଜରାଟି ମୁସଲିମ (କେରଳ ପରେ)ଙ୍କୁ ମୁସଲିମ ମୌଳବାଦୀଙ୍କ ନିକଟତର କରିବାରେ ଗୁଜରାଟ ଦଙ୍ଗା ଏକ ବଡ଼ ଭୂମିକା ନେଇଛି । ଏ ପ୍ରକ୍ରିୟା ହଜାର ହଜାର ନରୀହ ହିନ୍ଦୁ-ମୁସଲିମଙ୍କ ଜୀବନ ନେଉଛି । ଠିକ୍ ସେମିତି ଆଡ଼ଭାନୀଙ୍କ ରାମ-ରଥଯାତ୍ରା ଯୋଗୁଁ ବାବ୍‌ରୀ ମସ୍‌ଜିଦ୍ ଭଙ୍ଗ ଓ ତାପରେ ପରେ ଦେଶବ୍ୟାପୀ ଦଙ୍ଗା ପାଇଁ ଆଡ଼ଭାନୀଙ୍କୁ ଦଣ୍ଡିତ କରିବା ଆବଶ୍ୟକ । ଏଇ ଦଳ ପଛରେ ଥିବା ବିଚାର ହିଁ ତ ନାଥୁରାମ ଗଡ଼ସେଙ୍କୁ ଗାନ୍ଧୀ ହତ୍ୟା ପାଇଁ ପ୍ରେରିତ କରିଥିଲା । ସେ ଘଟଣାରେ ଜଡ଼ିତ ଗୋପାଲ ଗଡ଼ସେଙ୍କୁ ରାଜକ୍ଷମା ପ୍ରଦାନ କରାଯାଇଥିଲା । ଏଇ ଦଳ ଷ୍ଟେନ୍‌ସ୍ ଓ ତାଙ୍କ ନରୀହ ଶିଶୁ ପୁତ୍ରଙ୍କୁ ହତ୍ୟା କରିଥିବା ଜହ୍ଲାଦ ଦାରା ସିଂଙ୍କୁ ହିରୋ ରୂପେ ପେଶ୍ କରୁଥିଲା । ତାର ମୁକ୍ତି ପାଇଁ ଆନ୍ଦୋଳନ କଲା । ଆତଙ୍କବାଦୀ ଗତିବିଧିର ଅଭିଯୋଗରେ, ପାକିସ୍ତାନରେ ବନ୍ଦୀ ଥିବା ସରବ୍‌ଜିତକୁ ଫାଶୀଦଣ୍ଡରୁ ମୁକ୍ତ କରାଯାଉ ବୋଲି ଭାରତରେ କିଛି ସଙ୍ଗଠନ ଦାବି କରିଛନ୍ତି । ପାକିସ୍ତାନ ମଧ୍ୟ ଏକ ଦେଶ । ସେଠି ମଧ୍ୟ ସର୍ବୋଚ୍ଚ ନ୍ୟାୟାଳୟ ସରବ୍‌ଜିତ ସିଂକୁ ଫାଶୀଦଣ୍ଡ ଶୁଣେଇଛି । ସମାନ ଅପରାଧର ଅଭିଯୋଗରେ ଜଣକୁ ଆମେ ଫାଶୀ ଦଣ୍ଡ ଦିଆଯାଉ ବୋଲି ଦାବି କରୁଥିବା ବେଳେ ଜଣକର ମୁକ୍ତି ଚାହୁଁଛୁ । ନିଜ ଦେଶର ଦଣ୍ଡକୁ ସମର୍ଥନ / ଅନ୍ୟ ଦେଶର ଦଣ୍ଡକୁ ବିରୋଧ । ପୁଣି ପାକିସ୍ତାନୀ ଜେଲରେ ସରବ୍‌ଜିତ ସିଂ ସହ ବନ୍ଦୁ

ମତ୍ସ୍ୟଜୀବୀ ବନ୍ଦୀ ହୋଇ ଅଛନ୍ତି । ସେମାନଙ୍କ ପାଇଁ ତ ଆମେ କେବେ ବ୍ୟସ୍ତ ହେଉନାହୁଁ। ଆମର 'ମଣିଷ ପ୍ରେମ ଓ ମାନବକତା' ଜାତି, ଧର୍ମ, ଶ୍ରେଣ, ଲିଙ୍ଗ ଓ ଦେଶ ଭେଦରେ ନିରପେକ୍ଷ ହୋଇ ପାରିନି ।

ଅଫଜଲ୍ ବିରୋଧରେ କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ନଥିଲା । ତା ବିରୋଧରେ ପେଶ୍ କରାଯାଇଥିବା ସାକ୍ଷୀ, ପ୍ରମାଣର ବିଶ୍ୱସନୀୟତା ନେଇ ଅନେକ ପ୍ରଶ୍ନବାଚୀ । ସେ ନିଜ ପକ୍ଷ ରଖିବା ପାଇଁ ଉଚିତ ଅବସର ଓ ଓକିଲ ପାଇଥିଲା କି ନା, ସେସବୁର ଉତ୍ତର ମିଳିବ ଅଫଜଲ୍‌ର ସ୍ତ୍ରୀ ତବସୁମ୍ ଲେଖିଥିବା ଚିଠିରୁ । ଏଠି ଗୋଟେ ତଥ୍ୟ ଜଣେଇଦେବା ଯେ ବିଶିଷ୍ଟ ଓକିଲ ରାମ ଜେଠମାଲାନୀ ଅଫଜଲ୍‌ର କେସ୍ ଲଢ଼ିବାକୁ ପ୍ରସ୍ତୁତ ଥିଲେ ମାତ୍ର ଶିବସେନାର ଧମକ ଯୋଗୁଁ ସେ ଓହରିଗଲେ । ଏକଥା ସ୍ପଷ୍ଟ ଯେ ଆତଙ୍କବାଦୀ ଘଟଣା ଓ ସେଥିରେ ଅଭିଯୁକ୍ତ ମଣିଷଙ୍କ ବିରୋଧରେ ଚଳାଯାଉଥିବା କୌଣସି ଅଭିଯାନ ପଛରେ ଏକ ରାଜନୀତି ଥାଏ । ସେଥିରେ ସାମ୍ପ୍ରଦାୟିକତାର ରାଜନୀତି ମଧ୍ୟ ସାମିଲ ଥାଏ । ମାତ୍ର ସାମ୍ପ୍ରଦାୟିକତାର ଏକ ଜାତୀୟ ଆଧାର ରହିଛି । ବନ୍ତ ସିଂହ ଓ ଖୈର ଲାଞ୍ଜିର ଦଳିତଙ୍କ ପାଇଁ କେହି ବ୍ୟସ୍ତ ନୁହେଁ। ଯୁଗ ଯୁଗ ଧରି ଯେଉଁ ସାମାଜିକ ବ୍ୟବସ୍ଥା ଦଳିତଙ୍କ ପାଇଁ ଆତଙ୍କ ଓ ଅପମାନ ହୋଇ ରହିଛି ସେ ବ୍ୟବସ୍ଥାକୁ ନେଇ ଅଧିକାଂଶ ନୀରବ ।

ନର୍ମଦା, କଳିଙ୍ଗନଗର, କାଶୀପୁର, ଚିଲିକା, ସିଙ୍ଗୁର ଓ ସେଜ୍ ପ୍ରସ୍ତାବିତ ନନ୍ଦିଗ୍ରାମର ଅତ୍ୟାଚାରିତ ଜନତା (ଆଦିବାସୀ-ଚାଷୀ-ଭୂମିହୀନ ଶ୍ରମିକ-ଭାଗ ଚାଷୀ)ଙ୍କ ପାଇଁ ଆମର ଦେଶପ୍ରେମୀମାନଙ୍କ ହୃଦୟ କାହିଁକି କାନ୍ଦେନା ? ଯେଉଁ ବିକାଶ ଡାଞ୍ଜା ଲକ୍ଷାଧିକ ଚାଷୀ-ଆଦିବାସୀଙ୍କ ପାଇଁ ଆତଙ୍କ ହୋଇ ରହିଛି, ସେ ବିକାଶ ପଦ୍ଧତିକୁ ନେଇ ସେମାନେ ପ୍ରଶ୍ନ କରୁନାହାଁନ୍ତି କାହିଁକି ? ବେକାରୀ-ବେରୋଜଗାରୀ ସୃଷ୍ଟି ଓ ଚାଷୀଙ୍କ ଆତ୍ମହତ୍ୟା ପାଇଁ ଦାୟୀ ଉଦାର ଅର୍ଥନୀତିକୁ ନେଇ ଦେଶବ୍ୟାପୀ ବିତର୍କ କାହିଁକି ହେଉନି ? ମଣିପୁରୀ ମହିଳାଙ୍କ ସତ୍ୟାଗ୍ରହ ଓ ଆନ୍ଦୋଳନକୁ ଉପେକ୍ଷା କାହିଁକି ? ଏଇ ହେଲା ଆମର ଦେଶପ୍ରେମର ଅସଲ ସ୍ୱରୂପ ! ଆମ 'ଦେଶପ୍ରେମ' ଜାତି / ଧର୍ମ / ଶ୍ରେଣୀ / ସଂଖ୍ୟାଜନିତ ପୂର୍ବାଗ୍ରହ ଓ ପାକିସ୍ତାନ ଭଳି ଛୋଟ ଓ ଦରିଦ୍ର ଦେଶ ସହ ଶତ୍ରୁତା ଉପରେ ଆଧାରିତ । ତାର କୌଣସି ଉଚାଙ୍ଗ ଲକ୍ଷ୍ୟ ଉଦ୍ଦେଶ୍ୟ ନାହିଁ । ଭାରତର ମୁଖ୍ୟ ଧାରାର ସିନେମା ଏଇ ଅନ୍ଧ ଦେଶପ୍ରୀତିକୁ ସାଧାରଣ ଜନମାନସରେ ଆହୁରି ମଜବୁତ୍ କରିବାରେ ଲାଗିଛି । ମା ତୁଝେ ସଲାମ୍, ଇଣ୍ଡିଆନ୍, କାର୍ଗିଲ, ଗଦ୍‌ଦର ଭଳି ଶସ୍ତା ସିନେମାରେ ଦର୍ଶାଯାଉଥିବା ଏକପାଖିଆ ଦେଶପ୍ରେମର ସ୍ୱରୂପ ଦେଖିଲେ ଏକଥା ବୁଝିବାକୁ କଷ୍ଟ ଲାଗିବ ନାହିଁ । ଆତଙ୍କବାଦ, ସନ୍ତ୍ରାସବାଦ ଓ କାଶ୍ମୀର ସମସ୍ୟା ବାବଦରେ ଟିକେ ବି ଗବେଷଣା ନ କରି ହିନ୍ଦୀ ସିନେମାର ଲୋକେ ସରକାର ଓ ଶାସକ ଶ୍ରେଣୀର ବିଚାରକୁ ନିଜ କାହାଣୀର ମୂଳ ବିଷୟବସ୍ତୁ କରୁଛନ୍ତି ।

ଏଠି ଜାତି କହିଲେ ଉଚ୍ଚ ଜାତି, ଧର୍ମ କହିଲେ ବ୍ରାହ୍ମଣବାଦୀ ହିନ୍ଦୁ ଧର୍ମ, ଶ୍ରେଣୀ କହିଲେ ପୁଞ୍ଜିବାଦୀ ଦେଶୀ-ବିଦେଶୀ କମ୍ପାନୀ ଓ ଧନାଢ଼୍ୟ ଶ୍ରେଣୀ। ଏମାନେ ହିଁ ଆମ ଦେଶ ଓ ସମାଜର ଶାସକ ଶ୍ରେଣୀ। ଏମାନଙ୍କର ସ୍ୱାର୍ଥ ହିଁ ଦେଶର ସ୍ୱାର୍ଥ। ଏମାନଙ୍କ ସ୍ୱାର୍ଥର ବିରୋଧ ଅର୍ଥ ଦେଶଦ୍ରୋହ। ଏମାନଙ୍କ ବିଳାସୀ ଇଚ୍ଛାର ପୂର୍ତ୍ତି ହେଲା ଦେଶର ବିକାଶ ଓ ପ୍ରଗତି। ତେଣୁ ଏମାନଙ୍କ ବିଳାସ ପଥେ ଯେତେ ଗାଡ଼ ପୁରୁ ତହିଁ ଚାଷୀ-ଆଦିବାସୀ-ଦଳିତ-ଶ୍ରମିକର ମାଂସ ହାଡ଼। ଏକଥାକୁ ପ୍ରଶ୍ନ ହେଲେ କୁହାଯିବ ଦେଶ ବିରୋଧୀ / ବିକାଶ ବିରୋଧୀ / ହିନ୍ଦୁ ଧର୍ମର ବିରୋଧୀ ବା ଛଦ୍ମ ଧର୍ମ ନିରପେକ୍ଷ। ତାପରେ ତ ଲାଠି, ଗୁଳି, ଜେଲ, ପ୍ରଶାସନର ସମର୍ଥନରେ ଜାତି ଓ ଧର୍ମ ନାଁରେ ଦଙ୍ଗା ଓ ଗଣହତ୍ୟା। ତା ପାଇଁ ସଂସଦ କେତେବେଳେ ଗାଟ୍‌ରେ ସ୍ୱାକ୍ଷର କରୁଥାଏ ତ କେବେ ସେଜ୍ ଓ ପେଟେଣ୍ଟ ଆଇନ ଏବଂ ତାର ବିରୋଧୀଙ୍କୁ ଦମନ ଲାଗି  ଟାଡ଼ା, ପୋଟା ଓ ନାସା ଭଳି ଆଇନ। ଠିକ୍ ସେମିତି ଶୈକ୍ଷିକ-ଆର୍ଥିକ ସ୍ଥିତି ଦୃଷ୍ଟିରୁ ପଛୁଆ ଆଦିବାସୀ-ଦଳିତ-ମୁସଲିମଙ୍କ ପାଇଁ କୌଣସି ପଦକ୍ଷେପ (ସେଥିରେ ପୁଣି ଆନ୍ତରିକତା ନଥାଏ) କଥା ଆଲୋଚନା ହେଲେ ସଙ୍ଗେ ସଙ୍ଗେ ଶୁଣିବାକୁ ମିଳିବ ତୁଷ୍ଟିକରଣ କିମ୍ୱା ମେଧା (ମେରିଟ୍)ର ହତ୍ୟା। ନହେଲେ ଦେଶରେ ସମ୍ବଳ ନାହିଁ। ଏ ଜନିତ ଶାସକୀୟ ପୂର୍ବାଗ୍ରହ ଦେଶର ମିଡ଼ିଆକୁ ମଧ୍ୟ କବଳିତ କରି ରଖିଛି। ସେ ଶାସକର ଭାଷା କହୁଛି, ଶାସକ ଶ୍ରେଣୀର ବିଚାରରେ ସାଧାରଣ ଜନତାକୁ ଦୀକ୍ଷିତ କରିବାକୁ ଚେଷ୍ଟା କରୁଛି। ଆମ ଦେଶର ମିଡ଼ିଆ ପୁଞ୍ଜିବାଦୀ-ବ୍ରାହ୍ମଣବାଦୀଙ୍କ କବ୍‌ଜାରେ ଅଛି ଓ ତାଙ୍କ ବିଚାର ଏବଂ ସ୍ୱାର୍ଥର ପ୍ରତିନିଧିତ୍ୱ କରୁଛି । ଠିକ୍ ସେମିତି ସ୍ୱାୟତ୍ତତାର କଥା ଉଠିଲେ କୁହାଯିବ ବିଦେଶୀ ଶତ୍ରୁଙ୍କ ସହ ସମ୍ପର୍କିତ ଗୋଷ୍ଠୀର ଦାବୀ। ଶାସକବର୍ଗର ଏଇ ଜାତିବାଦୀ-ସାମ୍ପ୍ରଦାୟିକତାବାଦର ସ୍ୱାୟତତ୍ତା ବିରୋଧୀ ଅଗଣତାନ୍ତ୍ରିକ (କର୍ପୋରେଟ ଗଣତନ୍ତ୍ର) ଜାତୀୟତା ଏବଂ ଶ୍ରେଣୀ ପୂର୍ବାଗ୍ରହରୁ ଜାତ ପୁଞ୍ଜିବାଦୀ ବିକାଶ ଚିନ୍ତନ ହିଁ ଆଜିର ରାଷ୍ଟ୍ରକୁ ସବୁଠୁ ବଡ଼ ଆତଙ୍କବାଦୀ ସଙ୍ଗଠନର ରୂପ ଦେଇଛି। ରାଷ୍ଟ୍ର ପ୍ରାୟୋଜିତ ଆତଙ୍କବାଦୀ ଗତିବିଧିରେ ନିୟୋଜିତ ହେଉଛି ପ୍ରଶାସନ-ପୁଲିସ-ମିଲିଟାରୀ ଏବଂ କୋର୍ଟ ଭଳି ଅନୁଷ୍ଠାନ ତାକୁ ଯଥାର୍ଥତାର ପୋଷାକ ପିନ୍ଧଉଛି।

ଏ ସରକାରୀ ଆତଙ୍କରାଜ ଦେଶରେ ଅରାଜକତା ଆଣିବ। କିସମ କିସମର ଆତଙ୍କବାଦ / ସନ୍ତ୍ରାସବାଦୀଙ୍କୁ ଜନ୍ମଦେବ। ଏଇ ପ୍ରକ୍ରିୟା ଏକ ଶାନ୍ତିପ୍ରିୟ ଜନସମୂହକୁ ଆତ୍ମହତ୍ୟା ଆଡ଼କୁ ଠେଲି ନେଉଛି କିମ୍ୱା କେତେବେଳେ ଜୀବନ ଜୀବିକାର ସୁରକ୍ଷା ପାଇଁ ହେଉକି ଜାତିଗତ-ସାମ୍ପ୍ରଦାୟିକ ଦଙ୍ଗାରୁ ନିଜ ଅସ୍ତିତ୍ୱକୁ ବଞ୍ଚାଇବାକୁ ହେଉ ଅବା ସ୍ୱାଭିମାନ ଓ ସ୍ୱାୟତତ୍ତାର ଦାବି ହାସଲ ଲାଗି ହେଉ ହିଂସ୍ର ହେବାକୁ ବାଧ୍ୟ କରୁଛି। ସେତେବେଳେ ରାଜ୍ୟର ରାଜଧାନୀ, ବିଧାନସଭା ଓ ଦିଲ୍ଲୀର ସଂସଦ ଭବନ ଆଡ଼କୁ ଏକ ବିରାଟ

ଜନସମୂହର ଜୁଆର ମାଡ଼ି ଆସିବ। ଇତିହାସରେ ଏମିତି ଘଟଣା ଅନେକଥର ଘଟିଛି। ପୁଣିଥରେ ଘଟିବ ଓ ଇତିହାସର ଅନ୍ତ, ବିଚାରର ଅନ୍ତ ଘୋଷଣା କରୁଥିବା ଶକ୍ତିଟି ପରାଜୟର ଧୂଳି ଚାଟିବ। ଏ ସ୍ୱପ୍ନକୁ ବଞ୍ଚେଇବା ହେଲା ଅସଲ ଆହ୍ୱାନ। ମନେ ପଡୁଛି କବି ପାଶଙ୍କ ଏକ ଧାଡ଼ି - "ସବ୍‌ସେ ଭୟଙ୍କର୍ ହେ ସପ୍‌ନୋକା ମର୍‌ଜାନା।" ନ୍ୟାୟ ଓ ସମତାର ସମାଜ ନିର୍ମାଣର ସ୍ୱପ୍ନକୁ ବଞ୍ଚେଇ ରଖିବା ଲାଗି ମଧ୍ୟ ଏକ ସ୍ପଷ୍ଟ ରାଜନୈତିକ ଚିନ୍ତନ ଓ ସଙ୍ଗଠିତ ଉଦ୍ୟମ ଲୋଡ଼ା। ସେଥିପାଇଁ ପରିବର୍ତ୍ତନକାମୀ ବିପ୍ଳବୀ ଓ ରାଜନୈତିକ ଦଳ ଓ ସଙ୍ଗଠନ ଗୁଡ଼ିକ ଭିତରେ ସମ୍ପର୍କ, ସମ୍ବାଦ ଓ ସମନ୍ୱୟର ଏକ ଧୀର ପ୍ରକ୍ରିୟା ଚାଲିଛି। ଏଭଳି ପ୍ରକ୍ରିୟା ରାଜ୍ୟ, ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ହେଉଛି। ତାକୁ ମଜବୁତ କରିବା ଲାଗି ଆମେ ଝଣ୍ଡା, ଚିହ୍ନ ଓ ସ୍ଲୋଗାନର ଝିମିଟି ଖେଳରୁ ନିଜକୁ ମୁକ୍ତ ରଖିପାରିବା ତ ? ଆମର ଅଧିକାଂଶ ଆଲୋଚନା ରାଜନୀତି, ସଙ୍ଗଠନ ଓ ବିଚାରକୁ ନେଇ ହୁଏ ମାତ୍ର ଗୋଟିଏ ବ୍ୟକ୍ତିର ବ୍ୟକ୍ତିଗତ ଜୀବନ, ସାମୂହିକ ଜୀବନ କେମିତି ହେବ ସେ ନେଇ ଆଲୋଚନା ଖୁବ୍ କମ୍ ହୁଏ। ସେ ପ୍ରକ୍ରିୟାକୁ ମଧ୍ୟ ଜୋର ଦେବାକୁ ହେବ। ଯଦ୍ୱାରା କି ସେ ପ୍ରକୃତ ଅର୍ଥରେ ସ୍ନେହ, ପ୍ରେମ, ଭ୍ରାତୃତ୍ୱ ଉପରେ ଆଧାରିତ ସମତା ଓ ସ୍ୱାଧୀନତାର ସାମାଜିକ-ରାଜନୈତିକ ବ୍ୟବସ୍ଥାର ନିର୍ମାଣରେ ଯୋଗଦାନ ଦେଇ ପାରିବ। ସତ୍ ଅର୍ଥରେ ସମାଜବାଦୀ ହେଇ ଆଜିର କ୍ଷମତା ଓ ସମ୍ପତ୍ତି ଜମା କରିବାର ପାଗଳା ଦୌଡ଼ରୁ ନିଜକୁ ମୁକ୍ତ ରଖିପାରିବ ଏବଂ ଯେଉଁ ସାମାଜିକ-ସାଂସ୍କୃତିକ-ରାଜନୈତିକ ସଙ୍ଗଠନରେ ସେ ଥିବ ସେ ସଙ୍ଗଠନକୁ ମୁଖ୍ୟ ଧାରାର ଦଳ ଗୁଡ଼ିକରେ ଥିବା ଭାଗକର-ଭୋଗକର ନୀତିରୁ ଊର୍ଦ୍ଧ୍ୱକୁ ନେବାରେ ସାହାଯ୍ୟ କରିପାରିବ। ନହେଲେ ତ ବାମପନ୍ଥୀଟିଏର ବି ପ୍ରାଥମିକ ସ୍ୱପ୍ନ ହେବ ଟାଟାର ଲକ୍ଷେ ଟଙ୍କିଆ କାର୍ ଓ ନିଜ ସନ୍ତାନଙ୍କ ଲାଗି ବେଦାନ୍ତ ବିଶ୍ୱବିଦ୍ୟାଳୟରେ ଶିକ୍ଷା। ସେ ସ୍ୱପ୍ନର ପୂର୍ତ୍ତି ଲାଗି ଶତାବ୍ଦୀ ଶତାବ୍ଦୀ ଧରି ଭୂମିହୀନଟିଏ ଦେଖୁଥିବା ଚାଖଣ୍ଡେ ଜମିର ସ୍ୱପ୍ନ ଅପୂରଣୀୟ ରହିଯାଉ, ସେଥିରେ ତାର କିଛି ଯାଏ ଆସେନା। ଏକ ମାଲିକାନା ଓ ସ୍ୱାଭିମାନର ଭାବ ଦେଉଥିବା ଚାଷଜମିକୁ ଜାବୁଡ଼ି ଧରି ରଖିବାକୁ ଚାହୁଁଥିବା ଚାଷୀର ଛାତିରେ ଗୁଳିମାରିବା ବେଳେ ତାର ବିବେକ ତାକୁ ବାଧା ଦେବନାହିଁ।

ଅଫଜଲ୍ କଥା ପଦେ ଏଠି କହିଦିଏ। ଫାଶୀକୁ ଆମେ ନୀତିଗତ ଭାବେ ବିରୋଧ କରୁଛୁ। ଅଫ୍‌ଜଲ୍‌କୁ ତାର ପକ୍ଷ ରଖିବା ପାଇଁ ସୁଯୋଗ ଦିଆଯାଉ। ରାଷ୍ଟ୍ରୀୟ ଭାବନା ନାଁରେ ସାକ୍ଷ୍ୟ-ପ୍ରମାଣକୁ ଉପେକ୍ଷା କରି ବିଚାର କରାନଯାଉ।



# ଭାଲେଣ୍ଟାଇନ୍ ଡେ : ପ୍ରେମ ବନାମ ବଜାରବାଦ ଓ ସାଂସ୍କୃତିକ ମୌଳବାଦ

ଭାଲେଣ୍ଟାଇନ୍ ଡେ ଯେଉଁଠି ପ୍ରେମର ପତାକା ଧରିଛି 'ବଜାର'। ସେଠି ପ୍ରେମର ସ୍ୱୀକାରୋକ୍ତି / ପରିପ୍ରକାଶ / ଘୋଷଣା ପାଇଁ କେତେ ସାଜୋ ସାମାନ ଗଦା ହୋଇଛି । ହଇଚଇ, ଚକ୍‌ଚକ୍, ଗାଜାବାଜା, ପାର୍ଟି, ଡିସ୍କୋ। ମେଲେରିଆ ପରି ପ୍ରେମର ଉତାପ ବଢୁଛି - ଉତୁରୁଛି। ପ୍ରେମ ପରିପ୍ରକାଶର ରିମୋର୍ଟ କଣ୍ଟ୍ରୋଲ ଯେମିତି ବଜାର ହାତରେ। ବଜାରର କମାଲ ଦେଖ, କେମିତି ସହଜ କରିଦେଉଛି ପ୍ରେମ ପରିପ୍ରକାଶ ଭଳି କଠିନ କାମକୁ। ଥତ୍‌ମତ୍ ହୋଇ ଝାଳେଇ ଯାଉଥିବା ପୁଅଝିଅଙ୍କୁ ଧରେଇ ଦେଇଛି ମୋବାଇଲ୍ / ଇଣ୍ଟରନେଟ୍ / କାର୍ଡ଼ ରକମ ରକମର ଗିଫ୍ଟ। ଲୋକଙ୍କ ପକେଟ ଖାଲି କରେଇବାର କଳାରେ କେତେ ସଫଳ ସତରେ। ଗୋଟିଏ ପଟେ ସ୍ୱପ୍ନ ଓ ଆବେଗର ସୌଦାଗରମାନେ ଅନ୍ୟ ପଟେ ଧର୍ମ ଓ ସଂସ୍କୃତିର ଆତ୍ମଘୋଷିତ ରକ୍ଷକର ଖୋଳ ପିନ୍ଧିଥିବା ବାଜିଗରମାନେ। ଗଲା କିଛି ବର୍ଷ ହେଲା ହିନ୍ଦୁ ଓ ମୁସଲିମ ମୌଳବାଦୀ, ଦଳ ଓ ସଙ୍ଗଠନ ବିଶେଷ କରି ବଜରଙ୍ଗ ଦଳ, ଅଖିଳ ଭାରତୀୟ ବିଦ୍ୟାର୍ଥୀ ପରିଷଦ, ଶିବସେନା, ସଂଭାଜି ବ୍ରିଗେଡ଼, ସିମି ଆଦି ଭାଲେଣ୍ଟାଇନ ଡେ' ବିରୋଧରେ ହିଂସାତ୍ମକ ପ୍ରଦର୍ଶନ କରୁଛନ୍ତି। କେବଳ ମୁନାଫା ପାଇଁ ଏଇ 'ଡେ' ର ମହିମା ମଣ୍ଡନ ଗୋଟିଏ ପଟେ। ଅନ୍ୟପଟେ ତର୍କହୀନ ବିରୋଧ କରୁଥିବା ରକ୍ଷଣଶୀଳ, ପ୍ରତିକ୍ରିୟାଶୀଳ ମୌଳବାଦୀମାନେ। ଉଭୟେ ଉଭୟର ପରିପୂରକ ଓ ପ୍ରେରକ ସାଜିଛନ୍ତି। ସେମାନେ ବଜାରକୁ / ବଜାରବାଦକୁ ସମର୍ଥନ କରି ବଜାର ଆଣୁଥିବା ବା ତାର ଅଂଶବିଶେଷ ହୋଇ ଆସୁଥିବା ସଂସ୍କୃତିକୁ ବିରୋଧ କରୁଛନ୍ତି। ଅନ୍ୟ ଦିଗରେ ମୁଦ୍ରାସର୍ବସ୍ୱ ଅର୍ଥନୀତିରେ ସ୍ନେହ, ପ୍ରେମ, ସଂପର୍କ, ସମ୍ବାଦ ସବୁକିଛିକୁ ଅର୍ଥରେ ତଉଲିବାର ଓ ପରିଭାଷିତ କରିବାର ସଂସ୍କୃତି ବଢ଼ି ଚାଲିଛି। ତାକୁ ଧୀରେ ଧୀରେ ସାମାଜିକ ଗ୍ରହଣୀୟତା, ସାଂସ୍କୃତିକ ମାନ୍ୟତା ମିଳିବାରେ ଲାଗିଛି।

ଅର୍ଥ ଅଛି ତ ପ୍ରେମ ପାଇ ହେବ। ସହଜରେ ତାର ପରିପ୍ରକାଶ ସମ୍ଭବ ହେବ। ଅର୍ଥ ନାହିଁ ତ ? ଏଠି ମନେ ପଡୁଛି ସାହିରଙ୍କ ପଦ - "ସେହେନଶାହା ନେ ବନାକର ହସିଁ

ତାଜମହଲ, ହମ ଗରିବୋଁ କେ ମୋହବତ କା ଉଡ଼ାୟା ହେ ମଜାକ୍” । ପ୍ରେମ ପାଇଁ ଧନ ଦୌଲତ ଏକ ଅନିର୍ବାର୍ଯ୍ୟ ସର୍ତ୍ତ ବୋଲି ଧରାଯାଏ ନାହିଁ। କିନ୍ତୁ ଭାଲେଣ୍ଟାଇନ ଡେ'ର ବିଜ୍ଞାପନ ଓ ଆୟୋଜନକୁ ଦେଖିଲେ ମନେହେଉଛି ପ୍ରେମ ଏବେ ଅର୍ଥ ଖର୍ଚ୍ଚର ତାକତ ଉପରେ ନିର୍ଭର କରିବ। ପ୍ରେମ ନିର୍ଭର କରୁ କି ନ କରୁ ପ୍ରେମ ପରିପ୍ରକାଶର ଗାରିମା ନିଶ୍ଚୟ ଅର୍ଥ ଖର୍ଚ୍ଚର ଶକ୍ତି ଉପରେ ନିର୍ଭର କରିବ। ଅନ୍ୟ ଦିଗରେ ନାରୀ-ପୁରୁଷର ସ୍ୱାଭାବିକ ସଂପର୍କର ରାସ୍ତାରେ ବାଧା ଦେଇ ଆସୁଥିବା ଆତ୍ମଘୋଷିତ ସଂସ୍କୃତି ରକ୍ଷକମାନଙ୍କ ହିଂସାତ୍ମକ କାର୍ଯ୍ୟକ୍ରମ ବଢ଼ିଚାଲିବ ।

ଭାଲେଣ୍ଟାଇନ ଡେ'ର ଅର୍ଥ ଫଟାଫଟ୍ ଓ ପ୍ରସ୍ତୁତ ପ୍ରେମର ଦିନ। ମୁନବର ରାନାଂକ ପଦ୍ୟାବଳୀ ଆଜି ପୁରୁଣା ଲାଗୁଛି, ଯେଉଁଠି ସେ କହିଥିଲେ - "ଗୁପ୍ତଗୁ ପର୍ ହୋ ଯାତି ହେ ଅକ୍‌ସର୍ / ଅବ୍ କିସି ଘର୍ ପର୍ କବୁତର୍ ଫେକେ ନେହିଁ ଯାତେ।" ଲୁଚଛିପା ଖେଳର ଲମ୍ୱା, ଜଟିଳ ଓ କଠୋର ଦିନ ଏବେ ଅତୀତ ହୋଇଗଲା। ସୂଚନା ପ୍ରଯୁକ୍ତିର ଯୁଗ ଆଜି ସମସ୍ତ ଝିଂଝଟରୁ ଏବର ଯୁବା ବର୍ଗକୁ ମୁକ୍ତି ଦେଇଛି। ଭାରତରେ ଆର୍ଥିକ ସଂସ୍କାର, ସୂଚନା ପ୍ରଯୁକ୍ତିର କମାଲ ଓ ଭାଲେଣ୍ଟାଇନ ଡେ'ର ପ୍ରଚଳନ ଗୋଟିଏ ସମୟରେ ହିଁ ହେଇଛି। ନବେ ପୂର୍ବରୁ ଆମେ କେହି ଏଇ ଡେ ବିଷୟରେ ଜାଣିନଥିଲୁ । ଟେକ୍‌ନୋଲୋଜି ମାନବ ସମାଜ ଓ ପ୍ରକୃତିର ମଙ୍ଗଳ କମ୍, ତାର ଅମଙ୍ଗଳ କାମନାରେ ବେଶି ବ୍ୟସ୍ତ। ସେ ପ୍ରଥମେ ପେଟୁ, ମହାପେଟୁମାନଙ୍କ ସେବାରେ ଲାଗିଛି। ସେମାନଙ୍କ ମଉଜମସ୍ତି, ବିଳାସ, ଅୟସ-ଆରାମର ବ୍ୟବସ୍ଥାରେ ଜୁଟିଛି। ସେ ପ୍ରକ୍ରିୟାରେ ପ୍ରକୃତିର ସନ୍ତୁଳନ ବିଗିଡ଼ି ଯାଉ ସେଥିରେ କିଛି ଯାଏ ଆସେ ନା। ଲୋକତନ୍ତ୍ର ଓ ନ୍ୟାୟର ମୃତ୍ୟୁ ହେଉ କିଛି ଯାଏ ଆସେ ନା। ଦୁନିଆରେ ବଳ (ପୁଞ୍ଜି ଓ ପ୍ରଯୁକ୍ତି) ର ରାଜୁତି ଚାଲିଛି। ଯୋର ଯାର ମୂଲକ ତାର। ଟେକ୍‌ନୋଲୋଜି ବି ତାକତ୍‌ବର ଲୋକର ଖେଳନା ହେଇ ତାର ସ୍ୱାର୍ଥ ସାଧନ କରୁଛି।

ଟେକ୍‌ନୋଲୋଜି ପଶୁ ଖଟଣିରୁ ଲୋକଙ୍କୁ ମୁକ୍ତ କରିବା ପାଇଁ ନ ହେଇ, ପୁଞ୍ଜି ବଢ଼େଇବା ପାଇଁ ଯେଉଁଦିନଠୁ ବ୍ୟବହୃତ ହେଲା, ତାହା ଉତ୍ପାଦନ ବ୍ୟବସ୍ଥାକୁ ଆହୁରି ଶୋଷଣମୂଳକ କଲା। ଲୁଣ୍ଠନ ଓ ଅପରାଧ ଲାଗି ସହଜ ମାଧ୍ୟମ ହେଲା ଟେକ୍‌ନୋଲୋଜି। ଏହା ହେଲା ବଜାରର ଅସଲ ଆୟୁଧ। ଏହା ଏବେ ସଂପୂର୍ଣ୍ଣ ଭାବେ ଲୋକଙ୍କ ଭିତରେ ବଜାରୀ ଇଚ୍ଛା ସୃଷ୍ଟି, ବଜାରୀ ଜିନିଷ ଉତ୍ପାଦନ ଓ ବିକ୍ରିରେ ଲାଗୁଛି। ଏଥିରେ ଆବଶ୍ୟକତା / ଅନାବଶ୍ୟକତାର କଥା ନାହିଁ। ଅନାବଶ୍ୟକ ଚାହିଦା ସୃଷ୍ଟି ଓ ଅନୈତିକ ମୁନାଫା ଉପରେ ଏହା ବିଶ୍ୱାସ କରେ। ପ୍ରତିଯୋଗୀ ସମାଜ ବ୍ୟବସ୍ଥାରେ ନୈତିକତାର ଅର୍ଥ କଣ ? ଏ ବ୍ୟବସ୍ଥାରେ ସବୁକିଛି କିଣାବିକା କରାଯାଇପାରେ। ସବୁ କିଛି ପଣ୍ୟ ମନେକରାଯାଏ।

ବିକ୍ରିଯୋଗ୍ୟ ପ୍ୟାକେଜ୍‌ରେ ପରିଣତ କରାଯାଏ । ସେ ପରିପ୍ରେକ୍ଷୀରେ ପ୍ରେମକୁ / ପ୍ରେମର ଅନୁଭବକୁ ମଧ୍ୟ ବଜାର ଏକ ପ୍ୟାକେଜ୍‌ରେ ପରିଣତ କରି ବିକିବ । ସେ ଦୃଷ୍ଟିରୁ ଭାଲେଣ୍ଟାଇନ ଡେ ବଜାରରେ ଆଉ ଏକ ନାମ । ବଜାରକୁ ଧନ୍ୟବାଦ ଯେ ସେ ପ୍ରେମ ପାଇଁ ଏକ ତାରିଖ ବି ସ୍ଥିର କରିପକାଇଲା । ଫେବୃଆରୀ ୧୪ ହେଲା ଭାଲେଣ୍ଟାଇନ ଡେ । ବଜାରର ପ୍ୟାକେଜିଂ ଓ ପରିଚାଳନାତ୍ମକ ଦକ୍ଷତାକୁ ଦେଖ, କେମିତି ଭାଲେଣ୍ଟାଇନ ଡେର ଇତିହାସ - ଭୂଗୋଳରୁ ବେଖବର ଲୋକେ ବି ମେଣ୍ଢା ବା ଛେଳି ପରି ଏଇ ଦିବସକୁ ମାନି ଚାଲିଛନ୍ତି । ଏ ଦିବସକୁ ମାନୁଥିବା ଭୂଗୋଳ ଯେତେ ବଢୁଛି ବଜାର ବି ସେତେ ବଢୁଛି ଓ ସେତେ ବେଶୀ ମୁନାଫା ଲୁଟୁଛି । ଭାଲେଣ୍ଟାଇନ ଡେ ବଜାର ଦ୍ୱାରା ସୃଷ୍ଟ ଏକ ଉତ୍ସବ । ପ୍ରେମର ମଇଦାନରେ ବି ଅର୍ଥର ବୋଲବାଲା ।

ବଜାରର ଦୟାରେ ପର୍ବ, ଉତ୍ସବ ଓ ଦିବସ, ବୃହତ୍ ଅର୍ଥରେ ସଂସ୍କୃତିର ଜଗତୀକରଣ ହେଉଛି । ଏପରିକି ଆମ ଦେଶ ଭିତରେ ବହୁ ପର୍ବ, ଉତ୍ସବ ପରମ୍ପରା ଉତ୍ତର-ଦକ୍ଷିଣ-ପୂର୍ବ-ପଶ୍ଚିମ ହେଇ ମାଡୁଛି । ଆମ ଦେଶରେ ବଜାର ଉତ୍ତର ଭାରତର ଆଉ ଏକ ପରମ୍ପରାକୁ ପୂର୍ବ ଓ ଦକ୍ଷିଣରେ ବ୍ୟାପକ କରିଛି, ସେ ହେଲା ବୋଲ୍‌ବମ୍ । ଠିକ୍ ସେମିତି ଆମ ଦେଶରେ ନୂଆ ନୂଆ ଦିଅଁ ଦେବତା ଓ ମନ୍ଦିରମାନଙ୍କ ଭିଡ଼ ଓ ତାକୁ କେନ୍ଦ୍ର କରି ବଜାର । ତାର ଅସଲ ସ୍ୱରୂପ ହେଲା - ବଜାର ପାଇଁ ଦିଅଁ ଦେବତା ଓ ମନ୍ଦିର । କେବଳ ହିନ୍ଦୁ ମନ୍ଦିର ନୁହେଁ ଚର୍ଚ୍ଚ, ମସଜିଦ ଆଦି ଧର୍ମର ଈଶ୍ୱର, ଈଶ୍ୱରଙ୍କ ସନ୍ତାନ ଓ ଭକ୍ତଙ୍କୁ ନେଇ ବେପାର ଚାଲିଛି । ବାବା / ମାତାଙ୍କ କଥା ତ ଛାଡ଼ନ୍ତୁ । ଅବଶ୍ୟ ଧର୍ମକୁ ନେଇ ବେପାରର ଇତିହାସ ପୁରୁଣା । କିନ୍ତୁ ବଜାରବାଦ ତାର ଚକ୍‌ମକ୍‌କୁ ଆହୁରି ବଢ଼େଇଛି । ଆବଶ୍ୟକ ହେଲେ ସନ୍ତୋଷୀମାତା, ଗୋଜବାୟାଣୀ ଭଳି ସିନେମା ତିଆରି ହେଇଯାଉଛି । ପଶ୍ଚିମର ଆଉ ଏକ ବାଜେ ଦାନ ହେଲା ନୂଆ ବର୍ଷ ବା "ହେପ୍‌ପି ନିଉ ୟର୍" । ସେ କ୍ରମରେ ହେପି ଏନିଭର୍‌ସରି, ହେପି ବାର୍ଥ ଡ଼େ ଭଳି ଉତ୍ସବମାନଙ୍କୁ ମଧ୍ୟ ଯୋଡ଼ି ପାରିବା । ସେଗୁଡ଼ିକର ମହତ୍ତ୍ୱ ଓ ତାକୁ ପାଳନ କରିବାର ରଙ୍ଗଢଙ୍ଗ / ବାଗବଇଶ ଆଗରୁ ନିଶ୍ଚୟ ଅଲଗା ଥିଲା । କିନ୍ତୁ ବଜାରବାଦ ଆଜି ତାକୁ ଏକ ଗିଫ୍ଟ ଆଇଟମ୍‌ରେ, ଡିସ୍କୋ ପାର୍ଟିରେ ପରିବର୍ତ୍ତିତ କରିଦେଇଛି । ଅବଶ୍ୟ ଏ ସଂସ୍କୃତି ବ୍ୟାପକ କରିବାରେ ଭାରତୀୟ ସିନେମା / ଦୂରଦର୍ଶନ ଓ ଉଚ୍ଚ ମଧ୍ୟବିତ୍ତଙ୍କ ଭୂମିକା ବେଶ ଗୁରୁତ୍ୱପୂର୍ଣ୍ଣ । 'ବାଗ୍‌ବାନ୍' ସିନେମା ଦେଖିଛନ୍ତି ? ଏବେ ସେ କ୍ରମରେ ଫାଦର୍ସ ଡେ, ମଦର୍ସ ଡେ, ଏମିତି କେତେ ରକମର ଡେ'ର ବନ୍ୟା ଆଗକୁ ଆସୁଛି ।

ଦୁନିଆର ଅଧିକାଂଶ ପର୍ବପର୍ବାଣୀ-ଉତ୍ସବର ମୂଳଟି ଇତିହାସକୈନ୍ଦ୍ରିକ ନ ହୋଇ ମିଥ୍ କୈନ୍ଦ୍ରିକ ଅଟେ । ତାର ଐତିହାସିକ ପ୍ରାମାଣିକତା ଖୋଜିବା, ଅନ୍ଧ ସୁଡ଼ଙ୍ଗରେ ହାତଗୋଡ଼

ପହଁଚାଇବା ସଙ୍ଗେ ସମାନ । ହୋଲି-ଦୀପାବଳୀ ପରି ଭାଲେଣ୍ଟାଇନ ଡେ ଏକ କିମ୍ବଦନ୍ତୀ। ସନ୍ଥ ଭାଲେଣ୍ଟାଇନଙ୍କୁ ନେଇ ପ୍ରଚଳିତ କାହାଣୀ ଲୋକକଥାର ପ୍ରାମାଣିକତାକୁ ନେଇ ଅନେକ ସଂଶୟ ଓ ବିବାଦ ରହିଛି । କିନ୍ତୁ ତାଙ୍କର ଛବିଟି ନିଶ୍ଚୟ ଏକ ପ୍ରେମର ପୂଜାରୀ ଓ ବଳିଦାନକାରୀର । ସେ ପ୍ରେମର ରାସ୍ତାରେ ଥିବା ବାଧାମାନଙ୍କୁ ଭାଙ୍ଗିବା, ରକ୍ଷଣଶୀଳ ସମାଜର ବନ୍ଧନକୁ ଅସ୍ୱୀକାର କରିବା ସହ ପ୍ରତିକୂଳ ପରିସ୍ଥିତିରେ ବି ପ୍ରେମର ଝଣ୍ଡାକୁ ହାତରୁ ତଳେ ପଡ଼ିବାକୁ ଦେଇନାହାଁନ୍ତି । ସେ ଦୃଷ୍ଟିରୁ ଦେଖିଲେ ଭାଲେଣ୍ଟାଇନ ଡ଼େ ପ୍ରେମର ନିରୀହ ଓ ନିର୍ଭୀକ ପୂଜାରୀଙ୍କ ସ୍ମୃତି ଓ ସମ୍ମାନର ଦିନ । ଏ ଦୃଷ୍ଟିକୋଣରୁ ଦେଖିଲେ, ଭାଲେଣ୍ଟାଇନ ଡେ ପ୍ରେମ କରିବାର ଅଧିକାର ସପକ୍ଷରେ ଓକିଲାତି କରୁଥିବା ବୟସ୍କ ବୁଦ୍ଧିଜୀବୀ ଏବଂ ଅଭିଭାବକମାନଙ୍କପାଇଁ ସଂକଳ୍ପର ଦିବସ । ପ୍ରେମ ଓ ପ୍ରେମୀମାନଙ୍କ ପ୍ରତି ନିଜର ଶୁଭେଚ୍ଛା, ସମର୍ଥନ ଓ ସହଯୋଗ ଦର୍ଶାଇବାର ଏକ ପର୍ବ । କିନ୍ତୁ ସନ୍ଥ ଭାଲେଣ୍ଟାଇନଙ୍କ ପ୍ରେମ ପ୍ରତି ପ୍ରତିବଦ୍ଧତା ଓ ବଳିଦାନ, ବଜାର ପାଇଁ କିଛି ଅର୍ଥ ରଖେନା ଠିକ୍ ଯେମିତି ଏହାର ବିରୋଧୀମାନଙ୍କର ମଧ୍ୟ ସଭ୍ୟତା ଓ ସଂସ୍କୃତି ପରି ମହତ୍ତର ବିଭବ ସହ କୌଣସି ସମ୍ପର୍କ ନାହିଁ । ଉଭୟ ପକ୍ଷ ହେଲେ ଅତିବାଦୀ, ନିଜ ନିଜ ଢଙ୍ଗରେ ରୁଢ଼ିବାଦୀ ଓ ଅଗଣତାନ୍ତ୍ରିକ ।

ଜଗତୀକରଣ ଓ ଭୂବଜାରୀକରଣ ସହ ଭାଲେଣ୍ଟାଇନ ଡେ'ର ମଞ୍ଜି ବିଭିନ୍ନ ଦେଶର ମାଟିରେ ବିଞ୍ଚି ହେଇଛି । ଦେଶୀ-ବିଦେଶୀ କମ୍ପାନୀ ନିଜ ଉତ୍ପାଦନ ଓ ସେବାର ବିକ୍ରି ଓ ମୁନାଫା ପାଇଁ ନୂଆ ନୂଆ ଫନ୍ଦିଫିକରର ଅନ୍ୱେଷଣ ସହ ଭି-ଡେ' ର ରାଜଯୋଟକ । ପ୍ରେମ ମୁନାଫା ଲୁଟରେ ବଳିପଡ଼ିଗଲା । ରାଜୀବ ଗାନ୍ଧୀଙ୍କ ବିଜ୍ଞାନ ଓ ପ୍ରଯୁକ୍ତିର ଯୁଗରେ ଏହା ଚେର ଧରିଥିଲା କିନ୍ତୁ ତାଳପତ୍ର କଅଁଳିଲା ନରସିଂହ ରାଓଙ୍କ ଶାସନ କାଳରେ । ରକ୍ଷଣଶୀଳ ବ୍ରାହ୍ମଣବାଦକୁ ହିନ୍ଦୁଧର୍ମର ପୋଷାକ ପିନ୍ଧାଉଥିବା ଭାଜପା ସ୍ୱଦେଶୀ ସ୍ଲୋଗାନ ଦେଇ କ୍ଷମତାକୁ ଆସିଲା ପରେ, ତାହା ଫୁଲ ହେଇ ଫୁଟିଲା । ସ୍ୱଦେଶୀର ସ୍ଲୋଗାନ ବିପରୀତରେ ଯାଇ ଆକ୍ରାତ୍ମକ ଆର୍ଥିକ ସଂସ୍କାର କରି 'ଭାଜପା' ବିଦେଶୀ କମ୍ପାନୀ / ବିଦେଶୀ ଉତ୍ପାଦନ / ପ୍ରଯୁକ୍ତିକୁ ଡାକି ଆଣିଲା । ତା ସହ ସ୍ୱାଭାବିକ ଭାବରେ ବିଦେଶୀ ସଂସ୍କୃତି । ତାକୁ ଶିଖରକୁ ପହଞ୍ଚାଇବା ଲାଗି ଏବେ ଲାଗି ପଡ଼ିଛନ୍ତି ବିଶ୍ୱ ବ୍ୟାଙ୍କର ମୁନ୍‌ସି ମନମୋହନ । ହାତରେ ପୁଞ୍ଜି ଓ ପ୍ରଯୁକ୍ତିର ଯାଦୁମଲମ ।

ସେ ସଂସ୍କୃତିର ଦିଇଟି ଦିଗ ରହିଛି । ଗୋଟିଏ ପଟେ ସାଂସ୍କୃତିକ ବଜାରବାଦ-ସାମ୍ରାଜ୍ୟବାଦ, ଯାହା ବଜାରୀ ଜିନିଷ ବିକ୍ରିର ଫନ୍ଦିଫିକର ସହ ନାରୀ-ପୁରୁଷ ସମ୍ପର୍କରେ ଥିବା ଦୃଶ୍ୟ (ବାହ୍ୟ) ରକ୍ଷଣଶୀଳତାକୁ କିଛିଟା ଆକ୍ରମଣ କରେ । ନାରୀକୁ ଓ ସାମଗ୍ରିକ ଭାବେ ମଣିଷକୁ ବଜାରୀ ବା ସମ୍ପୂର୍ଣ୍ଣ ଭାବରେ ଉପଭୋକ୍ତାରେ ପରିଣତ କରିବା ପାଇଁ

ନାରୀର ବାହ୍ୟ ସ୍ୱାଧୀନତା (ଘରୁ ପାଦ କାଢ଼ିବା, କାମ ପାଇଁ ଯିବା, ବଜାରରେ କିଣାବିକା, ଅଳ୍ପ କପଡ଼ା ପିନ୍ଧିବା, ନାରୀ ନିଜେ ପଣ୍ୟ ହେବା, ସବୁ ରକମ ସାମଗ୍ରୀ ନାରୀ ମାଧ୍ୟମରେ କିଣେଇବା / ବିକେଇବା, ପାର୍ଟି ଓ ଡ଼ିସ୍କୋ ପାଇଁ ବିଳମ୍ବିତ ରାତିରେ ଫେରିବା ଆଦି) ର ଓକିଲାତି କରେ। ଅବଶ୍ୟ ନାରୀ-ପୁରୁଷ ଭିତରେ ଥିବା ଅସଲ ବିଷମତା, ସାମାଜିକ-ଧାର୍ମିକ ପରିସରରେ ଥିବା ନାରୀ ବିରୋଧୀ ପରମ୍ପରା ଓ ବ୍ୟବସ୍ଥାକୁ ତାହା ମୋଟେ ପ୍ରଶ୍ନ କରେନାହିଁ। ସେ କରୱାଚୌଥ ହେଉ କି ସାବିତ୍ରୀ ବ୍ରତ ପାଇଁ ବଜାରୀ ସାମଗ୍ରୀ ତିଆରେ ଓ ବିକ୍ରି କରେ। ଦୂରଦର୍ଶନର ସିରିଏଲରେ ଏସବୁକୁ ଭାରତୀୟ ସଂସ୍କୃତିର ଏକ ମହନୀୟ ବିଭବ ଭାବେ ପେଶ୍ କରାଯାଏ। ସେଥିପାଇଁ ତ ଅଛନ୍ତି ଜିତେନ୍ଦ୍ର ତନୟା ଏକତା କପୁର। କ୍ୟୁଁ କି ଶାଶ୍ ଭି କଭି ବହୂ ଥି।

ଏ ପ୍ରକ୍ରିୟାରେ ନାରୀକୁ ମିଳୁଥିବା ବାହ୍ୟ ସ୍ୱାଧୀନତାକୁ ରକ୍ଷଣଶୀଳ ବ୍ରାହ୍ମଣବାଦୀ ଓ ମୁସଲିମ ମୌଳବାଦୀ ଏବଂ ସେ ଧର୍ମର ଧାର୍ମିକ ଓ ସାଂସ୍କୃତିକ ସଙ୍ଗଠନ ଗ୍ରହଣ କରିପାରୁନାହିଁ। ତାକୁ ଲାଗୁଛି ପରିବାର ଓ ସମାଜରେ ଥିବା ପୁରୁଷ ପ୍ରାଧାନ୍ୟତାକୁ ଏହା କ୍ଷୁଣ୍ଣ କରୁଛି। ମହିଳାଙ୍କୁ ବେଶ୍ୟା, ଦାସୀ ଓ ନାମକୁ ମାତ୍ର ଦେବୀ ଭିତରେ ବନ୍ଦୀ କରି ରଖିବାକୁ ଚାହୁଁଥିବା ଓ ନାରୀକୁ ଠିକ୍ ତା ଭଳି ଏକ ମଣିଷ ଭାବରେ ଗ୍ରହଣ କରିବାକୁ ଚାହୁଁନଥିବା ଏଇ ଶକ୍ତି ଓ ତତ୍ତ୍ୱଗୁଡ଼ିକ ନାରୀର ଏଇ ତଥାକଥିତ ସ୍ୱାଧୀନତା (ବାହ୍ୟ)କୁ ମଧ୍ୟ ସହିପାରୁନାହିଁ। ତେଣୁ ତାର ରକ୍ଷଣଶୀଳ ପ୍ରତିକ୍ରିୟାର ହିଂସାତ୍ମକ ସ୍ୱରୂପ ଦେଖିବାକୁ ମିଳୁଛି। ତାକୁ ଗୋଟିଏ ଶବ୍ଦରେ କହିଲେ, ଧାର୍ମିକ-ସାଂସ୍କୃତିକ ମୌଳବାଦ (ସାଂସ୍କୃତିକ ରାଷ୍ଟ୍ରବାଦ)। ତାର ଅଭିବ୍ୟକ୍ତି ଗୁଡ଼ିକ ହେଲା - ହେପ୍‌ପି ନିଉ ୟର୍ ବା ଭାଲେଣ୍ଟାଇନ ଡେ ରେ ହେଉଥିବା ପାର୍ଟିରେ ଯାଇ ଭଙ୍ଗାରୁଜା, ମାଡ଼ଧର କରିବା, ଯୁବକ-ଯୁବତୀଙ୍କୁ ଶାରୀରିକ ଆକ୍ରମଣ, ରେଗିଙ୍ଗ୍ କରିବା, ପ୍ରେମୀ ଯୁଗଳଙ୍କୁ ଜବରଦସ୍ତ ରାକ୍ଷୀ ପିନ୍ଧିବା ପାଇଁ ବାଧ କରିବା, ଦୋକାନ ଭାଙ୍ଗିବା। ସାଂସ୍କୃତିକ ମୌଳବାଦ (ରାଷ୍ଟ୍ରବାଦ ମଧ୍ୟ) କିନ୍ତୁ ସାଂସ୍କୃତିକ ସମାଜବାଦକୁ ଓ ତାର ବଜାରୀ ଶକ୍ତିକୁ ସାମଗ୍ରିକ ଭାବରେ ନୁହେଁ କେବଳ ତାର କେତୋଟି ବାହ୍ୟ ରୂପକୁ ବିରୋଧ କରେ। ତାର କାରଣ ହେଲା - ଏଇ ବଜାରୀ ଶକ୍ତି ତାକୁ ପ୍ରଯୁକ୍ତିର ସୁଖ ଓ ବିଳାସର ବିବିଧ ଅବସର ଦେଉଛି। ଆମେରିକା ଓ ଇଉରୋପର ନାଗରିକ ସହ ତାଳ ଦେଇ ବାକି ଭାରତୀୟଙ୍କଠୁ ଶ୍ରେଷ୍ଠତର ହେବାର ଅହଂକୁ ଚରିତାର୍ଥ କରିବାର ଅବସର ଜୁଟାଉଛି ଏଇ ବଜାର। ଏ ପ୍ରକ୍ରିୟା ଯୋଗୁଁ ହେଉଥିବା ମୁନାଫାରେ ବି ତାର ଏକ ଭାଗ ରହିଛି। ସାମ୍ରାଜ୍ୟବାଦକୁ ବା ନବ୍ୟ ଉପନିବେଶବାଦ ନାଁରେ ହେଉଥିବା ଆକ୍ରାମକ ପୁଞ୍ଜିବାଦକୁ ବିରୋଧ ନ କରି, ସେ ଅନୁରୂପ ବିକାଶ ପଦ୍ଧତିକୁ ପ୍ରଶ୍ନ ନ କରି ତା ସହ ଆସୁଥିବା ସଂସ୍କୃତିକୁ ଅଟକେଇ ହେବନାହିଁ। କିନ୍ତୁ ଧାର୍ମିକ-ସାଂସ୍କୃତିକ ମୌଳବାଦ / ସଂକୀର୍ଣ୍ଣ

ରାଷ୍ଟ୍ରବାଦର ଝଣ୍ଡା ଧରିଥିବା ଏଇ ରକ୍ଷଣଶୀଳ ଶକ୍ତିର ହିଂସାତ୍ମକ ପ୍ରତିକ୍ରିୟା ଦ୍ୱାରା ତିନୋଟି ଉଦ୍ଦେଶ୍ୟ ସାଧିତ ହେଉଛି ।

(୧) ସ୍ୱଦେଶୀ ପ୍ରୀତି ଥିବା ଜନସାଧାରଣ ସଂସ୍କୃତି ନାଁରେ ସ୍ୱଦେଶୀ ତଥା ସେଇ ସ୍ଲୋଗାନ ସହ ନିଜ ସ୍ୱାର୍ଥ ଦେଖୁଥିବା ରାଷ୍ଟ୍ରୀୟ ପୁଞ୍ଜିପତି, ଦେଶୀ ବ୍ୟବସାୟୀଙ୍କୁ ସଂଘ ପରିବାର ନିଜ ସହ ଯୋଡ଼ି ରଖିବାରେ କିଛିଟା ସଫଳ ହେଉଛି । ତାର ଲାଭ ନିର୍ବାଚନରେ ଭାଜପା ଉଠାଉଛି ।

(୨) ରକ୍ଷଣଶୀଳ ବ୍ରାହ୍ମଣବାଦୀ ସମର୍ଥକଙ୍କୁ ସଂଘ ପରିବାର ଓ ଶିବ ସେନା ଏବଂ ଧର୍ମ ଭୀରୁ ପଛୁଆ ମୁସଲିମଙ୍କୁ ସିମି ଓ ଜମାତେ-ଇ-ଇସଲାମ ନିଜ ସହ ଯୋଡ଼ି ରଖିବାରେ ସମର୍ଥ ହେଉଛନ୍ତି ।

(୩) ନିଜର ପୁରୁଷବାଦୀ-ସାମନ୍ତବାଦୀ ଅହଂରୁ ପ୍ରେରିତ ଆକ୍ରୋଶର ପ୍ରତିଫଳନ ଜନିତ ଆତ୍ମସନ୍ତୁଷ୍ଟି ।

ଏଇ ମୌଳବାଦୀ ହିଂସା ପଛରେ ଥିବା ଲୋକେ ହେଲେ ମଧ୍ୟବିତ୍ତ ଶ୍ରେଣୀର । ଯଦିଓ ହିଂସାରେ ସବୁବର୍ଗ, ବିଶେଷ କରି ତଳ ବର୍ଗର ଲୋକେ ନିଜ ଅଜ୍ଞାନତାବଶତଃ ବା ଏଇ ଶକ୍ତି ଓ ତଦ୍ୱାରା ହେଉଥିବା ପ୍ରଚାରରେ ପ୍ରଭାବିତ ହେଇ ଭାଗ ନେଇଥାନ୍ତି । ମାତ୍ର ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ ପାଇଁ ବଡ଼ ସମସ୍ୟା ହେଲା, ପରିବାରର ନୂତନ ପିଢ଼ୀ ତାଙ୍କ କଥା ମାନିବାକୁ ପ୍ରସ୍ତୁତ ନୁହଁନ୍ତି । ସେ ଦୃଷ୍ଟିରୁ ବ୍ରାହ୍ମଣବାଦୀ ଉଚ୍ଚ ମଧ୍ୟବିତ୍ତ, ଦେଶୀ ପୁଞ୍ଜିପତି, ପ୍ରବାସୀ ଭାରତୀୟମାନେ ପୁଅ-ଝିଅ ପ୍ରେମକୁ ନେଇ ଓ ପରିବାର ନାମକ ଅନୁଷ୍ଠାନରେ ଆସୁଥିବା ପରିବର୍ତ୍ତନକୁ ନେଇ ଅଜବ ଦ୍ୱନ୍ଦ୍ୱର ଶିକାର ହେଉଛନ୍ତି । ସେମାନେ ଗୋଟିଏ ପଟରେ ପ୍ରଯୁକ୍ତିର ସୁଖ ଭୋଗିବେ ଓ ସେ ଜନିତ ବ୍ୟବସାୟରେ ରହିବେ ମାତ୍ର ଅନ୍ୟ ପଟରେ ତା ସହ ଯୋଡ଼ି ହେଇଥିବା ସଂସ୍କୃତି, ତାଙ୍କ ତଥାକଥିତ ଆଦର୍ଶ ପରିବାରକୁ, ନାରୀ-ପୁରୁଷ ସମ୍ପର୍କରେ ଥିବା ଆରୋପିତ ଶୃଙ୍ଖଳକୁ ପ୍ରଭାବିତ ନକରୁ ବୋଲି ଚାହିଁବେ । ଏହା ଗୋଟିଏ ରକମର 'ଅସ୍ମିତା ସଂକଟ' । ତାର ପ୍ରତିଫଳନ ଆମେ ଜାକି ଶ୍ରଫ୍ ଅଭିନୀତ 'ୟାଦେଁ', ଶାହାରୁଖ ଅଭିନୀତ 'ପରଦେଶ', 'ଦିଲବାଲେ ଦୁଲ୍‌ହନିଆଁ ଲେ ଜାଏଙ୍ଗେ', 'କୁଛ୍ କୁଛ୍ ହୋତା ହେ', ଅକ୍ଷୟ ଖାନ୍ନା ଅଭିନୀତ 'ଆ ଅବ୍ ଲୌଟ ଚେଲେଁ' ପରି ସିନେମାରେ ଦେଖିପାରିବା । ସେ ସିନେମା ଗୁଡ଼ିକରେ ପୁଅ-ଝିଅ ବା ନାରୀ-ପୁରୁଷ ସମ୍ପର୍କରେ ପରିବାର ଓ ଅଭିଭାବକମାନଙ୍କର ଭୂମିକାକୁ ନେଇ ଉଚ୍ଚ ମଧ୍ୟବିତ୍ତ ପରିବାରରେ ହେଉଥିବା ଦ୍ୱନ୍ଦ୍ୱ ସାମ୍ନାକୁ ଆସୁଛି । ତଥାକଥିତ ଉପଭୋଗଜନିତ ପ୍ରକ୍ରିୟାରୁ ଆସୁଥିବା ବାହ୍ୟ ସ୍ୱାଧୀନତାକୁ ନା ସେମାନେ ଗ୍ରହଣ କରିପାରୁଛନ୍ତି ନା ବାନ୍ତି କରିପାରୁଛନ୍ତି ।

ଏଇ ପରିପ୍ରେକ୍ଷୀରେ ଭାରତୀୟ ସମାଜ, ପୁଅଝିଅ ପ୍ରେମକୁ ନେଇ କ'ଣ ଚିନ୍ତା କରେ ସେକଥା ସମ୍ୟକ ଆଲୋଚନା କରିବା । ଆଜି ବି ଆମ ସମାଜରେ ପ୍ରେମ ବିରୋଧରେ ଉନ୍ମାଦନାଭରା ପରିବେଶ ଅଛି । ପ୍ରେମ ଓ ପ୍ରେମୀଙ୍କ ସାମ୍ନାରେ କିସମ କିସମର ବାଧା / ବନ୍ଧନ / ପାଚେରୀ ରହିଛି । ବିପଦ ଓ ପହରାଦାରୀ ଭିତରେ ପ୍ରେମ । ପ୍ରେମ ଜନିତ ସମ୍ପର୍କ ସହ ଏକ ସାଥେ ଜୀବନ ବଞ୍ଚିବାର ନିଷ୍ପତ୍ତି କେବଳ ସୁଦୂର ମଫସଲରେ ନୁହେଁ, ସହର ଗୁଡ଼ିକରେ ମଧ୍ୟ ପାପ ଓ ଅପରାଧ ବୋଲି ବିଚାର କରାଯାଉଛି । ଅନେକ ସମୟରେ ତାର ଦଣ୍ଡ ମୃତ୍ୟୁ ନ ହେଲେ ପ୍ରେମ ଜନିତ ବିଫଳତାରୁ ଆତ୍ମହତ୍ୟା । ଜାତି, ଶ୍ରେଣୀ, ଇଜ୍ଜତ ଓ ପରମ୍ପରା ନାଁରେ ପ୍ରେମୀଯୁଗଳଙ୍କ ବଳି ଚଢ଼ାଯାଉଛି । ପୁରୁଷବାଦର ହୁଙ୍କାର, ବଳାତ୍କାର, ନହେଲେ ଝିଅ ଉପରେ ଏସିଡ୍‌ମାଡ଼ ଜନିତ ଜୋରଜବରଦସ୍ତି । ଏଯାଏଁ ବିବାହ ଭଳି ଅନୁଷ୍ଠାନରେ ଝିଅର ଇଚ୍ଛାକୁ ସ୍ୱୀକୃତି ମିଳିନାହିଁ ।

ସେ ଯାହାହେଉ ପ୍ରେମ ତ ପ୍ରେମ । ମଣିଷ ରହିଛି ମାନେ ପ୍ରେମ ରହିବ । ସେଥିପାଇଁ କାହିଁ କେତେକାଳରୁ ପ୍ରେମୀଯୁଗଳଙ୍କୁ ମିଳୁଥିବା ଧମକ, ପହରାଦାରୀ, ଫତଓ୍ୱା, ବାସନ୍ଦ ପ୍ରେମକୁ ମାରି ପାରିନାହିଁ । ମଜନୁ ନିଜ ସମୟରେ ରାଜସତ୍ତାକୁ ଚ୍ୟାଲେଞ୍ଜ ଦେବାର ଦୁଃସାହସ ଦେଖେଇଥିଲା । ଏଠି ମନେପଡୁଛି ମିର୍ଜା ଗାଲିବଙ୍କ ଏକ ପଦ - "ରଗୋମେଁ ଦୌଡ଼୍‌ନେ-ଫିରନେ କି ହମ୍ ନହି କାୟଲ, ଜୋ ଆଖୋଁ ହିଁ ସେ ନା ଟପ୍‌କେ ଓ ଲହୁ କ୍ୟା ହେ ।" ନାରୀ ପୁରୁଷର ସ୍ୱାଭାବିକ ସମ୍ପର୍କ, ଆବେଗ, ଉଦ୍‌ବେଳନକୁ ନେଇ ବଜାର ପରସୁଥିବା ବଜାରୀ ସଂସ୍କୃତି ଯେମିତି ତେଜ୍ୟ ଠିକ୍ ସେମିତି ଜାତି, ଶ୍ରେଣୀ, ଇଜ୍ଜତ ଓ ପରମ୍ପରା ନାଁରେ ପ୍ରେମର ଗଳାରୋଧ ସେମିତି ଗର୍ହିତ କାର୍ଯ୍ୟ । ଅଯଥା ତର୍କ, ଧମକ, ଲାଠି ଓ ପଶୁବଳର ବ୍ୟବହାର ମାଧ୍ୟମରେ ନାରୀ-ପୁରୁଷ ସମ୍ପର୍କଜନିତ ମାନବିକ ଅଧିକାରକୁ ସଙ୍କୁଚିତ କରିବାକୁ ଏଇ ମୌଳବାଦୀଙ୍କୁ କିଏ ଅଧିକାର ଦେଇଛି ? ଏହା ମାନବାଧିକାର ଅପହରଣ ଓ ଲୋକତାନ୍ତ୍ରିକ ମୂଲ୍ୟର ସର୍ବନାଶ ପାଇଁ ରାସ୍ତା । ଅବଶ୍ୟ ଧର୍ମ ଓ ସଂସ୍କୃତିର ଆତ୍ମଘୋଷିତ ଏଇ ସୈନ୍ୟମାନେ କେବେ ବି ଗଣତାନ୍ତ୍ରିକ ମୂଲ୍ୟବୋଧର ସମର୍ଥକ ନଥିଲେ । ଯିଏ ନିଜ ପରିବାରରେ ଗଣତନ୍ତ୍ରକୁ ସ୍ୱେଚ୍ଛାଚାର ମନେକରେ, ଅଭିଭାବକଙ୍କୁ ପ୍ରଶ୍ନ କରିବାଟା ଅପମାନ ମନେକରେ, ନାରୀର ଇଚ୍ଛା ଜାହିରକୁ ପୁରୁଷତ୍ୱ ପ୍ରତି ଚେଲେଞ୍ଜ ମନେକରେ, ନାରୀକୁ ଭ୍ରୂଣ ଅବସ୍ଥାରୁ ମାରି ଦେବା ଲାଗି ପ୍ରଯୁକ୍ତି ବିଦ୍ୟାର ସାହାଯ୍ୟ ନିଏ, ଯୌତୁକ ଓ ସତୀପ୍ରଥା ସପକ୍ଷରେ ଯୁକ୍ତି କରେ, ବିଧବା ବିବାହକୁ ବିରୋଧ କରେ, ସେ କେବେ ଗଣତନ୍ତ କି ସମତାର ପକ୍ଷରେ ନ ଥିଲା କି ଆଜି ବି ନାହିଁ । ଏହା ମୌଳବାଦୀ ସଂଘ ପରିବାର କି ଶିବସେନା ପାଇଁ ଯେତିକି ପ୍ରଯୁଜ୍ୟ, ପରଦାପ୍ରଥା, ବହୁ ବିବାହ ପ୍ରଥା, ନାରୀ ବିରୋଧୀ ତଲାକ ବ୍ୟବସ୍ଥା ଓ ନାରୀର ମସଜିଦ ପ୍ରବେଶକୁ ବିରୋଧ କରୁଥିବା ମୌଳବାଦୀ ଇସଲାମୀୟ ସଙ୍ଗଠନ ପାଇଁ ମଧ୍ୟ ସେତିକି ପ୍ରଯୁଜ୍ୟ ।

ଏଇ ଲୋକେ ଭାଲେଣ୍ଟାଇନ ଡେ'ର ବିରୋଧ ପ୍ରଦର୍ଶନରେ ବବାଲ କରୁଛନ୍ତି। କୋଉଠି ପୁଅ-ଝିଅ ମୁହଁରେ କଳା ବୋଳି ଦେଉଛନ୍ତି, କୋଉଠି ବିଚ୍ ରାସ୍ତାରେ ପ୍ୟାରେଡ଼ କରାଉଛନ୍ତି, ନାକ ରଗଡ଼ଉଛନ୍ତି। ପାର୍କ, ରେଷ୍ଟୋରାଁ, ହୋଟେଲରେ ପଶି ହଙ୍ଗାମା କରୁଛନ୍ତି। ଏହା ଭା.ଡେ.ର ବିରୋଧରେ ସୀମିତ ନୁହେଁ। ପୁରୁଷବାଦ, ଧାର୍ମିକ ମୌଳବାଦ ବିରୋଧରେ ଓ ନ୍ୟାୟ-ସମତା ସପକ୍ଷରେ ଯୁକ୍ତି କରୁଥିବା ଲେଖକ, ଶିଳ୍ପୀ, ସିନେ-ନିର୍ଦ୍ଦେଶକ, କଳାକାର, କବି, ନାଟ୍ୟକାରମାନଙ୍କ ବିରୋଧରେ ମଧ୍ୟ ପ୍ରଦର୍ଶନ ହେଉଛି, ହିଂସା ହେଉଛି। ବ୍ୟକ୍ତି ଓ ସମୁଦାୟର ଅଭିବ୍ୟକ୍ତିକ ସ୍ୱାଧୀନତାକୁ କେବେ ସଂଖ୍ୟାଗରିଷ୍ଠର ଇମୋସନ ନାଁରେ ତ କେବେ ସଂଖ୍ୟାଲଘୁର ଆବେଗ ନାଁରେ ଅସ୍ୱୀକାର କରାଯାଉଛି। ଭାରତ ଭଳି ଗଣତନ୍ତ୍ର ଓ ଧର୍ମନିରପେକ୍ଷ ରାଷ୍ଟ୍ରରେ ଏସବୁ ଗତିବିଧି ଅସାମ୍ବିଧାନିକ ଓ ବେଆଇନ ଏବଂ ଏ ବାବଦରେ ରାଷ୍ଟ୍ରତନ୍ତ୍ର ଦାୟିତ୍ୱ ନିର୍ବାହ କରିବା ବିଧେୟ। ଏ ପରିପ୍ରେକ୍ଷୀରେ ରାଷ୍ଟ୍ରର ଭୂମିକା ଉପରେ ପ୍ରଶ୍ନ ଆସୁଛି। ଦୁର୍ଭାଗ୍ୟର କଥା ଯେ ଏଭଳି ଘଟଣାରେ ପ୍ରଶାସନ ଦେଖି ନ ଦେଖିଲା ପରି ଚୁପ୍ ରହୁଛି। ପ୍ରଶାସନର ନୀରବତା କିମ୍ବା ପରୋକ୍ଷ ସମର୍ଥନରେ ସାମାଜିକ-ଧାର୍ମିକ, ସାମ୍ପ୍ରଦାୟିକ, ଆଞ୍ଚଳିକ ତତ୍ତ୍ୱଗୁଡ଼ିକ କେତେବେଳେ ବ୍ୟକ୍ତିର ତ କେବେ ଏକ ସମୁଦାୟର ଅଭିବ୍ୟକ୍ତି ଜନିତକୁ ଅଧିକାର ଅସ୍ୱୀକାର କରୁଛନ୍ତି। ଗଣତନ୍ତ୍ର ଅନେକ ସମୟରେ ସଂଖ୍ୟାତନ୍ତ୍ର ବା ମେଜେରେଟେରିଆନିଜିମ୍ ର ରୂପ ନେଉଛି ଏବଂ ସେଠି ନ୍ୟାୟ-ଅନ୍ୟାୟ, ଭୁଲ-ଠିକ୍‌ର ପରିଭାଷା ମୁଣ୍ଡ ଗଣତିରେ ହେଉଛି। ଅର୍ଥତନ୍ତ୍ର, ପ୍ରଚାରତନ୍ତ୍ର ମାଧ୍ୟମରେ କେତେବେଳେ ବଜାରୀଶକ୍ତି ସପକ୍ଷରେ ତ କେତେବେଳେ ଧାର୍ମିକ-ମୌଳବାଦୀଙ୍କ ସପକ୍ଷରେ ଜନମତକୁ ତିଆରି କରାଯାଇପାରୁଛି। 'ଭୋଟବ୍ୟାଙ୍କ ରାଜନୀତି'ରେ ସଂଖ୍ୟାଗରିଷ୍ଠ ବା ସଂଖ୍ୟାଲଘୁ ଆବେଗ, ଭାବନା ନାଁରେ ଗଣତନ୍ତ୍ର, ମାନବିକ ଅଧିକାର ଓ ସ୍ୱାଧୀନତାର ହନନକୁ ଯଥାର୍ଥର ପୋଷାକ ପିନ୍ଧେଇ ଦିଆଯାଇପାରୁଛି। ଏଥିପାଇଁ ଶାନ୍ତି ଶୃଙ୍ଖଳା ରକ୍ଷା, ମାନବିକ ଓ ଗଣତାନ୍ତ୍ରିକ ଅଧିକାରର ସୁରକ୍ଷା ପାଇଁ ଥିବା ପୁଲିସତନ୍ତ୍ର ଓ ସୁରକ୍ଷାବଳର ନୀରବତା (ପରୋକ୍ଷ ବା ନୀରବ ସମର୍ଥନ) ଏଇ ମୌଳବାଦୀ-ସାମାଜିକ-ରାଜନୈତିକ ଗୋଷ୍ଠୀ ଓ ତତ୍ତ୍ୱଙ୍କୁ ସୁହାଉଛି। ରାଷ୍ଟ୍ରତନ୍ତ୍ରର ସମର୍ଥନରେ ଅରାଜକତା ବ୍ୟାପୁଛି।

ଗୋଟିଏ ପଟେ ଭାରତୀୟ ରାଷ୍ଟ୍ରତନ୍ତ୍ର, 'ଜଗତୀକରଣ' ନାଁରେ ବଜାରକୁ ସମର୍ଥନ କରିବା ସହ ସାଂସ୍କୃତିକ ସାମ୍ରାଜ୍ୟବାଦକୁ ପ୍ରୋତ୍ସାହିତ କରୁଛି। ଅନ୍ୟପଟେ ବଜାରବାଦର କିଛି ବାହ୍ୟରୂପକୁ ବିରୋଧ କରୁଥିବା ମୌଳବାଦୀମାନଙ୍କ ପ୍ରତିକ୍ରିୟାଶୀଳ ହିଂସାକୁ ନିୟନ୍ତ୍ରିତ କରିବାରେ ଜାଣିଶୁଣି ଅବହେଳା କରୁଛି ବା ଅକ୍ଷମତା ପ୍ରକାଶ କରୁଛି। ଭାଲେଣ୍ଟାଇନ ଡେରେ ହିଂସାତ୍ମକ କାଣ୍ଡ କରୁଥିବା ଲୋକଙ୍କ କାଣ୍ଡକୁ ଆଇନଶୃଙ୍ଖଳାର ପ୍ରଶ୍ନ ଭାବରେ ଦେଖିବା ଉଚିତ। ଧାର୍ମିକ-ସାଂସ୍କୃତିକ ମୌଳବାଦୀମାନଙ୍କ ହିଂସାକୁ ଖୋଲା ଛୁଟ୍ ମିଳୁଥିବା ବେଳେ

ଜୀବନ ଜୀବିକା ତଥା ସ୍ୱାଭିମାନର ଜୀବନ ପାଇଁ ସ୍ୱର ଉତ୍ତୋଳନ କରୁଥିବା ଚାଷୀ-ଆଦିବାସୀ-ଶ୍ରମିକ-ଦଳିତଙ୍କ ଆନ୍ଦୋଳନକୁ ଆଇନ ଶୃଙ୍ଖଳାର ପ୍ରଶ୍ନ ଭାବେ ବିଚାରକରି ସରକାର ଦମନର ଅସ୍ତ୍ର ପ୍ରୟୋଗ କରୁଛି। ଅନ୍ୟପଟେ ଏଇ ସାଂସ୍କୃତିକ ମୌଳବାଦୀମାନେ ଇତିହାସ-ଦର୍ଶନ-କଳା-ସଂସ୍କୃତି ପରି ସମ୍ବେଦନଶୀଳ ଓ ଜଟିଳ ପ୍ରସଙ୍ଗରେ ମଧ୍ୟ ଦାଦାଗିରି ଦେଖାଉଛନ୍ତି ।

ପୁଣି ଆସିବା ମୂଳ ପ୍ରସଙ୍ଗକୁ। ଭାଲେଣ୍ଟାଇନ ଡ଼େ ର ବୈଶ୍ୱୀକରଣ ହେଇସାରିଛି। ଉପଭୋକ୍ତାବାଦୀ ବଜାରର ଅନ୍ୟ ଏକ ଉତ୍ପାଦ ହେଇ ସାରିଛି ଏଇ ଦିବସ। ଏହା ଆଗରୁ ଥିଲା ନଗରୀ-ମହାନଗରୀ ଭିତରେ ସୀମିତ, ଆଜି ତାହା ବଡ଼ ସହରର ଗଳି-ଉପଗଳି ଦେଇ ଗାଁକୁ ପହଞ୍ଚିଗଲାଣି। ଉଚ୍ଚ ଆର୍ଥିକ ଶ୍ରେଣୀରୁ ଉତୁରି ନିମ୍ନ ମଧ୍ୟବିତ୍ତଙ୍କ ପାଖକୁ ସଂକ୍ରମିତ ହେଇସାରିଲାଣି।

ରାଜତନ୍ତ୍ର, ସାମନ୍ତତନ୍ତ୍ର, ଜାତିବାଦ, ଧାର୍ମିକ ମୌଳବାଦ ଓ ଆଜିର ବଜାରବାଦର ହଜାର ଚେଷ୍ଟା ସତ୍ତ୍ୱେ 'ପ୍ରେମ' ମରିନାହିଁ। ମରିବ ନାହିଁ। ସଫଳ-ବିଫଳ, ଚର୍ଚ୍ଚିତ-ଅଣଚର୍ଚ୍ଚିତ, ଐତିହାସିକ-ମିଥ୍ ସମ୍ପର୍କିତ କାହାଣୀସମୂହ ଏହା ପ୍ରମାଣ କରିଆସିଛି। ଶିରି-ଫର୍‌ହାଦ୍, ସୋହ୍‌ନୀ-ମହିୱାଲ୍, ହୀର୍-ରାଂଝା, ପାରୋ-ଦେବଦାସ, ଲୈଲା-ମଜ୍‌ନୁ, କେଦାର-ଗୌରୀ ପରି ଚରିତ୍ରମାନେ ପ୍ରେମର ନିରୀହ ଅଥଚ ନିର୍ଭୀକ ଯୋଦ୍ଧା ଅଟନ୍ତି। ଜାତି-ବର୍ଣ୍ଣ-ବର୍ଗ-ଧର୍ମ ନିର୍ବିଶେଷରେ ସେମାନେ ମଣିଷର ପ୍ରେମକୁ, ମାନବିକତାକୁ, ନାରୀ-ପୁରୁଷର ଚିରନ୍ତନ ସ୍ୱାଭାବିକ ସମ୍ବନ୍ଧ/ଆବେଗ/ଭାବକୁ ମହିମାନ୍ୱିତ କରିଛନ୍ତି। ସଂସ୍କୃତିର ଏ ଅସଂସ୍କୃତ ପୋଲିସମାନଙ୍କୁ ଏ କଥା ବୁଝିବାକୁ ଆଉ କେତେ ଯୁଗ ଲାଗିବ କେଜାଣି ?

ଆଉ ଏକ ନିଷ୍ଠୁର ବିରୋଧାଭାସ ହେଲା - ଗୋଟିଏ ପଟେ ଅନାହାର, ଅର୍ଦ୍ଧାହାର, ଦାରିଦ୍ର୍ୟ, ବେକାରୀ, ବେରୋଜଗାରୀ, ନିରକ୍ଷରତା ଓ କୁପୋଷଣଜନିତ ଅସହାୟତାର ଅନ୍ଧାର ସହ ଯୁଝୁଥିବା ଏକ ବିରାଟସମୂହ ଓ ଅନ୍ୟପଟେ ମଣିଷରୂପୀ ଭୋଗୀଙ୍କ ସ୍ୱର୍ଗ ଯେଉଁଠି ଉପଭୋଗ ଲାଗି ଚକ୍‌ମକ୍ ବଜାର। ଏଇ ନିଷ୍ଠୁର ସତ୍ୟର ପଛରେ ରହିଛି ଶୋଷଣ ଓ ଲୁଟ୍‌ର ଐତିହାସିକ ପ୍ରକ୍ରିୟା। ଯାହା ପୁଞ୍ଜିବାଦୀ ବ୍ୟବସ୍ଥାରେ ଆହୁରି ଆକ୍ରମଣାତ୍ମକ ଓ ସମ୍ବେଦନଶୂନ୍ୟ ହୋଇଛି। ନୀତିହୀନ ଲୁଟ ଓ ବିବେକଶୂନ୍ୟ ମୁନାଫା ପାଇଁ କେତେ ଯେ ନୂଆ ଉତ୍ପାଦ ଓ ନୂଆ ଦିବସ ପାଳନ ହେବାରେ ଲାଗିଛି ତାର ଠିକଣା ନାହିଁ। ପ୍ରେମ ପାଇଁ, ବନ୍ଧୁତା ପାଇଁ, ମା ପାଇଁ, ବାପା ପାଇଁ, ଶିଶୁ ପାଇଁ, ମହିଳା ପାଇଁ ଗୋଟିଏ ଗୋଟିଏ ଦିବସର କି ଅର୍ଥ ? ପ୍ରେମ ପାଇଁ ବର୍ଷକୁ ଗୋଟିଏ ଦିନର କି ଅର୍ଥ। ପ୍ରେମ ପାଇଁ ଖରା କଣ, ବର୍ଷା କଣ, ଦିନ କଣ ରାତି କଣ। ସଚ୍ଚା ପ୍ରେମ ଲାଗି ଦାମୀ ଉପହାରର କି

ପ୍ରୟୋଜନ ? ପ୍ରେମୀମାନଙ୍କୁ ବୁଝିବାକୁ ହେବ ଯେ ସନ୍ଥ ଭାଲେଣ୍ଟାଇନ ପ୍ରେମର ପ୍ରତୀକ ହୋଇପାରନ୍ତି ମାତ୍ର ଭା-ଡେ ନୁହେଁ। ଦୈନନ୍ଦିନ ଜୀବନରେ ଆମେ କଣ ଏତେ ପ୍ରେମହୀନ, ବନ୍ଧୁତ୍ୱହୀନ ହେଇସାରିଛୁ ଯେ ତାପାଇଁ ବର୍ଷରେ ଗୋଟିଏ ଦିନ ଠିକ୍ କରିବାକୁ ପଡୁଛି। ଧନତନ୍ତ୍ରର ମୁଦ୍ରାସର୍ବସ୍ୱ ଜୀବନରେ ବିଶେଷକରି ନଗରୀ-ମହାନଗରୀରେ ଥିବା ଅର୍ଥପିପାସୁ, ଉପଭୋଗ ପିପାସୁ ତଥା ନୂଆ ଅର୍ଥତନ୍ତ୍ରରେ ହେଉଥିବା ନାରକୀୟ ଶୋଷଣ (ଅଳ୍ପ ଅର୍ଥରେ ବେଶୀ ସମୟ ଖଟାଇବା, ଶ୍ରମ ଆଇନର ଉଲଂଘନରେ ଘରୋଇ ସଂସ୍ଥା ଓ କମ୍ପାନୀର ପ୍ରବୀଣତା, ଆକାଶଛୁଆଁ ଦରଦାମ) ଯୋଗୁଁ ଫୁରସତ୍ ପାଉ ନଥିବା ଉଭୟ ଭୋଗୀ ଓ ଦୁଃଖୀମାନଙ୍କ ଜୀବନରେ ପ୍ରେମ, ସ୍ନେହ, ଆବେଗ ତଥା ସୁଖଦୁଃଖର କଥା ପାଇଁ ସମୟ ନାହିଁ। ପ୍ରେମର ଝରକୁ / ନଦୀକୁ କେଲେଣ୍ଡରରେ ବନ୍ଧା ପକାଇବା ବୋଧେ ଏମାନଙ୍କ ପାଇଁ ଏକ ଆବଶ୍ୟକତା ହେଇପଡ଼ିଛି।

ଏଇ 'ଡେ'ଗୁଡ଼ିକ ବଜାର ନାମକ ରୋଗର ଓ ପୁଞ୍ଜିବାଦୀ ଶୋଷଣର ଲକ୍ଷଣ, ମାତ୍ର ନିଜେ ରୋଗ ନୁହଁନ୍ତି। ଏ ରୋଗର ଚିକିତ୍ସା ଆବଶ୍ୟକ। ରୋଗ ସେତେବେଳେ ନିଜର ପ୍ରକୋପ ଦେଖାଇବାରେ ସକ୍ଷମ ହୁଏ, ଯେବେ ଆମ ଦେହ ଓ ମନରେ ଜୀବାଣୁକୁ ପ୍ରତିରୋଧ କରିବାର ଶକ୍ତି ଓ ଇଚ୍ଛା ଦୁର୍ବଳ ହେଇଯାଏ। ବୁଢ଼ା ହେଇଯିବା ନିଜେ କୌଣସି ରୋଗ ନୁହେଁ। ଅକ୍ଷମ ଓ ନିଷ୍କ୍ରିୟ ହେଇଯିବା ଅର୍ଥ ବୁଢ଼ା ହେଇଯିବା। ତାହା ଚରମ ବିନ୍ଦୁକୁ ପହଞ୍ଚିଲେ ମୃତ୍ୟୁ। ଏଇ ପ୍ରେକ୍ଷାପଟରେ ଆମେ ଭାଲେଣ୍ଟାଇନ ଡେକୁ ସମର୍ଥନ ବା ବିରୋଧର ଔଚିତ୍ୟକୁ ବିଚାରିବା ଠିକ୍ ହେବ। ଅସଲ ପ୍ରଶ୍ନ ହେଲା, ଆମର ନୂଆ ପିଢ଼ୀ ଭାଲେଣ୍ଟାଇନ ଡେ କୁ କାହିଁକି ଏତେ ଶୀଘ୍ର, ଏତେ ଆଗ୍ରହରେ ଗ୍ରହଣ କରିନେଲେ ଓ ସେଥିରେ ମାତିଗଲେ। ବୋଧେ ଏଇଥିପାଇଁ ଯେ ଆମ ସମାଜ ଜୀବନରୁ ପ୍ରେମକୁ ବେଦଖଲ କରିଦେଇଛି। ଏଠି ମନେପଡୁଛି ଓଡ଼ିଶାର ବରଗଡ଼ ଜିଲ୍ଲା ସୋହେଲାରେ ଘଟିଥିବା ଏକ ଘଟଣା। ୪ ଯୋଡ଼ି ପୁଅ-ଝିଅ ଗଛରେ ରସି ଲଗେଇ ଆତ୍ମହତ୍ୟା କଲେ। କାରଣ ହେଲା, ତାଙ୍କ ପ୍ରେମକୁ ସମାଜ ବିରୋଧ କରିବାର ଭୟ। ଆଉ ଏକ ଘଟଣା ମିରଟର। ତିନିଜଣ ଝିଅ ଏକା ସାଙ୍ଗରେ ଫେନ୍‌ରେ ଝୁଲିଗଲେ। କାରଣ ହେଲା ଯୌତୁକ ଦେବାର ସାମର୍ଥ୍ୟ ଅଭାବରୁ ବିବାହ ନ ହେଇ ପାରିବାର ଦୁଃଖ। ଆମେ ଓ ଆମର ପରମ୍ପରା ତାଙ୍କର ମନ ବୁଝିବାରେ ବିଫଳ ହେଲା। ଏଭଳି ସ୍ଥିତିରେ ଭାଲେଣ୍ଟାଇନ ଡେ ସେମାନଙ୍କ ଜୀବନରେ ଯଦି ପ୍ରେମ ପାଇଁ ଜାଗା ତିଆରୁଛି ତେବେ ସେମାନେ ତାକୁ ଗ୍ରହଣ କରିନେବା ଅସ୍ୱାଭାବିକ ନୁହେଁ।

ଆମେ ଆମ ସମାଜରେ ପ୍ରେମ ପାଇଁ ଯଦି ଯାଗା ନ ତିଆରୁ, ତେବେ କଣ ମଣିଷମାନେ ମନରୁ, ହୃଦୟରୁ ପ୍ରେମର ଇଚ୍ଛା ପୋଛି ଦେବେ ?

ତମ୍‌ଲାଗି ମୋ ପ୍ରେମ ଶାଳର ଅରଣ୍ୟ
କୁରାଢ଼ିରେ ଯେତେ ହାଣୁଥିବ
ସାଗୁଆ ଲହଲହ ପିକ ମେଲି
ସେତେ ଗଜୁରିବ । ('ପ୍ରେମଗୀତ' କବିତାରୁ)

ଭାଲେଣ୍ଟାଇନ ଡେ ପ୍ରତି ବିରୋଧ ବା ଆକ୍ରମଣ ତେବେ ଯାଇ ତାର୍କିକ ବା ଯୁକ୍ତିସିଦ୍ଧ ହେବ, ଯେବେ ଆମେ ପ୍ରେମ ଉପରେ, ନାରୀ-ପୁରୁଷର ସ୍ୱାଭାବିକ ସମ୍ପର୍କ, ସମ୍ବାଦ ଓ ସମ୍ବନ୍ଧ ଉପରେ ଥିବା ଅମାନବୀୟ ପହରାଦାରୀକୁ ଉଠେଇଦେବା । ମଣିଷର ଇଚ୍ଛାମାନଙ୍କୁ ସମ୍ମାନ ଦେବା । ପୁଅ-ଝିଅମାନଙ୍କ ନିଷ୍ପତ୍ତି ନେବାର କ୍ଷମତା ଉପରେ ବିଶ୍ୱାସ କରିବା । ଭାଲେଣ୍ଟାଇନ ଡେ'ର ଉପଭୋକ୍ତାବାଦୀ ସ୍ୱରୂପକୁ ବିରୋଧ ଯୁକ୍ତିଯୁକ୍ତ, ମାତ୍ର ତାକୁ ବିରୋଧ ନାଁରେ ପ୍ରେମର ବିରୋଧକୁ ସ୍ୱୀକାର କରାଯିବା ଉଚିତ ହେବନାହିଁ । ଏକଥା ଭୁଲିଯିବା ଠିକ୍ ନୁହେଁ ଯେ ପ୍ରେମ କରିବାର ସ୍ୱାଧୀନତା ବ୍ୟକ୍ତିକୁ ଅନ୍ୟ ମୋର୍ଚ୍ଚା ଗୁଡ଼ିକରେ ସ୍ୱାଧୀନ ହେବାରେ ସାହାଯ୍ୟ କରେ । ସ୍ୱାଧୀନତା ସପକ୍ଷରେ, ସ୍ୱାଧୀନ ଇଚ୍ଛା ସପକ୍ଷରେ, ପ୍ରେମ ହିଁ ସର୍ବନିମ୍ନ ପ୍ରତିବାଦର ରୂପ । ଜାତି, ଧର୍ମ, ବର୍ଗ, ବର୍ଣ୍ଣ ନିର୍ବିଶେଷରେ ମଣିଷଟିଏ ସହ ଯୋଡ଼ିହେବାର ଏକ ଉପଲବ୍ଧି ଦିଏ ପ୍ରେମ । ଏଠି ଓଡ଼ିଶାର ଅନ୍ୟତମ କବି କୁମାର ହସନ୍‌ଙ୍କ ଏକ ପଂକ୍ତି ମନେପଡ଼େ - "ମୃତ୍ୟୁକୁ ପଚାରି କଣ ଜୀବନ ବଞ୍ଚି ହୁଏ / ବାପାମାଙ୍କୁ ପଚାରି କଣ ପ୍ରେମ କରିହୁଏ ।" ମନେ ପଡୁଛି ମୁଗଲେ-ଇ-ଆଜମ୍‌ର ପଂକ୍ତି - "ପ୍ୟାର୍ କିଆ ତୋ ଡର୍‌ନା କ୍ୟା / ଘରୋଁ ତରଫ୍ ହେ ଉନ୍‌କା ନକାରା / ବନ୍ଦୋସେ ପର୍‌ଦା କର୍‌ନା କ୍ୟା ।" ଗାଲିବଙ୍କ ଏକ ପଂକ୍ତି - "ଐ ଇସ୍କ ନେହିଁ ଆସାନ / ମାନୋ ଏକ୍ ଆଗ୍ କି ଦରିଆ ହେ / ଔର୍ ଉସ୍‌ମେଁ ଡୁବ୍‌କେ ଯାନା ହେ ।"

ଏଠି ଅବଶ୍ୟ ଏକ ପ୍ରଶ୍ନ ଉଠିପାରେ - ଏଇ ଦରିଆର ଚରିତ୍ର ଓ ସ୍ୱରୂପ କଣ ? ସେଥିରେ ପ୍ରେମ କେତେ ? ପ୍ରତାରଣା କେତେ ? ତଥାକଥିତ ବୁଦ୍ଧିଜୀବୀଙ୍କ ଭାଷାରେ ଲଭ୍ ନା ଇନ୍‌ଫେଚୁଏସନ୍ ? ଏହାର ଉତ୍ତର ଖୋଜିବା ଦିଗରେ ଯୁବପିଢ଼ୀକୁ ଆମେ ସେତେବେଳେ ସାହାଯ୍ୟ କରିପାରିବା ଯେବେ ଆମେ ସେମାନଙ୍କ ସହ ବନ୍ଧୁତା ରଖିପାରିବା । ବନ୍ଧୁତାପୂର୍ଣ୍ଣ ସମ୍ବାଦ କରିପାରିବା । ବାପା-ମା'ମାନେ, ବଡ଼ଭାଇ ଓ ଭଉଣୀମାନେ ତାଙ୍କ ପୁଅଝିଅ, ସାନ ଭାଇଭଉଣୀମାନଙ୍କର ବନ୍ଧୁ ହୋଇପାରିବେ କି ? ଅଭିଭାବକମାନେ ବନ୍ଧୁର ଭୂମିକା ନେଇ ପାରିବାର ଚ୍ୟାଲେଞ୍ଜ ଗ୍ରହଣ କରନ୍ତୁ । କିନ୍ତୁ ତାଠୁ ଆହୁରି ବଡ଼ ଚ୍ୟାଲେଞ୍ଜ ହେଲା - ଜାତି, ଧର୍ମ, ବର୍ଗ, ଲିଙ୍ଗ ଊର୍ଦ୍ଧ୍ୱରେ ମଣିଷର ପ୍ରେମକୁ ଦେଖିପାରିବା । ମଣିଷର ପ୍ରେମକୁ ସ୍ୱୀକାର କରିବା ଅର୍ଥ ସବୁ ରକମର ବିଷମତା / ସଂକୀର୍ଣ୍ଣତାର ପ୍ରତିବାଦ କରିବା । ଏତେ ସହଜ ନୁହେଁ ଜାତି, ଧର୍ମ, ବର୍ଗ ଜନିତ ପୂର୍ବାଗ୍ରହ ଓ ଅଭିଭାବକତ୍ୱର ପରମ୍ପରାକୁ

ତ୍ୟାଗ କରିବା। ଆମ ସମାଜ ତଥା ପରିବାରକୁ ବଜାର ତଥା ସାଂସ୍କୃତିକ ମୌଳବାଦୀଙ୍କ କବ୍‌ଜାରୁ ଦୂରେଇ ରଖିବା ଲାଗି ଯାବତୀୟ ପୂର୍ବାଗ୍ରହରୁ ମୁକ୍ତ ହେବାକୁ ପଡ଼ିବ। ଦେଶରେ ସମାଜବାଦ, ଗଣତନ୍ତ୍ର ଓ ସମାଜରେ ନ୍ୟାୟ ଓ ସମତାର ବ୍ୟବସ୍ଥା ସ୍ଥାପିତ କରିବାକୁ ହେବ। ବିଶେଷ କରି ଜାତି ଓ ଧର୍ମର ସଂକୀର୍ଣ୍ଣତାକୁ ଏକ ସମୃଦ୍ଧ ମାନବବାଦୀ ପରମ୍ପରା ଓ ସଂସ୍କୃତିର ପ୍ରତିଷ୍ଠା ମାଧ୍ୟମରେ ପରାଜିତ କରିବାକୁ ହେବ। ଏଠି ଅଭିଭାବକମାନଙ୍କ ପ୍ରତି ଅଭିପ୍ରେତ ସଂସ୍କୃତର ଏକ ପଂକ୍ତି ମନେ ପକେଇଦେବା -

**ଲାଳୟେତ୍ ପଞ୍ଚବର୍ଷାଣି, ଦଶବର୍ଷାଣି ତାଡ଼ୟତେ।**
**ପ୍ରାପ୍ତେଷୁ ଷୋଡ଼ଶ ବର୍ଷେ, ପୁତ୍ରଂମିତ୍ର ବଦାଚରେତ୍॥**

ଅବଶ୍ୟ ଉଚ୍ଚାରଣ ଓ ଆଚରଣ ଭିତରେ କିଏ ବା ତାଳମେଳ ରଖୁଛି।

ସେ ଯାହେଉ ଗୋଟିଏ କଥା ଭୁଲିଗଲେ ଚଳିବ ନାହିଁ ଯେ 'ପ୍ରେମ' ସବୁକିଛି ନୁହେଁ। ସାହିରଙ୍କ ଏକ ପଂକ୍ତି ଏଠି ଉଦ୍ଧୃତିର ଅପେକ୍ଷା ରଖେ -

"ଭୂଖ୍ ଔର ପ୍ୟାସ୍ ସେ ମାରି ହୁଇ ଇସ୍ ଦୁନିଆଁ ମେ
ଇସ୍‌କ ହି ଏକ୍ ହକିକତ୍ ନହିଁ, କୁଛ୍ ଔର୍ ଭି ହେ।"



# ଆତଙ୍କବାଦରୁ ମୁକ୍ତିର ଅର୍ଥ ନୂଆ ସଭ୍ୟତାର ସ୍ୱପ୍ନ

ବମ୍ବେ ୨୬/୧୧ ଘଟଣା ପରେ ଦୁଇଟି ପ୍ରଶ୍ନ ଆମକୁ ଆନ୍ଦୋଳିତ କରୁଛି । ପ୍ରଥମଟି ହେଲା ଆକ୍ରମଣକାରୀମାନେ କ'ଣ ଚାହାଁନ୍ତି ? ଏ ପ୍ରଶ୍ନର ଆଉ ଏକ ପ୍ରସ୍ଥ ହେଲା ଯୁବକମାନଙ୍କୁ ସମୂହ ମରିବା ଓ ମାରିବା ପାଇଁ କାହିଁକି ପ୍ରସ୍ତୁତ ହୋଇଯାଉଛି ? ସେମାନଙ୍କୁ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଏ ଚରମ ସ୍ତରକୁ ନେବାରେ କାହିଁକି ସଫଳ ହେଉଛି ? ଦ୍ୱିତୀୟ ପ୍ରଶ୍ନ ହେଲା ଏହାର ସମାଧାନ କେମିତି ହେବ ?

ପ୍ରଥମ ପ୍ରଶ୍ନର ଉତ୍ତରରେ ହିଁ ରହିଛି ସମାଧାନର ସୂତ୍ର ।

ଆତଙ୍କବାଦ ଆଜି ବିଶ୍ୱସ୍ତରୀୟ ସମସ୍ୟା । ତା'ର ସମାଧାନ ପାଇଁ ଏକା ସାଙ୍ଗରେ ସ୍ଥାନୀୟ, ଜାତୀୟ, ମହାଦେଶୀୟ ଏବଂ ବିଶ୍ୱସ୍ତରରେ କାମ କରିବାକୁ ପଡ଼ିବ । ଏହି ଆତଙ୍କବାଦର ଏକ ସାମ୍ରାଜ୍ୟବାଦୀ ସ୍ୱରୂପ ରହିଛି । ଆତଙ୍କବାଦର ମୂଳରେ ରହିଲା ନିରଂକୁଶ କ୍ଷମତା ଓ ଦୁନିଆ ଯାକର ସଂପଦ ଉପରେ ଏକାଧିକାର ଦୁରାଗ୍ରହ । ଏ ଦୁରାଗ୍ରହ ଉପନିବେଶବାଦକୁ ଜନ୍ମ ଦେଇଛି । ଉପନିବେଶିକ ଆତଙ୍କକୁ ଆମେ ସଭିଏଁ ସାମ୍ନା କରିଛୁ ଓ କରୁଛୁ । ଦୁନିଆ ବିଶ୍ୱଯୁଦ୍ଧ ବେଳର ଆତଙ୍କ ଦେଖିଛି । ଜାପାନ ଆତ୍ମସମର୍ପଣ କଲାପରେ ବି ଆମେରିକା ପରମାଣୁ ବୋମା ପକେଇବାର ଅର୍ଥ କ'ଣ ? ଦୁନିଆର ସବୁଠାରୁ ବଡ଼ ଶକ୍ତିଶାଳୀ ରାଷ୍ଟ୍ର ବୋଲେଇ ହେବାର ଅହଂ ସେଥିରେ ନିହିତ । ଶୀତଳଯୁଦ୍ଧ ବେଳେ ଆମେ ସାମ୍ରାଜ୍ୟବାଦୀ ମନୋବୃତ୍ତିର ଏକ ରୂପ ଦେଖିଥିଲେ । ସାମ୍ୟବାଦୀ ବିଚାର ଓ ରୁଷର ପ୍ରଭୁତ୍ୱକୁ କମ୍ କରିବାପାଇଁ ଆମେରିକାର ପ୍ରତିସ୍ପର୍ଦ୍ଧାତ୍ମକ ଗତିବିଧିକୁ ଆଲୋଚନାକୁ ନେବା । ସାମ୍ୟବାଦୀ ବିଚାର ଓ ଶାସନ ପ୍ରତିଷ୍ଠା ଏବଂ ତାର ସ୍ଥାୟିତ୍ୱର ଆଗ୍ରହରେ ବିଭିନ୍ନ ଦେଶରେ କିଛି କମ୍ ଅତ୍ୟାଚାର ହୋଇନାହିଁ । ସମାଜକୁ କିଛି ଆତଙ୍କିତ କରିନାହାନ୍ତି ତଥାକଥିତ ସାମ୍ୟବାଦୀମାନେ । ଷ୍ଟାଲିନଙ୍କ ଆତଙ୍କୀ ଶାସନ କଥା କିଏ ନଜାଣେ ? ଆଫଗାନିସ୍ଥାନରୁ ରୁଷର ନିୟନ୍ତ୍ରଣ ଓ ସେଠାରେ ରହିଥିବା ସରକାରକୁ ହଟେଇବା ପାଇଁ

ଆମେରିକା ପ୍ରୟାସ ଆରମ୍ଭ କଲା । ଆଇ.ଏସ୍.ଆଇ. ଓ ସି.ଆଇ.ଏ. ମିଳିତ ଉଦ୍ୟମରେ ପାକିସ୍ଥାନରେ ମଦ୍ରାସା ଖୋଲି 'ମୌଳବାଦୀ ଶିକ୍ଷା'ଦାନ ପାଇଁ ଆର୍ଥିକ ବ୍ୟବସ୍ଥା ହେଲା । ଜେହାଦ୍‌ର ଏକ ନୂଆ ସଜ୍ଞା ତିଆରି ହେଲା ଏହି ସ୍କୁଲ୍ ମାଧ୍ୟମରେ । ସେଇଠି ମୋଟାମୋଟି ଶିକ୍ଷାର ଅର୍ଥ ଥିଲା କମ୍ୟୁନିଷ୍ଟ ମାନେ ଆଲ୍ଲା ବା ଖୁଦାରେ ବିଶ୍ୱାସ କରନ୍ତି ନାହିଁ । କାଫେର ବା ଧର୍ମ ଦ୍ରୋହୀମାନଙ୍କ ହାତରୁ ଆଫଗାନିସ୍ଥାନ ଇସ୍‌ଲାମ ଓ ମୁସଲ୍‌ମାନ ସମୁଦାୟକୁ ରକ୍ଷା କରିବାକୁ ପଡ଼ିବ । ସେଥିପାଇଁ ଜରୁରୀ ଜେହାଦ୍ । ଏଇ ଜେହାଦ୍‌ରେ ଯିଏ ମରିବ ସେ ଜନ୍ନତ (ସ୍ୱର୍ଗ)କୁ ଯିବ ଏବଂ ୭୨ଟି କୁମାରୀ ପ୍ରାପ୍ତ ହେବ । ଜେହାଦ୍‌ର ଏକ ବିକୃତ ସଜ୍ଞାର ନିର୍ମାଣ ସାଙ୍ଗକୁ ଏକ ନୂଆ ପ୍ରଜାତିର ଜେହାଦୀ ଜନ୍ମ ନେଲେ ସେଇଠାରୁ । ଏଇ ଜେହାଦ୍‌କୁ ଆଫ୍‌ଗାନିସ୍ଥାନରେ ଥିବା ରକ୍ଷଣଶୀଳ ସାମନ୍ତ ଓ ନିଶାଜାତ ଦ୍ରବ୍ୟର କାରବାର କରୁଥିବା ଦଳ ଗୁଡ଼ିକ ସାହାଯ୍ୟ କଲେ । ରୁଷ୍ ହଟିଗଲା । ହେଲେ ସେ ଜେହାଦୀମାନେ ଯିବେ କୁଆଡ଼େ ? ତାଲିବାନ୍, ଲାଦେନ୍, ଆଲକାଏଦା ଯାହା ଆଜି ଆମେ ଦେଖୁଛୁ ସବୁ ସେଇ ଶୀତଳ ଯୁଦ୍ଧ ବେଳର ଭିଆଣ । ଏ ପ୍ରକାର ରଣନୀତି ପଛରେ ଥିବା ଉଦ୍ଦେଶ୍ୟଟି କ'ଣ ? ବିଶ୍ୱର ରାଜନୀତିରେ ସବୁଠୁ ପ୍ରଭାବଶାଳୀ ରାଷ୍ଟ୍ରଭାବେ ନିଜକୁ ପ୍ରତିଷ୍ଠିତ କରିବା ଓ ଆଫ୍‌ଗାନିସ୍ଥାନ ଆଖପାଖ ଅଞ୍ଚଳର ତେଲ ସଂପଦକୁ ନିୟନ୍ତ୍ରଣ କରିବା । ପଶ୍ଚିମ ଏସିଆ ଉପରେ ନିଜର ନିୟନ୍ତ୍ରଣ ଜାହିର କରିବା ପଛରେ ରହିଛି ଏହି ତେଲ ଅର୍ଥନୀତି । ଇରାକ୍, କୁଏତ୍, ଇରାନ, ଲେବାନନ, ପାଲେଷ୍ଟାଇନରେ ଯାହା ଘଟିଛି ଓ ଯାହା ଘଟୁଛି ସେ କ'ଣ ଆତଙ୍କବାଦ ନୁହେଁ ? ସେ ଆତଙ୍କ ପଛରେ ଆମେରିକା ଓ ବ୍ରିଟେନ୍‌ର ସିଧାସଳଖ ହାତ ଓ ୟୁରୋପର ପରୋକ୍ଷ ସମର୍ଥନ ଥିବା କଥା କିଏ ନ ଜାଣେ ? ପଶ୍ଚିମ ଏସିଆରେ ଆତଙ୍କବାଦ ପଛରେ ରହିଛି ଆମେରିକୀୟ ସାମ୍ରାଜ୍ୟବାଦ । ନିଜ ରାଜନୈତିକ, ଆର୍ଥିକ, ସାଂସ୍କୃତିକ ସାମ୍ରାଜ୍ୟର ବିସ୍ତାର ଉଦ୍ଦେଶ୍ୟରେ ସେ କେଉଁଠି ଗଣତାନ୍ତ୍ରିକ ଶକ୍ତିକୁ ଧ୍ୱଂସ କରିବାଲାଗି ମୌଳବାଦୀ ଓ ମିଲିଟାରୀ ଗୋଷ୍ଠୀକୁ ସାହାଯ୍ୟ କଲା ତ ଆଉ କେଉଁଠି ସେଇ ସମାନ କାମ କଲା ଗଣତନ୍ତ୍ର ପ୍ରତିଷ୍ଠା ଆଳରେ ।

ଆତଙ୍କବାଦର ଏହି ସ୍ୱରୂପକୁ ବୁଝିବାକୁ ହେଲେ ଆମକୁ ଆମେରିକା ଓ ୟୁରୋପକେନ୍ଦ୍ରୀକ ବିଚାର ଓ ରାଜନୀତିକୁ ବୁଝିବାକୁ ହେବ । ସେଇ ବିଚାର ଓ ରାଜନୀତିର ଅସଲ ଉଦ୍ଦେଶ୍ୟ ହେଲା (୧) ଦକ୍ଷିଣ ଓ ପଶ୍ଚିମ ଏସିଆ ସ୍ଥିତ ପ୍ରତିବେଶୀ ଦେଶରେ ଥିବା ଦ୍ୱନ୍ଦ୍ୱ ଓ ଆଭ୍ୟନ୍ତରୀଣ ଅସ୍ଥିରତାକୁ ଶାଶ୍ୱତ କରି ଏ ଭୂଖଣ୍ଡର ଓ ଭୂଖଣ୍ଡରେ ଥିବା କୌଣସି ଦେଶକୁ ବିଶ୍ୱର ରାଜନୀତି-ଅର୍ଥନୀତିରେ ମଜଭୁତ ହେବାକୁ ନ ଦେବା । ଭାଗକର ଭୋଗ କର । ପଶ୍ଚିମ ବା ଦକ୍ଷିଣ ଏସିଆର ଦେଶମାନଙ୍କ ଭିତରେ ସୁସମ୍ପର୍କ ଏବଂ ଭୂଖଣ୍ଡ ସ୍ତରୀୟ ଏକତା, ସମନ୍ୱୟର ଅର୍ଥ ଆମେରିକା ବା ୟୁରୋପର ରାଜନୈତିକ ଦାଦାଗିରି ଓ

ଆର୍ଥିକ ଶୋଷଣ ବିରୋଧରେ ଏକ ଚେତନାର ଅଭ୍ୟୁଦୟ । ସେଥିପାଇଁ ଜାଣଶୁଣି ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ ଓ ତାପରର ସାର୍କ ପରି ପ୍ରଚେଷ୍ଟାକୁ ଯୋଜନାବଦ୍ଧ ଭାବେ ଦୁର୍ବଳ କରାଯାଇଛି । ଏହି ଦୁଇ ଏସିଆରେ ସାମ୍ରାଜ୍ୟବାଦ ବିରୋଧୀ ଚେତନା ଆସିବାମାନେ ଆଫ୍ରିକାକୁ ସେ ରାସ୍ତାରେ ଯିବାପାଇଁ ଡେରି ଲାଗିବ ନାହିଁ । ଲାଟିନ୍ ଆମେରିକାରେ ସେ ଚେତନାର ଲହର ଉଠିଛି । ଏଥିପାଇଁ ସେମାନେ ଦେଶ ଦେଶ ଭିତରେ କଳହ ଓ ଯୁଦ୍ଧକୁ ପ୍ରୋତ୍ସାହିତ କରି ଆସିଛନ୍ତି । ଏ ଦେଶ ଗୁଡ଼ିକରେ କେମିତି ମୁକ୍ତ ଗବେଷଣା ହେବ ନାହିଁ, ନୂତନ ଜ୍ଞାନ କୌଶଳର ଆବିଷ୍କାର ହେବନାହିଁ ସେ ନେଇ ପ୍ରତିନିୟତ ଷଡ଼ଯନ୍ତ୍ର ଚାଲିଛି । ବିଚାର ଓ ଜ୍ଞାନ କୌଶଳ ସ୍ତରରେ ଆମେ ସବୁଦିନେ କେମିତି ପଶ୍ଚିମ ପ୍ରତି ନିର୍ଭରଶୀଳ ରହିବୁ ତାର ମସୁଧା ଜାରି ରହିଛି । ଭାବି ଦେଖନ୍ତୁ ତ ୟୁରୋପର ଦେଶଗୁଡ଼ିକ ନିଜ ଆର୍ଥିକ ସ୍ୱାର୍ଥ ଦୃଷ୍ଟିର ଯେମିତି ଏକ ହୋଇଛନ୍ତି ଠିକ୍ ସେମିତି ଦକ୍ଷିଣ ଏସିଆ କି ପଶ୍ଚିମ ଏସିଆର ଦେଶ ଗୁଡ଼ିକ ମଧ୍ୟରେ ଐକ୍ୟ ଓ ସମନ୍ୱୟ ସ୍ଥାପିତ (ସମାନ ବିନିମୟ ମୁଦ୍ରା, ବାଣିଜ୍ୟ ଓ ଜ୍ଞାନ କୌଶଳର ଅଦାନ ପ୍ରଦାନ ଆଧାରରେ) ହୋଇଯାଏ ତେବେ ସବୁଠୁ ବଡ଼ କ୍ଷତି କାହାର ହେବ ? ନିଶ୍ଚିତ ଭାବେ ଆମେରିକା ଓ ୟୁରୋପର । ବିଶ୍ୱର ରାଜନୀତି-ଅର୍ଥନୀତି ଅନେକଟା ବଦଳିଯିବ ।

ଗୋଟିଏ ସମୟ ଥିଲା ଉପନିବେଶିକ ଶାସନ ବିରୁଦ୍ଧରେ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ଦେଶଗୁଡ଼ିକରେ ଆନ୍ଦୋଳନ ହେଲା । ଦେଶ ଗୁଡ଼ିକ ମୁକ୍ତ ହେଲା ସତ କିନ୍ତୁ ଅଧିକାଂଶ ରାଷ୍ଟ୍ରର ଅର୍ଥନୀତି ବୈଦେଶିକ ନୀତି ଦେଖିଲେ ଜାଣି ହେବ ଯେ ବୃହତ୍ତର ଅର୍ଥରେ ସାର୍ବଭୌମତ୍ୱ କହିଲେ ଯାହା ବୁଝାଯାଏ ସେତକ ରହିଲା ନାହିଁ । ଶାସକ ଶ୍ରେଣୀର ବିଚାର ବିଭ୍ରାଟ ଓ ଦୃଷ୍ଟିଦୋଷ ହେଉ କି ଶ୍ରେଣୀସ୍ୱାର୍ଥ ଓ ଉପନିବେଶିକ ଶକ୍ତିର ଷଡ଼ଯନ୍ତ୍ର ଯୋଗୁଁ ଏଇ ନୂଆଁ ରାଷ୍ଟ୍ର ଗୁଡ଼ିକର ସ୍ୱାଭାବିକ ନିର୍ମାଣ ଓ ପ୍ରଗତି ସମ୍ଭବ ହେଲା ନାହିଁ । ଗୋଟିଏ ସମୟ ଆସିଲା ସେମାନେ ନବ୍ୟ ଉପନିବେଶବାଦର କବଳରେ ପଡ଼ିଲେ । ଗୋଟିଏ ସମୟରେ ସୈନ୍ୟ ଶକ୍ତି ମାଧ୍ୟମରେ ଗୋଟିଏ ଦେଶକୁ କବ୍‌ଜା କରି ପୃଥିବୀରେ ନିଜର ପତିଆରା ବଢ଼େଇବା ସଙ୍ଗେ ସଙ୍ଗେ ସେ ଦେଶର ସଂପଦର ଲୁଟ୍ କରାଯାଉଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ଗୋଟିଏ ଦେଶର ଅର୍ଥନୀତି ଉପରେ କବ୍‌ଜା କରାଗଲା । ସେଥିପାଇଁ ଅସ୍ତ୍ର ହେଲା ଋଣ, ପ୍ରଯୁକ୍ତି ଓ କିଛି ଆନ୍ତର୍ଜାତୀୟ ଚୁକ୍ତି । ତେଲକୁ ନେଇ, କୃଷିକୁ ନେଇ, ବାଣିଜ୍ୟକୁ ନେଇ, ରପ୍ତାନୀକୁ ନେଇ, ପରମାଣୁକୁ ନେଇ ଚୁକ୍ତି । ଏସବୁ ଅସ୍ତ୍ର ଯେଉଁଠି କାଟୁ କଲା ନାହିଁ ସେଠାରେ ମିସାଇଲ୍ ବା ମିଲିଟାରୀ ଆକ୍ରମଣର ବିକଳ୍ପ ଖୋଲା ରଖାଗଲା । ଏପରିକି ସବୁଠି ସବୁବେଳେ ଯୁଦ୍ଧ ଘୋଷଣା କରିବା ଦରକାର ପଡ଼ିଲା ନାହିଁ । ଗୋଟିଏ ରାଷ୍ଟ୍ରକୁ ଆଉ ଗୋଟିଏ ରାଷ୍ଟ୍ର ବିରୁଦ୍ଧରେ, ଦେଶ ଭିତରେ ରହିଥିବା କ୍ଷମତା କନ୍ଦଳକୁ ଅସ୍ତ୍ର

କରି ଗୋଟିଏ ଦଳଙ୍କୁ ଆଉ ଗୋଟିଏ ଦଳ ବିରୋଧରେ ଲଗାଇ ଦିଆଗଲା। ଦେଶର ମିଲିଟାରୀ ଓ ଧାର୍ମିକ ସଂଗଠନ ଗୁଡ଼ିକୁ ଗଣତାନ୍ତ୍ରିକ ସରକାର ବିରୋଧରେ ବିଦ୍ରୋହ ପାଇଁ ସାହାଯ୍ୟ କରାଗଲା। ଦେଶ ବିଶେଷରେ ରାଷ୍ଟ୍ର ମୁଖ୍ୟମାନଙ୍କୁ ହତ୍ୟା କରାଗଲା। ଇକୋନୋମିକ୍ ହିଟମେନ୍‌ମାନଙ୍କୁ ପ୍ରେରଣ କରାଗଲା। ଉପନିବେଶବାଦ, ନବ୍ୟଉପନିବେଶବାଦ ବା ସାମ୍ରାଜ୍ୟବାଦୀ ଶୋଷଣ ଓ ଅତ୍ୟାଚାର ପାଇଁ ଏମାନଙ୍କୁ କେଉଁଠୁ ଏ ନୈତିକ ପ୍ରେରଣା ମିଳୁଛି ? ଅନେକେ ହୁଏତ ଅସହମତ ହେବେ କିନ୍ତୁ ଏହାରି ପଛରେ ରହିଛି ଗୋରାବାଦ ବା ଜାତି (race) ବାଦ। ସେମାନେ ସବୁବେଳେ ଏକଥା ବିଶ୍ୱାସ କରି ଆସିଛନ୍ତି ଓ ବିଭିନ୍ନ ସମୟରେ ପ୍ରମାଣିତ କରିବାକୁ ଚାହିଁଛନ୍ତି ଯେ, ଆମେ ବାକିମାନଙ୍କଠାରୁ ଉପରେ। ଆମ ଜୀବନର ମୂଲ୍ୟ ଅନ୍ୟମାନଙ୍କ ତୁଳନାରେ ଅଧିକ। ତେଣୁ ସେମାନେ ସମୟ ପଡ଼ିଲେ ଜାତିସଂଘକୁ ମାନନ୍ତି ନାହିଁ। କ୍ୟୋଟୋ ସନ୍ଧିରେ ସ୍ୱାକ୍ଷର କରନ୍ତି ନାହିଁ। କୁହନ୍ତି ଆମ ଲୋକଙ୍କ ଜୀବନସ୍ତର ଓ ଶୈଳୀରେ ଆମେ ସାଲିସ କରିବୁ ନାହିଁ। ଅବଶ୍ୟ ଏଥିରେ ସେ ଦେଶ ଗୁଡ଼ିକରେ ଥିବା ସାଧାରଣ ଲୋକଙ୍କ ଭୂମିକା ଏକଦମ ଗୌଣ। ସେ ଭୂମିକାଟି ନିର୍ବାହ କରନ୍ତି ସେଠାକାର ଶାସକ ବର୍ଗ। ଏଭଳି ଏକ ଶାସକ ବର୍ଗ ଯିଏ ଆତ୍ମସନ୍ତୋଷ କଣ ଜାଣେ ନାହିଁ। ଅନ୍ତର୍ନିହିତ ସୁଖ ଓ ଆନନ୍ଦ କଣ ଜାଣେ ନାହିଁ। ଆମେ ଓ ସେମାନେ ଜନିତ ପକ୍ଷପାତ, ନିରଙ୍କୁଶ କ୍ଷମତା ଓ ମାଲିକାନା ରୋଗରେ ପୀଡ଼ିତ ଏକ ସମାଜ। ଏ ରୋଗର ଭାରତୀୟ ସଂସ୍କରଣ ହେଲା ଜାତିବାଦ । ଜାତିଆଣ ବାଦ କେମିତି ସାଂପ୍ରଦାୟିକତାବାଦ ଓ ତଦ୍‌ଜନିତ ହିଂସା ଓ ଆତଙ୍କକୁ ପରିପୁଷ୍ଟ କରେ ସେ କଥା ବୁଝିହେବ କନ୍ଧମାଳ ଦଙ୍ଗାର ବିଶ୍ଳେଷଣ କଲେ । ସେ ଜାତିବାଦର ଜଘନ୍ୟ ରୂପକୁ ଆମେ ଅନୁଭବ କରିପାରିବା ସ୍ୱେରେଜ କର୍ମଚାରୀଙ୍କ ଜୀବନନାମା ପଢ଼ିଲେ। ଭାରତରେ ଏ ସ୍ୱରେଜ କାମ ଦଳିତ ମାନେ କରୁଥିବା ବେଳେ ଆମେରିକାରେ ଏ କାମ କରିଥାନ୍ତି କଳା ଲୋକମାନେ। ଏ ରୋଗକୁ ଗୋଟିଏ ସମୟରେ ସୋଭିଏତ୍ ରୁଷର ଉପସ୍ଥିତି କିଛିଟା ନିୟନ୍ତ୍ରିତ କରି ରଖିଥିଲା। ଯେତେ ଦିନ ଯାଏ ଆମେରିକା ଓ ରୁଷ୍ ଭିତରେ ବିଚାର ସ୍ତରରେ ଲଢ଼େଇଟା ବଞ୍ଚିଥିଲା ଅନ୍ତତଃ ସେତେ ଦିନ ଯାଏ। ସାମ୍ୟବାଦୀ ବିଚାରର ବିଭ୍ରାଟ ଏବଂ ରୁଷ୍‌ର ପତନ ପରେ ଏହି ରୋଗ ମହାମାରୀ ସ୍ତରକୁ ଉତୀର୍ଣ୍ଣ ହୋଇଛି। ସାମ୍ୟବାଦ ବନାମ ପୁଞ୍ଜିବାଦ ଏବଂ ଉପନିବେଶରୁ ମୁକ୍ତ ହେବା ଲାଗି ହୋଇଥିବା ଐତିହାସିକ ସଂଘର୍ଷ ବେଳର ମୂଲ୍ୟବୋଧ ଓ ବିଶ୍ୱଦୃଷ୍ଟି ସେ ଦେଶଗୁଡ଼ିକରେ ଦିବା ଶାସକ ଶ୍ରେଣୀର ସ୍ୱାର୍ଥ ଅନୁରୂପ ରାଜନୀତିରେ ବନ୍ଧାପଡ଼ିଗଲା।

ପଶ୍ଚିମ ଏସିଆର ହିଂସ୍ର ରାଜନୀତି ଓ ଆମେରିକୀୟ ସାମ୍ରାଜ୍ୟବାଦ ସାମଗ୍ରିକ ଭାବେ ଦକ୍ଷିଣ ଏସିଆ ଓ ବିଶେଷ କରି ଭାରତକୁ ପ୍ରଭାବିତ କରୁଛି। ତାର କାରଣ ହେଲା ପଶ୍ଚିମ

ଏସିଆ ମୁଖ୍ୟତଃ ମୁସଲିମ୍ ଲୋକଙ୍କ ଦେଶ। ଭାରତ, ପାକିସ୍ଥାନ, ବାଂଲାଦେଶରେ ବହୁସଂଖ୍ୟାରେ ମୁସଲିମ୍ ଅଛନ୍ତି। ଧର୍ମ ଦୃଷ୍ଟିରୁ ପଶ୍ଚିମ ଏସିଆର ଦେଶ ଓ ଲୋକଙ୍କ ସହିତ ଏମାନେ ଭାବନାତ୍ମକ ସ୍ତରରେ ଜଡ଼ିତ। ପଶ୍ଚିମ ଏସିଆରେ ଆମେରିକୀୟ ଶୋଷଣ, ଅତ୍ୟାଚାରକୁ ଏମାନେ ମୁସଲିମ୍ ସମୁଦାୟ ଓ ଇସ୍‌ଲାମ ବିରୋଧୀ ଗତିବିଧି ଭାବେ ଦେଖନ୍ତି। ତେଣୁ ଭାରତ, ପାକିସ୍ଥାନ ଓ ବାଂଲାଦେଶର ମୁସଲମାନମାନେ ଇତି ମଧ୍ୟରେ ହୋଇ ସାରିଛନ୍ତି ଆମେରିକା ବିରୋଧୀ। ପାଲେଷ୍ଟାଇନ, ଇରାକ, ଇରାନ, ସାଉଦିଆରବ, ଲେବାନନ ଓ ଆଫ୍‌ଗାନିସ୍ଥାନରେ ଆମେରିକା ଆଜି ଯାହା କରୁଛି ତାକୁ ସେମାନେ ଗ୍ରହଣ କରି ପାରୁନାହାନ୍ତି। ତାହା ସ୍ୱାଭାବିକ ମଧ୍ୟ। ସାରା ବିଶ୍ୱରେ ଏହାକୁ ନେଇ ଅସନ୍ତୋଷ ରହିଛି କିନ୍ତୁ ଆଜିର ଏକଧ୍ରୁବୀୟ ବିଶ୍ୱରେ ଆମେରିକାର ଦାଦାଗିରିକୁ ଚେଲେଞ୍ଜ କରିବା ପାଇଁ କେହି ନାହିଁ। ସଭିଏଁ ତଟସ୍ଥ ଦର୍ଶକ। ଏଭଳି ପରିସ୍ଥିତିରେ ମୌଳବାଦୀ ହେଉ କି ଆତଙ୍କବାଦୀ ହେଉ କେହି କିଛି ଆମେରିକା ବିରୋଧୀ ଗତିବିଧି କଲେ ତାଙ୍କ ପ୍ରତି ଏକ ପ୍ରଶଂସ ଦୃଷ୍ଟି ମୁସଲମାନ ସମୁଦାୟ ଭିତରେ ଦେଖାଯିବାରେ ବିଶେଷ ଅସ୍ୱାଭାବିକତା ନାହିଁ।

୧୯୯୮ ପରଠାରୁ ଭାରତର ବୈଦେଶିକ ନୀତି ଆମେରିକା ଆଡ଼କୁ ଢଳିଲା ଏବଂ ଭାରତ ଆମେରିକାର ସାମ୍ରାଜ୍ୟବାଦୀ ଶୋଷଣ ତଥା ମୁସଲମାନ ବିରୋଧୀ ଗତିବିଧିକୁ ସମାଲୋଚନା କରିବା ଛାଡ଼ି ତାର ଚାପଲୁସି କଲା। ସମୟକ୍ରମେ ଭାରତ ନିଜ ଗତିବିଧିରେ ଆମେରିକାର ଶତ୍ରୁମାନଙ୍କୁ ଭାରତର ଶତ୍ରୁରେ ପରିଣତ କଲା। ଭାରତ ଆଜି ଆତଙ୍କବାଦୀ ଆକ୍ରମଣର ଶରବ୍ୟ ହେବାର ଏ ହେଉଛି ଅନ୍ୟତମ କାରଣ। ଆମେରିକାର ଅନ୍ଧ ସମର୍ଥକ ହେବାର ଅର୍ଥ ଆଜି ମୁସଲମାନ ଓ ଇସଲାମ ବିରୋଧୀ ହେବା ଭଳି ମନେ ହେଉଛି। ଆମେରିକାର ଚାପରେ ଆସି ଭାରତ 'ଇରାନ' ସହ ତାର ମଧୁର ସଂପର୍କକୁ ବିଗାଡ଼ି ଦେଇଛି। ଆମେରିକାର ଇରାକ ଆକ୍ରମଣ ହେଉ କି ଇସ୍ରାଏଲର ପାଲେଷ୍ଟାଇନ୍ ଉପରେ ଅତ୍ୟାଚାର ହେଉ ସବୁଠି ଆମ ଦେଶ ନରମ ଆଭିମୁଖ୍ୟ ଗ୍ରହଣ କରିଛି। ଏସବୁ ଭାରତୀୟ ମୁସଲମାନ ସମ୍ପ୍ରଦାୟମାନଙ୍କୁ କ୍ଷୁବ୍ଧ କରିଛି। ଆମେରିକା ଓ ଇଂଲଣ୍ଡର ପ୍ରତିରକ୍ଷା ଓ ଗୋଇନ୍ଦା ବିଭାଗ ମଜଭୁତ ହୋଇଥିବା କାରଣରୁ ସେଇଠି ସବୁବେଳେ ଆତଙ୍କବାଦୀ ଆକ୍ରମଣ ସହଜ ନୁହେଁ। ସେ ଦୃଷ୍ଟିରୁ ଭାରତ ଏକ ସହଜ ଟାର୍ଗେଟ। ତେଣୁ ଭାରତରେ ଏହି ଆକ୍ରମଣର ଆଗକୁ ଆହୁରି ହେବାର ସମ୍ଭାବନା ରହିଛି। କିନ୍ତୁ ଏହା ଅର୍ଥ ନୁହେଁ ଯେ ଆମେ ଆମେରିକା ପରି ଆତଙ୍କବାଦ ବିରୋଧୀ ଯୁଦ୍ଧ ନାଁରେ ନିଜେ ଆତଙ୍କରାଜ ଚଳାଇବା। ଅତଙ୍କରାଜ ବିରୋଧୀ ଯୁଦ୍ଧ ନାଁରେ ଆମେରିକା ଆଫ୍‌ଗାନିସ୍ଥାନ ଓ ଇରାକରେ ହସ୍ତକ୍ଷେପ କରି ଦେଶ ଲୋକଙ୍କ ଜୀବନ ନେଇସାରିଛି। ସେ ମଧ୍ୟରୁ ୫୦୦୦ ହେଲେ ଆମେରିକୀୟ

ସୈନିକ। ନୋବେଲ ପୁରସ୍କୃତ ଯେସେଫ୍ ଷ୍ଟିଗଲିଜ୍‌ଙ୍କ ଆକଳନ ଅନୁସାରେ କେବଳ ଇରାକ ଯୁଦ୍ଧରେ ଆମେରିକାକୁ ୩ ଅରବ ଡଲାର ଖର୍ଚ୍ଚ କରିବାକୁ ପଡ଼ିଛି ଯାହା ଭାରତର ସମଗ୍ର ଘରୋଇ ଉତ୍ପାଦର ତିନି ଗୁଣ। ଏପଟେ ଆମେରିକା ପାକିସ୍ତାନରେ ଆକାଶ ମାର୍ଗରୁ ବମ୍ ପକାଉଛି। ଯେଉଁଥିରେ ତାଲିବାନଙ୍କ ସହ ପାକିସ୍ତାନର ସାଧାରଣ ନାଗରିକ ମଧ୍ୟ ମରୁଛନ୍ତି। ଆଫଗାନିସ୍ତାନରେ ଆମେରିକାର ମିଲିଟାରୀ ଗତିବିଧି ପ୍ରତି ପାକିସ୍ତାନୀ ଆନୁଗତ୍ୟର ଏ ହେଲେ ପୁରସ୍କାର। ଆମେରିକାର ଏ ଆକ୍ରମଣ ଏକଦା ଇରାକରେ ଅତି ଦୁର୍ବଳ ସ୍ଥିତିରେ କଟ୍ଟରପନ୍ଥୀ ଇସ୍‌ଲାମି ଜେହାଦୀଙ୍କୁ ଶକ୍ତିଶାଳୀ କରିଛି। ଅଲକାଏଦାକୁ ଗଜୁରିବାଲାଗି ଉର୍ବର ମାଟି ଦେଇଛି। ଉଭୟ ପାକିସ୍ତାନ ଓ ଆଫଗାନିସ୍ତାନରେ କଟ୍ଟରପନ୍ଥୀଙ୍କ ନୂଆ ଫଉଜ ନିର୍ମାଣ ଲଗାତାର ବଢୁଛି। ଏ ପରିସ୍ଥିତି ବେଶ୍ ସୁହାଉଛି ଆମେରିକୀୟ କମ୍ପାନୀ ଓ ଜେହାଦୀଙ୍କୁ ଆତଙ୍କ ବିରୁଦ୍ଧରେ ଆମେରିକୀ ଯୁଦ୍ଧହିଁ ଆତଙ୍କବାଦକୁ ମଜ୍‌ବୁତ୍ ଓ ବ୍ୟାପକ କରୁଛି। (ଷ୍ଟିଗ୍‌ଲିଜ୍ : ଥ୍ରି ଟ୍ରିଲିୟନ୍ ଡଲାର ୱାର)।

ଏକଧ୍ରୁବୀୟ ବିଶ୍ୱରେ ଆମେରିକାର ବିରୋଧ ପାଇଁ ନା କୌଣସି ଶକ୍ତିଶାଳୀ ଦେଶ ଅଛି ନା ଅଛି ବିଚାର। ତେଣୁ ଇରାକ, ଆଫଗାନିସ୍ତାନର ଧ୍ୱଂସ ପ୍ରକ୍ରିୟା ବେଳେ ଋଷ, ଫ୍ରାନ୍ସ, ଜାପାନ ଓ ଜର୍ମାନ ଭଳି ଦେଶର ସରକାର ବି ଚୁପ୍ ରହିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ। ଯଦିଓ ସେ ଦେଶର ସାଧାରଣ ଜନତା ଥିଲେ ଯୁଦ୍ଧବିରୋଧୀ। ଏକଧ୍ରୁବୀୟ ଜଗତରେ ତେଲ ସଂପଦ ଉପରେ ଆମେରିକାର ବଚସ୍ୱକୁ ବିରୋଧ କରିବା ସହଜ ନୁହେଁ। ଯିଏ ବିରୋଧ କଲା ସେ ଇରାକ ଓ ଆଫଗାନିସ୍ତାନର ଦଶା ଭୋଗିବ। ଇରାନ ପରି ବିଭିନ୍ନ ବାସନ୍ଦର ଶିକାର ହେବ। ଜାତିସଂଘ ଓ ବିଶ୍ୱସମୁଦାୟ ଚୁପ୍ ରହିବେ। ଗଣତାନ୍ତ୍ରିକ ପ୍ରତିରୋଧର ସବୁ ରାସ୍ତା ବନ୍ଦ ହୋଇଯିବ, ସେଭଳି ସ୍ଥିତିରେ ଇସଲାମକୁ ଆଧାର କରି ସଂଘର୍ଷର ବିକଳ୍ପ ଆସିଛି। ସେ ଯେ ବିକଳ୍ପ ହୋଇପାରେନା, ହେଇପାରେନା ବୋଲି ତାର ନେତୃତ୍ୱଟି ଚାଲିଯାଇଛି ପଶ୍ଚିମ ଓ ଦକ୍ଷିଣ ଏସିଆର ହିଂସ୍ର ମୌଳବାଦୀଙ୍କ ହାତକୁ, ଯେଉଁମାନେ ଶୀତଳ ଯୁଦ୍ଧ ବେଳେ ଆମେରିକାର ଋଷ ବିରୋଧୀ ପ୍ରକଳ୍ପରୁ ଜନ୍ମ ନେଇଥିଲେ।

ଅଣରାଷ୍ଟ୍ର ତତ୍ତ୍ୱମାନଙ୍କ ଭିତରୁ ଗୋଟିଏ ହେଲା ଧାର୍ମିକ ମୌଳବାଦୀଙ୍କ ଦ୍ୱାରା ଚାଲିଥିବା ଆତଙ୍କ। ମୁସଲିମ ମୌଳବାଦୀଙ୍କ ଦ୍ୱାରା ନିର୍ମିତ ଅଲ୍‌କାଇଦା, ଲସ୍କରେ ତୋଇବା ପରି ନାଁ ଗୁଡ଼ିକ ଆଜି ସମସ୍ତଙ୍କ ମୁହଁରେ। ଆମେରିକା ଓ ହିନ୍ଦୁ ମୌଳବାଦୀମାନଙ୍କ ଦ୍ୱାରା ଲୋକପ୍ରିୟ କରାଯାଇଥିବା ଏକ ଉକ୍ତିର ବ୍ୟାଖ୍ୟା ଏଠି ଜରୁରୀ। ଉକ୍ତିଟି ହେଲା "ସବୁ ମୁସଲିମ ଆତଙ୍କବାଦୀ ନୁହନ୍ତି ସତ କିନ୍ତୁ ସବୁ ଆତଙ୍କବାଦୀ ହେଲେ ମୁସଲିମ। ଏ କଥାଟିର

ସତ୍ୟାସତ୍ୟ ପରୀକ୍ଷା ନକରି ଆମ ଭିତରୁ ଅନେକ ଏହାକୁ ସଂପୂର୍ଣ୍ଣ ସତ ବୋଲି ଧରି ନେଇଛନ୍ତି। ଉଲ୍‌ଫା ଆତଙ୍କବାଦୀ ମାନେ ଧର୍ମରେ ହିନ୍ଦୁ। ପୃଥିବୀର ସବୁଠାରୁ ଶକ୍ତିଶାଳୀ ଅତିବାଦୀ ଗୋଷ୍ଠୀ ହେଲେ ଏଲ୍.ଟି.ଟି.ଇ.। ସେଥିରେ ଅଧିକାଂଶ ହେଲେ ହିନ୍ଦୁ ଓ ବୌଦ୍ଧ, ତାମିଲ ଲୋକ। ଖଲିସ୍ତାନ ଆନ୍ଦୋଳନ ବେଳର ଆତଙ୍କ ପଛରେ ଥିଲେ କିଛି ଶିଖ୍ ଧର୍ମର ଲୋକ। ଇସ୍ରାଏଲ୍‌ବାସୀ ହେଲେ ଜିଉ। ଆମେରିକୀୟ ଆତଙ୍କକୁ କାର୍ଯ୍ୟକାରୀ କରୁଥିବା ଅଧିକାଂଶ ହେଲେ ଧର୍ମରେ ଖ୍ରୀଷ୍ଟିଆନ। ଆଇରିସ ରିପବ୍ଲିକାନ୍ ଆର୍ମିର ଆତଙ୍କବାଦୀମାନେ ଧର୍ମରେ ଖ୍ରୀଷ୍ଟିଆନ। ଆମେ କ'ଣ ଏମାନଙ୍କ ପାଇଁ ହିନ୍ଦୁ, ଶିଖ୍, ଜିଉ ଓ ଖ୍ରୀଷ୍ଟିୟାନ ଆତଙ୍କବାଦୀ ଶବ୍ଦ ବ୍ୟବହାର କରିବା ଠିକ୍ ହେବ ? ଏହି ଆତଙ୍କ ପଛରେ କ'ଣ ସମଗ୍ର ହିନ୍ଦୁ, ଶିଖ୍, ଜିଉ ଓ ଖ୍ରୀଷ୍ଟିୟାନ ସମୁଦାୟର ସହଯୋଗ ଓ ସମର୍ଥନ ରହିଛି ? ଏଠି ଯେମିତି ଉତ୍ତର ହେବ ନା । ଠିକ୍ ସେମିତି ଲାଦେନ୍, ଆଲ୍‌କାଏଦା ଏବଂ କୌଣସି ଅତିବାଦୀ ମୁସଲିମ ସଂଗଠନର ଗତିବିଧିପାଇଁ ସମଗ୍ର ମୁସଲିମ ସମୁଦାୟ ଦାୟୀ ନୁହଁନ୍ତି। ଆମର ଦୃଷ୍ଟିଟି ଦୃଷ୍ଟିଦୋଷର ଶିକାର। ସେକଥା ବେଶ୍ ସ୍ପଷ୍ଟ ହୋଇଗଲା ମାଲେଗାଓଁ ପ୍ରକରଣରେ। 'ଅଭିନବ ଭାରତ' ଭଳି ସଂଗଠନର ଆତଙ୍କବାଦୀ ଗତିବିଧି କଥା ଚର୍ଚ୍ଚାକୁ ଆସୁ ଆସୁ ଆଡ଼ଭାନୀ କହିଲେ ଏମାନଙ୍କ ପାଇଁ 'ହିନ୍ଦୁ ଆତଙ୍କବାଦୀ' ଶବ୍ଦ ବ୍ୟବହାର କରିବା ଭୁଲ୍। ମାପଦଣ୍ଡଟି ଏଠି କାହିଁକି ଅଲଗା ହେବ ? ଆମେ କ'ଣ ଏକଥା କହିପାରିବା ନାହିଁ ଯେ ଆତଙ୍କବାଦୀର କୌଣସି ଧର୍ମ ନାହିଁ ? ଏକଥା ଆହୁରି ପରିଷ୍କାର ହେବ ଯେବେ ଆମେ ବିଭିନ୍ନ ଦେଶରେ ରାଜନୈତିକ ଲକ୍ଷ୍ୟ ନେଇ କାମ କରୁଥିବା କିଛି ସଂଗଠନ ଯେଉଁମାନେ ହିଂସାକୁ ତାଙ୍କ ଲକ୍ଷ୍ୟ ହାସଲର ରଣନୀତିଭାବେ ବ୍ୟବହାର କରୁଛନ୍ତି ସେମାନଙ୍କ ସମ୍ପର୍କରେ ଆଲୋଚନା କରିବା। ଭାରତର ନେସେନାଲ ଡେମୋକ୍ରେଟିକ୍ ଫ୍ରଣ୍ଟ ଅଫ୍ ବୋଡ଼ୋ ଲେଣ୍ଡ, ଅଲ୍ ତ୍ରିପୁରା ଟାଇଗର୍ ଫୋର୍ସ, ଦି ଜାପାନିଜ୍ ରେଡ୍ ଆର୍ମି, ଲର୍ଡ଼ ସାଲ୍‌ଭେସନ ଆର୍ମି, ସ୍ପେନର ଇଟା (ETA), ଫ୍ରାନ୍ସର କୋରସିକାନ, ଇସ୍ରାଏଲର କଚ ଓ କାହନେଚାଇ ସଭିଏଁ ଏ ପର୍ଯ୍ୟାୟର। ଏମାନଙ୍କ ହିସାଂତ୍ମକ ରଣନୀତିର କୌଣସି ଧର୍ମସହ କିଛି ବି ସମ୍ପର୍କ ନାହିଁ।

ଭାରତରେ ହିନ୍ଦୁ ଓ ମୁସଲମାନ ଗୋଷ୍ଠୀ ଭିତରେ ଆଗରୁ ବି ମୌଳବାଦୀ ଥିଲେ ଏବଂ ତାଙ୍କୁ ପ୍ରତିନିଧିତ୍ୱ କରୁଥିବା ସାଂସ୍କୃତିକ ସଂଗଠନ ରାଜନୈତିକ ଦଳ ବି। ଆତଙ୍କବାଦୀ ସଂଗଠନ ସହ ମୁସଲିମ ସମୁଦାୟରୁ କିଛି ଲୋକ ଯୋଡ଼ି ହେବାର ପ୍ରକ୍ରିୟାଟି କେବେ ଆରମ୍ଭ ହେଲା ? ମନେ ପକାନ୍ତୁ ତିନୋଟି କଥା। ପ୍ରଥମଟି ହେଲା କାଶ୍ମୀରରେ ପାଖାପାଖି ୧୯୯୦ ପର୍ଯ୍ୟନ୍ତ ଆତଙ୍କବାଦୀ ସଂଗଠନ ନଥିଲା କି ୧୯୯୨ ପର୍ଯ୍ୟନ୍ତ ବିଦେଶୀ ଆତଙ୍କବାଦୀଙ୍କୁ ଆସିବାକୁ ଦେଇନଥିଲେ ସ୍ଥାନୀୟ ଲୋକେ। ତାପରେ କାହିଁକି ଏକଥା

ହେଲା ? ୧୯୪୭ ରୁ ୧୯୯୦ ପ୍ରାୟ ୪୩ ବର୍ଷ ସମୟ ଆମେ ପାଇଥିଲେ, କାଶ୍ମୀରବାସୀଙ୍କୁ ନିଜର କରିବା ଲାଗି। ସେମାନଙ୍କର ଆଶା ଓ ଆକାଂକ୍ଷା ପୂରଣ କରି ସେମାନଙ୍କର ମନ ଓ ବିଶ୍ୱାସ ଜିତିବା ଲାଗି । ଆମେ ସେ କାମରେ କାହିଁକି ବିଫଳ ହେଲେ ତାର କାରଣ ଖୋଜିବା ଜରୁରୀ। ଏକ ବିଶେଷ ପରିସ୍ଥିତିରେ କାଶ୍ମିର ଆମ ସହ ମିଶିଥିଲା। ଦାବୀଥିଲା ସ୍ୱାୟତ୍ତତା । ପ୍ରତିରକ୍ଷା ଓ ବୈଦେଶିକ ବିଭାଗ ରହିବ ଭାରତ ହାତରେ। ପ୍ରଶାସନିକ ସ୍ୱାୟତ୍ତତା ରହିବ ସେଠାକାର ନିର୍ବାଚିତ ସରକାରଙ୍କ ହାତରେ। ବଦଳରେ ଆମେ କ'ଣ ଦେଲେ ସେମାନଙ୍କୁ। ଗଣତାନ୍ତ୍ରିକ ସରକାର ଗୁଡ଼ିକୁ ଅସାମ୍ବିଧାନିକ ଉପାୟରେ ଭାଙ୍ଗିଲେ, ଲୋକପ୍ରିୟ ନେତାଙ୍କୁ ଜେଲରେ ଭରିଲେ। ଭୋଟ ରିଗିଂ କଲେ। ଭାରତ ପ୍ରତି କାଶ୍ମୀରବାସୀଙ୍କ ଆସ୍ଥାକୁ ନେଇ ସନ୍ଦେହ ଓ ଅବିଶ୍ୱାସ ଏବଂ ଶେଷରେ ଅତ୍ୟାଚାର ବଢ଼ିଲା ଯାହା ପରେ ନେଲା ରାଷ୍ଟ୍ରୀୟଆତଙ୍କର ରୂପ। ଆମେ ଆମ ସାମରିକ ବଳ ଦେଖାଇ ସେମାନଙ୍କୁ ଡରେଇ ଧମକେଇ ଆମ ସର୍ତ୍ତରେ ଆମ ସାଙ୍ଗରେ ରଖିବାକୁ ଚାହିଁଲେ। ଆଜି ଅବସ୍ଥା କ'ଣ ହୋଇଛି ଆମେ ସଭିଏଁ ଜାଣିଛୁ। ଗୋଟିଏ ପଟେ ପାକିସ୍ଥାନ ଅଧିକୃତ କାଶ୍ମୀର, ଏପଟେ ଭାରତୀୟ ସୈନ୍ୟ ଶକ୍ତିଙ୍କର ନିୟନ୍ତ୍ରଣରେ ଅସନ୍ତୁଷ୍ଟ ଓ ହିଂସ୍ର କାଶ୍ମୀର। ଯେଉଁ କାଶ୍ମୀର ଦିନେ ତାର ଧର୍ମ ନିରପେକ୍ଷତା ପାଇଁ ଖ୍ୟାତ ଥିଲା ସେଠି ଆଜି ଧାର୍ମିକ ଫାସିବାଦୀଙ୍କ ପ୍ରଭୁତ୍ୱ ବଢ଼ିବାରେ ଲାଗିଛି।

ବାବ୍ରିମସ୍‌ଜିଦ ଭଙ୍ଗା ହେବା ପୂର୍ବରୁ ଭାରତୀୟ ସମାଜରେ ଆତଙ୍କବାଦୀ ଗତିବିଧିର ସ୍ଥିତି କଣ ଥିଲା ? ସେତେବେଳେ ଆମ ଭିତରୁ ଅନେକେ ଆତଙ୍କବାଦର ନା ଶୁଣିନଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ। ବାବ୍ରି ମସ୍‌ଜିଦ୍ ଘଟଣା ପରେ ପ୍ରଥମ ଥର ପାଇଁ ଭାରତୀୟ ମୁସଲ୍‌ମାନମାନଙ୍କୁ ମନେ ହେଲା ଯେ ଭାରତର ଶାସକ ଶ୍ରେଣୀ ହାତରେ ତାଙ୍କର ଧର୍ମ, ଆସ୍ଥା, ବିଶ୍ୱାସ ଏପରିକି ଜୀବନ ବି ଅସୁରକ୍ଷିତ। ମନେ ପକାନ୍ତୁ ସେ ସମୟକୁ ପ୍ରଥମେ ନରସିଂହ ରାଓ ସବୁ ଜାଣି ଶୁଣି ନିରବ ରହିଲେ। ରାଜ୍ୟ ସରକାର କୋର୍ଟ ପାଖରେ ମସ୍‌ଜିଦ ସୁରକ୍ଷାର ଶପଥ ପାଠ କରି ନିଜେ ମସ୍‌ଜିଦ ଭାଙ୍ଗିବାରେ ଲାଗି ପଡ଼ିଲେ। ଲାଗୁଥିଲା ସତେ ଯେମିତି କେନ୍ଦ୍ର ଓ ରାଜ୍ୟ ସରକାର ସହିତ ଭାରତୀୟ ବିବେକଟି ଶୋଇପଡ଼ିଥିଲା। ସରକାର ଓ ଭାରତର ପ୍ରମୁଖ ରାଜନୈତିକ ଦଳ ଦ୍ୱାରା ପ୍ରତାଡ଼ିତ ହେଲା ମୁସ୍‌ଲିମ ସମୁଦାୟ। ବାବ୍ରି ମସଜିଦ ଭଙ୍ଗା ପରେ ହିଁ ବମ୍ବେ ବ୍ଲାଷ୍ଟ ଓ ତାର ପ୍ରତିକ୍ରିୟାରେ ହୋଇଥିଲା ବ୍ୟାପକ ଦଙ୍ଗା।

ଆଉ ଏକ ଦିଗ ହେଲା ମୁସଲିମ ସମୁଦାୟର ସାମଗ୍ରିକ ସ୍ଥିତି। ଆର୍ଥିକ ଓ ଶିକ୍ଷା ଦୃଷ୍ଟିରୁ ସେମାନଙ୍କ ଅବସ୍ଥା ଦୟନୀୟ। ସରକାରୀ ଚାକିରୀ, ପୁଲିସ, ସୈନ୍ୟ ଓ ବିଚାର ବିଭାଗ ହେଉ କି ଅମଲାତନ୍ତ୍ର, ସେମାନଙ୍କର ଉପସ୍ଥିତି ନଗଣ୍ୟ। ଶତକଡ଼ା ଏକାବନ ଲୋକ

ଭୂମିହୀନ । ଶତକଡ଼ା ତିରିଶରୁ ଊର୍ଦ୍ଧ୍ୱ ଲୋକଙ୍କ ପାଖରେ ଶୂନ ରୁ ଏକ ଏକର ଭିତରେ ଜମି । ମୁସଲିମ ସମୁଦାୟ ସରକାରୀ ଅବହେଳା ଓ ପକ୍ଷପାତିତାର ଶିକାର ହୋଇଛି ଏକଥା ସଚ୍ଚାର କମିଟୀ ରିପୋର୍ଟରେ ସ୍ପଷ୍ଟ । ଏ ଅବହେଳାର ଦୁଇଟି ପକ୍ଷ ରହିଛି । ପ୍ରଥମଟି ହେଲା ସରକାରୀ ପକ୍ଷ । ଏ ଅବହେଳାର ଇତିହାସ ଖୁବ୍ ପୁରୁଣା । ଏ ଐତିହାସିକ ଅବହେଳା ବା ହିନ୍ଦୁ- ମୁସଲିମ ପକ୍ଷପାତ ଇଂରେଜ ଅମଳରୁ ବିଶେଷ କରି ୧୮୫୭ ପରଠୁ ଆରମ୍ଭ ହୋଇଛି । ଭାରତୀୟ ଦଳିତ, ଆଦିବାସୀ ଭଳି ମୁସଲିମ ବର୍ଗ ବି ଅଭାବ, ଦାରିଦ୍ର୍ୟ, ନିରକ୍ଷରତା, ବେକାରୀ ଓ ବେରୋଜଗାରୀରେ ସଢୁଛି ।

ଏଭଳି ଏକ ସମୁଦାୟ ପାଇଁ ଅନ୍ୟଏକ ଅଭିଶାପ ହେଲା ଯେ ସେ ଧର୍ମାନ୍ଧ ମୌଳବାଦୀ ତତ୍ତ୍ୱର ନିୟନ୍ତ୍ରଣରୁ ଏଯାଏଁ ମୁକୁଳି ପାରିନାହିଁ । ଦୁର୍ଭାଗ୍ୟକୁ ସେ ମୌଳବାଦୀଙ୍କ ଏଜେଣ୍ଡାରେ ମୁସଲିମ ସମୁଦାୟର ମୌଳିକ ସମସ୍ୟା । (ଶିକ୍ଷା, ରୋଜଗାର, ସାମାଜିକ ସଂସ୍କାର) କୁ ନେଇ କୌଣସି କାର୍ଯ୍ୟକ୍ରମ ନାହିଁ । ତାଙ୍କୁ ରକ୍ଷଣଶୀଳ ଅବୈଜ୍ଞାନିକ/ନିରକ୍ଷର ରଖିବାର ମସୁଧା ରହିଛି । ନିଜ ସମୁଦାୟକୁ ଆଧୁନିକ ଶିକ୍ଷା ଓ ନାରୀ ସ୍ୱାଧୀନତାଜନିତ ଚେତନାରୁ ବଞ୍ଚିତ କରି ରଖିବାର ପ୍ରୟାସ ରହିଛି । ଏଭଳି ସ୍ଥିତିରେ ଥିବା ସମୁଦାୟ ଯେତେବେଳେ ତାର ଅସ୍ତିତ୍ୱକୁ ନେଇ ଆତଙ୍କିତ ହୁଏ, ତାର ଧାର୍ମିକ ଆସ୍ଥା ବିଶ୍ୱାସର ସୁରକ୍ଷାକୁ ନେଇ ବିଚଳିତ ହୁଏ ଏବଂ ସରକାର ଓ ବାକି ସମୁଦାୟ ଠୁଁ ବହିଷ୍କୃତ, ତିରସ୍କୃତ, ନିନ୍ଦିତ ମନେ କରେ ସେତେବେଳେ ହିଁ ସେହି ସମାଜରେ ମୌଳବାଦୀ ମାନଙ୍କର ପ୍ରଭୁତ୍ୱ ବିସ୍ତାର ଲାଗି ଅବସର ସୃଷ୍ଟି ହୁଏ । ସମୁଦାୟରୁ ଏକ ଗୋଷ୍ଠୀକୁ ସୈନ୍ୟରେ ରୂପାନ୍ତରିତ କରିବା ସେତେବେଳେ ମୌଳବାଦୀଙ୍କ ପାଇଁ ସହଜ ହୋଇଯାଏ । ଗୁଜରାଟ ଘଟଣା ପରେ ଏ ସମୁଦାୟ ଭିତରେ ବିଚ୍ଛିନ୍ନତାବୋଧ ଖୁବ୍ ବଢ଼ିଛି । ଯେଉଁ ବିଚ୍ଛିନ୍ନତାବୋଧକୁ ଭାରତ ଓ ଭାରତ ବାହରର ମୌଳବାଦୀ ଆତଙ୍କବାଦୀମାନେ ନିଜ ନିଜର ସଂକୀର୍ଣ୍ଣ ସ୍ୱାର୍ଥରେ ବ୍ୟବହାର କରିବାରେ ସଫଳ ହୋଇଛନ୍ତି । ବେକାରୀ, ସଢୁଥିବା ଯୁବକଠୁଁ ଆରମ୍ଭ କରି ଉଚ୍ଚଶିକ୍ଷା ପ୍ରାପ୍ତ ଯୁବକମାନଙ୍କୁ ଆତଙ୍କବାଦୀରେ ପରିଣତ କରିବା ଏମାନଙ୍କ ପାଇଁ ସମ୍ଭବ ହୋଇଛି । ଆତଙ୍କବାଦୀ ହେବା ପଛରେ ଏଠି କୌଣସି ବୃହତ୍ତର ଲକ୍ଷ୍ୟ ଅପେକ୍ଷା ଐତିହାସିକ ଉପେକ୍ଷା ଓ ଅତ୍ୟାଚରର ପ୍ରତିଶୋଧ ହିଁ ମୂଳ ପ୍ରେରଣା ପାଲଟିଛି । ତେଣୁ ଯେତେବେଳେ ବନ୍ଦୀ ଆତଙ୍କବାଦୀଙ୍କୁ ପଚରାଯାଉଛି ସେ କହୁଛି- ଆମେ ମାରିଲେ କଷ୍ଟ ହେଉଛି, ଅମାନବୀୟ ଲାଗୁଛି କିନ୍ତୁ ଯେତେବେଳେ ଇସ୍ରାଏଲ ମାରୁଛି, ଇରାକରେ ମାରୁଛ, ଗୁଜରାଟରେ ମାରୁଥିଲ ସେତେବେଳେ ? 'ନରିମେନ୍ ହାଉସ୍'କୁ ଆକ୍ରମଣ ବେଳେ ତାକୁ ଲାଗୁଛି ସେମାନେ ଇସ୍ରାଏଲୀ ଆକ୍ରମଣର ପ୍ରତିଶୋଧ ନେଉଛନ୍ତି । ନରିମେନ୍ ହାଉସ୍ ହେଲା ଜିଉମାନଙ୍କ ରହଣି ସ୍ଥଳ । ସମାନ ରକମର ପ୍ରତିକ୍ରିୟା ଥିଲା ଆମେରିକାର ଟ୍ରେଡ଼ଟାୱାର ଆକ୍ରମଣ

ବେଳେ । ଟ୍ରେଡ୍ ଟାୱାର ଆକ୍ରମଣ ଓ ଲଣ୍ଡନର ବମ୍ବ୍ଲାଷ୍ଟ ହୋଇଛି ଇରାକ ଓ ଆଫଗାନିସ୍ଥାନ ଉପରେ ହେଉଥିବା ନାରକୀୟ ଆକ୍ରମଣ ପରେ। ଐତିହାସିକ ଉପେକ୍ଷା ଅବହେଳା, ବହିଷ୍କାର, ତିରସ୍କାର, ଅସ୍ୱୀକାର ଓ ଶେଷରେ ସଂଖ୍ୟାଗରିଷ୍ଠତାକୁ ନେଇ ଆମର ଅହଂରୁ ଜନ୍ମିତ ଦଙ୍ଗାଜନିତ ଗଣହତ୍ୟା, ଧର୍ଷଣ, ଲୁଟ୍‌ରୁ ଚେରେଇଥିବା ବିଚ୍ଛିନ୍ନତାବୋଧରୁ ଏ ସମୁଦାୟକୁ ମୁକ୍ତ କରିବାର ଆନ୍ତରିକ ପ୍ରୟାସ ବିନା ଆତଙ୍କବାଦ ଓ ଆତଙ୍କବାଦୀ ଦଳଙ୍କ ଦ୍ୱାରା ପ୍ରଚାରିତ ପ୍ରସାରିତ ତତ୍ତ୍ୱ ଓ ବିଚାରର ପ୍ରଭାବରୁ ଦେଶ ଓ ସମାଜକୁ ସୁରକ୍ଷିତ କରାଯାଇ ନପାରେ ।

ଏ ଦିଗରେ କିଛି ପଦକ୍ଷେପ ନେବା ପୂର୍ବରୁ ମୁସଲିମ ସମୁଦାୟଙ୍କ ପ୍ରତି ସଂଖ୍ୟାଗରିଷ୍ଠ ହିନ୍ଦୁଙ୍କ ଦୃଷ୍ଟିକୋଣରେ ପରିବର୍ତ୍ତନ ଆଣିବା ଜରୁରୀ। ଆମ ଦୃଷ୍ଟିଦୋଷ ପଛରେ ରହିଛି ଆମ ଇତିହାସବୋଧ । ମୁସଲିମ ସମୁଦାୟକୁ ବୁଝିବା ଦିଗରେ ଏପର୍ଯ୍ୟନ୍ତ ଅନ୍ତରାୟ ହୋଇଛି ଏଇ ଇତିହାସବୋଧ । ଭାରତୀୟଙ୍କ ଇତିହାସବୋଧ ଦୁର୍ବଳ, ସେଥିରେ ପୁଣି ଆମ ଇତିହାସ ଦୃଷ୍ଟିଟି ନିର୍ମିତ ହୋଇଛି ଆକ୍ରମଣକାରୀ ବିଦେଶୀ ଇଂରେଜ ଓ ସଂସ୍କୃତ ଶିକ୍ଷିତ ବ୍ରାହ୍ମଣବାଦୀଙ୍କ ଦ୍ୱାରା। ଜଣେ ଶାସନ ପାଇଁ ବିଭାଜନର ନୀତିକୁ ବଳ ଦେଉଥିବା ବେଳେ ଅନ୍ୟ ଗୋଷ୍ଠୀଟି ସଚେତନ/ଅସଚେତନ ଭାବରେ ହେଉ ନିଜ ଜାତି ଓ ବର୍ଗ ଆବିଳତାରୁ ମୁକ୍ତ ହୋଇ ପାରିନାହିଁ। ଅନ୍ୟପଟେ ମିଥ୍ ଓ କିମ୍ବଦନ୍ତୀରେ ଆମେ ଖୁବ୍ ବିଶ୍ୱାସୀ। ତାର ବି ଏକ ସୀମା ଅଛି। ଆମର ଲିଖିତ ଇତିହାସଟି ଅସଂପୂର୍ଣ୍ଣ, ଖଣ୍ଡିତ ଓ ଅପର୍ଯ୍ୟାପ୍ତ। ସେ ଅନୁରୂପ ଆମର ଅତୀତ ଓ ବର୍ତ୍ତମାନର ବିଶ୍ଳେଷଣ। ମୁଖ୍ୟତଃ ପ୍ରାଚୀନ ଯୁଗ ଓ ମଧ୍ୟଯୁଗକୁ ନେଇ ଆମର ଧାରଣାଟି ସାଂପ୍ରଦାୟିକତାବାଦୀ। ସେ ଧାରଣାର ବିପଦ ଦିଗଟି ହେଲା ଆମେ ବ୍ରିଟିଶରଙ୍କ ଭଳି ମୁସଲିମ ଓ ଖ୍ରୀଷ୍ଟିଆନ ସମୁଦାୟକୁ ବିଦେଶୀ ମନେ କରୁ। ଭୁଲ ଇତିହାସବୋଧ ସହିତ ମିଛ ମିଥ୍ ଓ ଅର୍ଦ୍ଧସତ୍ୟଗୁଡ଼ିକର ବ୍ୟାପକ ପ୍ରଚାରରେ ବିଭ୍ରାନ୍ତ ଆମର ମାନସିକତା (ଉଭୟ ହିନ୍ଦୁ ଓ ମୁସଲିମ ସମୁଦାୟର) ।

ସଂକ୍ଷେପରେ ମିଥ୍‌ଗୁଡ଼ିକୁ ଫେଡ଼ିବା । ସଂକ୍ଷେପରେ ଧର୍ମନିର୍ବିଶେଷରେ ପ୍ରାୟ ପ୍ରଜା ଅତ୍ୟାଚାରିତ। ସବୁଧର୍ମରେ ଆଙ୍ଗୁଠିଗଣା କିଛି ଭଲ ଶାସକ ଥାଆନ୍ତି ଏ ସତ୍ୟକୁ ଅସ୍ୱୀକାର କରି କେବଳ ମୁସଲିମ ଶାସକ ଅତ୍ୟାଚାରୀ କହିବାର କିଛି ଅର୍ଥ ନାହିଁ। ମରହଟ୍ଟା ଓ ଆମ ଗଡ଼ଜାତ ରାଜାମାନେ କ'ଣ ଅତ୍ୟାଚାରୀ ନଥିଲେ ? ତା ଛଡ଼ା ମଧ୍ୟଯୁଗରେ ହିନ୍ଦୁ ରାଜା ଓ ଜମିଦାର ହୁଅନ୍ତୁ କି ମୁସଲିମ ସମସ୍ତିଙ୍କ ପ୍ରଶାସନ ଓ ସୈନ୍ୟ ବିଭାଗରେ ଦୁଇ ଧର୍ମର ଲୋକ ଥିଲେ । ସେ ଶିବାଜୀ ହୁଅନ୍ତୁ କି ଆକବର। ହିନ୍ଦୁ ରାଜା ଓ ମୋଗଲମାନଙ୍କ ଲଢ଼େଇ ଥିଲା ନିଜ ସାମ୍ରାଜ୍ୟ ବିସ୍ତାରର ଉଦ୍ଦେଶ୍ୟ ନେଇ। କେହି ଧର୍ମ ଦୃଷ୍ଟିରୁ ପରସ୍ପରର ଶତ୍ରୁ ନଥିଲେ। ଠିକ୍ ସେମିତି ଉଭୟ ହିନ୍ଦୁ ଓ ମୁସଲିମ ଶାସକ ବିଜୟର ଚିହ୍ନ ସ୍ୱରୂପ ବିଜିତ

ରାଜାର ମନ୍ଦିର ଓ ମସଜିଦ୍ ଯେମିତି ଭାଙ୍ଗିଛନ୍ତି ଠିକ୍ ସେମିତି ମନ୍ଦିର ମସଜିଦ୍ ନିର୍ମାଣ ବି କରେଇଛନ୍ତି । ଧର୍ମ ପୀଠରୁ ସଂପତ୍ତି ଲୁଟ ଓ ବିଜିତକୁ ଅପମାନିତ କରିବାର ନିଶା ମନ୍ଦିର ମସଜିଦ୍ ପ୍ରତିଷ୍ଠା କରି ନିଜ ପ୍ରଜାକୁ ସନ୍ତୁଷ୍ଟ କରି ନିଜ ମର୍ଯ୍ୟଦା ବଢ଼େଇବାର ନିଶା ଉଭୟ ଧର୍ମର ଶାସକ ଭିତରେ ଥିଲା । ଆଉରେଙ୍ଗଜେବ ମନ୍ଦିର ଭାଙ୍ଗିଛନ୍ତି, ଗଢ଼େଇଛନ୍ତି ବି । ହିନ୍ଦୁ ରାଜା ମାନେ ମସଜିଦ ବି ନିର୍ମାଣ କରିଛନ୍ତି ଓ ବୌଦ୍ଧ ଏବଂ ଜୈନ ମନ୍ଦିର ମଧ୍ୟ ଭାଙ୍ଗିଛନ୍ତି । ଦେଶ ବିଭାଜନ ପାଇଁ ସାଧାରଣ ମୁସଲିମ କି ହିନ୍ଦୁ ନୁହେଁ ମୌଳବାଦୀ ହିନ୍ଦୁ ଓ ମୁସଲିମ ସଂଗଠନ ଓ ଇଂରେଜୀ ଷଡ଼ଯନ୍ତ୍ର ଦାୟୀ । ବିଦେଶରେ ଭାରତୀୟ କ୍ରିକେଟ ଦଳର ବିଜୟ ମନାଉଥିବା ପ୍ରବାସୀ ଭାରତୀୟଙ୍କୁ ସେ ଦେଶରେ ଦେଶଦ୍ରୋହୀ କୁହାଯାଏ କି ? ଖେଳକୁ ଜାତୀୟତାବାଦର ମାପକାଠି କରାଯାଏନି । ଠିକ୍ ସେମିତି ହିନ୍ଦୁ ନାରୀଙ୍କ ଦୁଃସ୍ଥିତି ପାଇଁ ମୁସଲିମ ସମାଜ ନୁହେଁ ଆମର ପୁରୁଷ ପ୍ରାଧାନ୍ୟ, ସାମନ୍ତବାଦୀ ସମାଜ ଓ ଧାର୍ମିକ ବ୍ୟବସ୍ଥା ଦାୟୀ । ପୁରୁଷ ମହିଳା (୧୦୦୦-୯୭୦) ଅନୁପାତ ଚାରି ଚାରିଟା ବିବାହର ସୁଯୋଗ ଦିଏନାହିଁ । ମୁସଲିମ ସମାଜର ତୁଷ୍ଟିକରଣ ହେଇଥିଲେ ସେମାନେ ଏତେ ସଂଖ୍ୟାରେ ଭୂମିହୀନ, ନିରକ୍ଷର, ବେରୋଜଗାର ହୋଇନଥାନ୍ତେ । ପ୍ରଶାସନ, ପୁଲିସ, ସୈନ୍ୟ ଓ ଅନ୍ୟ ସରକାରୀ ଚାକିରିରେ ସେମାନଙ୍କ ଉପସ୍ଥିତି ଏତେ ନଗଣ୍ୟ ହୋଇନଥାନ୍ତା । ଆମ ଶାସକ ଶ୍ରେଣୀ କେବଳ ଧର୍ମାନ୍ଧ ମୌଳବାଦୀଙ୍କୁ ତୁଷ୍ଟିକରଣ କରି ମୁସଲିମ ନାରୀଙ୍କୁ ଏବଂ ସାମଗ୍ରିକ ଭାବେ ମୁସଲିମ ସମାଜକୁ ପଛୁଆ କରି ରଖିଛି ଓ ନିଜ ଭୋଟ ବ୍ୟାଙ୍କ ରାଜନୀତିକୁ ଏଯାଏଁ ଜାରି ରଖିଛି । ଧର୍ମାନ୍ତରଣ ପାଇଁ ଖଣ୍ଡା ଅପେକ୍ଷା ସୁଫିସନ୍ଥଙ୍କ ସରଳ ନିରାଡ଼ମ୍ବର ଜୀବନ ଓ ଦୁଃଖୀଙ୍କ ସହ ସେମାନଙ୍କର ମାନବୀୟ ସଂପର୍କ ଓ ଅନ୍ୟ ଦିଗରେ ଆମର ରଢ଼ୀ ଜାତିପ୍ରଥା ଓ ଜମିଦାରୀ ଅତ୍ୟାଚାର ଦାୟୀ । ଏକଥାକୁ ବିବେକାନନ୍ଦ ବି ସ୍ୱୀକାର କରିଛନ୍ତି । ଭୁଲ ଇତିହାସବୋଧ ଓ ମିଛ ମିଥ୍‌ର ବ୍ୟାପକ ପ୍ରଚାର ଆମକୁ ଏତେ ବିଭ୍ରାନ୍ତ କରି ରଖିଛି ଯେ ଆମେ ସତକୁ ଦେଖିବା ବୁଝିବାର ଦୃଷ୍ଟି ହରେଇବସିଛୁ । ଚେତନ ଅବଚେତନ ସ୍ତରରେ ଆମେ ଅନେକଟା ମୁସଲିମ ବିରୋଧୀ ହୋଇସାରିଛୁ ।

ମଧ୍ୟଯୁଗ ଥିଲା ଯୁଦ୍ଧ, ବିବାଦ ଓ ସମନ୍ୱୟର ସମୟ । ସମୟକ୍ରମେ ସବୁଧର୍ମର ଲୋକ ପରସ୍ପରର ଅସ୍ତିତ୍ୱ ଓ ଅସ୍ମିତାକୁ ଗ୍ରହଣ କରିନେଇ ଥିଲେ । କଳା, ସାହିତ୍ୟ, ସ୍ଥାପତ୍ୟ, ସଙ୍ଗୀତ, ସବୁଥିରେ ମିଳିତ ସଂସ୍କୃତିର ସ୍ୱାକ୍ଷର ଥିଲା ସ୍ପଷ୍ଟ । ସମନ୍ୱୟର ବଡ଼ ପ୍ରମାଣଥିଲା ୧୮୫୭ର ଇଂରେଜ ବିରୋଧୀ ଲଢ଼େଇରେ ଉଭୟ ଧର୍ମର ଲୋକଙ୍କ ସମାନ ସଂପୃକ୍ତି । ଏକଥା ତ ସାବରକର ବି ମାନିଛନ୍ତି । ୧୮୫୭ ପରେ ଇଂରେଜୀ ଷଡ଼ଯନ୍ତ୍ରର ଫଳସ୍ୱରୂପ ହିଁ ଆମ ଇତିହାସର ସାଂପ୍ରଦାୟିକ ବିଶ୍ଳେଷଣ ହେଲା ଓ ସାଂପ୍ରଦାୟିକ ବିଦ୍ୱେଷର ସୂତ୍ରପାତ ହେଲା । ଇତିହାସକୁ ଆଧାର କରି ହିନ୍ଦୁ ଓ ମୁସଲିମ ମୌଳବାଦୀ ଧର୍ମର ଆଧାରରେ

ବିଦ୍ୱେଷ ସୃଷ୍ଟରେ ସଫଳ ହେଲେ, ଯାହା ଆଜି ଯାଏଁ ଜାରି ରହିଛି । ଅସଲ କଥା ହେଉଛି ସଂଖ୍ୟାଗରିଷ୍ଠ 'ହିନ୍ଦୁ' ମୁସଲିମ ସମୁଦାୟ ପ୍ରତି କି ଦୃଷ୍ଟି, ଧାରଣା ଓ ବିଚାର ରଖିବ। ପ୍ରଥମେ ଏଇ ସତ୍ୟକୁ ମାନିବା ଜରୁରୀ ଯେ, ମୁସଲିମ ସମୁଦାୟ ଭାରତ ତଥା ଭାରତୀୟର ସଂସ୍କୃତିର ଅନିବାର୍ଯ୍ୟ ଅଂଗ। ପାକିସ୍ଥାନ ଓ ଇଣ୍ଡୋନେସିଆପରେ ଭାରତ ହେଲା ଏକ ମୁସଲିମ ବହୁଳ ଦେଶ। ଏତେ ବଡ଼ ଜନ ସମୂହକୁ ଆର.ଏସ୍.ଏସ୍. କି ଭାଜପାର ତତ୍ତ୍ୱ (ପୁଣ୍ୟ ଭୂମି ଆଧାରରେ ବିଦେଶୀ ମନେ କରିବା, ଦ୍ୱିତୀୟ ଶ୍ରେଣୀର ନାଗରିକ କରି ରଖିବା, ଇସଲାମ ଧର୍ମର ପ୍ରଚାର ପ୍ରସାରରୁ ବିରତ କରିବା ବା ସାମଗ୍ରିକ ଭାବେ ସଂଖ୍ୟାଗରିଷ୍ଠ ହିନ୍ଦୁଙ୍କ ଦୟାର ପାତ୍ର କରିରଖିବା ନୀତି) ମୋଟେ କାର୍ଯ୍ୟକାରୀ କିମ୍ବା ମାନବୀୟ ରଣନୀତି ହୋଇ ନ ପାରେ। ସେମାନେ ଏ ଦେଶରେ ରହିବେ ଏବଂ ଏ ଦେଶକୁ ନିଜର ମନେ କରିବେ। ବାକି ସମୂହ ଓ ଦେଶର ସ୍ୱାର୍ଥ ସହ ନିଜର ସ୍ୱାର୍ଥକୁ ଏକ ମନେ କରିବେ। ଏକା ସାଙ୍ଗରେ ନିଜର ଓ ଦେଶର ସମୃଦ୍ଧିରେ ଭୂମିକା ଗ୍ରହଣ କରିବେ ସେ ହେବ ଆମର ଜାତୀୟ ଉଦ୍ଦେଶ୍ୟ। କିନ୍ତୁ ସେ ଭୂମିକା ପାଇଁ ସେ ପକ୍ଷରୁ ସ୍ୱତଃସ୍ଫୂର୍ତ୍ତ ଆଗ୍ରହ ଯେମିତି ଜରୁରୀ ଠିକ୍ ସେମିତି ସେ ଭୂମିକା ନିର୍ବାହ ପାଇଁ ତାଙ୍କୁ ଆତ୍ମବିଶ୍ୱାସୀ ଓ ଯୋଗ୍ୟ କରିବାର ଦାୟିତ୍ୱ ରାଷ୍ଟ୍ରର। ସରକାର ପ୍ରଥମ ପଦକ୍ଷେପଟି ଉଠେଇଲେ ଭଲ । ଆର୍ଥିକ ଓ ଶିକ୍ଷାର ସ୍ଥିତିରେ ଉନ୍ନତି ପାଇଁ ନିର୍ଦ୍ଦିଷ୍ଟ ସମୟ ସୀମା ଭିତରେ ଏକ ଲକ୍ଷ୍ୟ ଧାର୍ଯ୍ୟ କରି ଅନ୍ତତଃ ସରକାରୀ ରୋଜଗାର (ଅମଲାତନ୍ତ, ସୈନ୍ୟ ଓ ପୁଲିସ, ବିଭାଗ)ରେ ସେମାନଙ୍କ ପାଇଁ କିଛି ବ୍ୟବସ୍ଥା କରାଯାଇପାରେ । ଦ୍ୱିତୀୟରେ ଆତଙ୍କବାଦ ଦମନ ନାଁରେ ନିରୀହ ମୁସଲିମଙ୍କୁ ଯେପରି ଶରବ୍ୟ ନ କରାଯାଏ । ଆତଙ୍କବାଦ ସହଧର୍ମକୁ ଯୋଡ଼ା ନଯାଉ। ଏ କଥାଟି ଉଭୟ ସରକାର ଓ ରାଜନୈତିକ ଦଳ ପାଇଁ ପ୍ରଯୁଜ୍ୟ। ଦ୍ୱିତୀୟରେ ସେ ସମୁଦାୟରେ ଥିବା ସଂଖ୍ୟାନ୍ୟୂନ ଉଦାର ଗୋଷ୍ଠୀକୁ ପ୍ରୋତ୍ସାହିତ କରି ମାନବ ବିରୋଧୀ, ନାରୀ ବିରୋଧୀ ଗଣତାନ୍ତ୍ରିକ ମୂଲ୍ୟବୋଧର ବିରୋଧୀ ମୌଳବାଦୀଙ୍କୁ ସମର୍ଥନ କରି ଚାଲିଥିବା ଭୋଟବ୍ୟାଙ୍କ ରାଜନୀତିର ପ୍ରତ୍ୟାଖ୍ୟାନ କରାଯିବା ଉଚିତ୍ । ଉଭୟ ଧର୍ମର ଧାର୍ମିକ ସମୁଦାୟର ଆସ୍ଥା, ବିଶ୍ୱାସ, ଧର୍ମପୀଠର ସୁରକ୍ଷା ଓ ଧାର୍ମିକ ବିଦ୍ୱେଷ ଓ ଦଙ୍ଗା ଭଳି ଗତିବିଧିର ଦୃଢ଼ ଦମନ ସହ ଏସବୁ ଗତିବିଧିରେ ଆନ୍ତରିକତା ରହିଲେ ଏ ସମୁଦାୟ ଭିତରେ ବଢୁଥିବା ବିଚ୍ଛିନ୍ନତାବୋଧ ଅନେକଟା କମିବ।

ହିନ୍ଦୁମୌଳବାଦୀଙ୍କ 'ହିନ୍ଦୁରାଷ୍ଟ୍ର' ତତ୍ତ୍ୱ ମୁସଲିମ ସମୁଦାୟ ଭିତରେ ବିଚ୍ଛିନ୍ନତା ଓ ଅସୁରକ୍ଷା ସୃଷ୍ଟି କରି ଆସିଛି। ସେମାନେ ନିଜ ଅସ୍ତିତ୍ୱ ଓ ଅସ୍ମିତା ପ୍ରତି ଆକ୍ରମଣକୁ ନେଇ ଆତଙ୍କିତ ରହୁଛନ୍ତି। ହିନ୍ଦୁରାଷ୍ଟ୍ର ସବଂଧିତ ତତ୍ତ୍ୱ ଓ ବିଚାରକୁ ହିନ୍ଦୁ ସମୁଦାୟ ତରଫରୁ ପ୍ରତ୍ୟାଖ୍ୟାନ ଏ ଆଶଙ୍କା ଓ ଆତଙ୍କକୁ ପ୍ରଶମିତ କରିବ। ଭାରତ ଏକ ବହୁଧର୍ମ ଓ ସଂସ୍କୃତିର

ଦେଶ ଓ ବିବିଧତାହିଁ ତାର ଶକ୍ତି ତଥା ଗଣତାନ୍ତ୍ରିକ ବ୍ୟବସ୍ଥାର ସୁରକ୍ଷା କବଚ। ଆନ୍ତରିକତା ସହ ଏକଥା ସଭିଏଁ ବୁଝିବା ଜରୁରୀ।

ତୃତୀୟରେ ଏ ସମୁଦାୟର ନିଜସ୍ୱ ଆତ୍ମସମୀକ୍ଷା। ନିଜର ସାମାଜିକ ଆର୍ଥିକ ସ୍ଥିତି ଓ ସମସ୍ୟାର ସ୍ପଷ୍ଟ ବୁଝାମଣା ଓ ମୌଳବାଦୀ / ଜେହାଦୀଙ୍କ ଗତିବିଧିର ପ୍ରତ୍ୟାଖ୍ୟାନ। ହିନ୍ଦୁ-ମୁସଲିମ ସମୁଦାୟ ଭିତରେ ସୃଷ୍ଟି କରାଯାଇଥିବା ଅବିଶ୍ୱାସ, ସନ୍ଦେହ ଓ ତିକ୍ତତା ଦୂର ଲାଗି ଆମେ ଭାରତୀୟ ସଂସ୍କୃତିକୁ ସମ୍ବାଦ ଓ ସମନ୍ୱୟର ଆଧାର କରିପାରିବା। ଏହାର ଓଲଟା ଦିଗରେ ଗଲେ ହିନ୍ଦୁ ମୌଳବାଦୀଙ୍କ ଷଡ଼ଯନ୍ତ୍ର ଅନୁରୂପ ଦଙ୍ଗା ଏବଂ ଶେଷରେ ହିନ୍ଦୁ ଆତଙ୍କବାଦୀ ଗୋଷ୍ଠୀ (ଅଭିନବ ଭାରତ) ନିର୍ମାଣକୁ ଯଦି ନୈତିକ ସମର୍ଥନ ମିଳେ ତେବେ ଦଙ୍ଗାର ରକ୍ତରେ ଭାରତକୁ ଭିଜିବାରୁ କେହି ରକ୍ଷା କରି ପାରିବେ ନାହିଁ।

ଅଣରାଷ୍ଟ୍ରତତ୍ତ୍ୱଙ୍କ ଆତଙ୍କ ଭିତରେ ଉଲ୍‌ଫା, ଏଲ୍.ଟି.ଟି.ଇ., କାଶ୍ମୀରରେ କର୍ମରତ ଉଗ୍ରବାଦୀ ସଂଗଠନ ଏବଂ ଅତୀତର ଖଲିସ୍ଥାନ ଓ ମହାରାଷ୍ଟ୍ର ନବନିର୍ମାଣ ସେନାଙ୍କ କଥା ବିଚାରକୁ ନେଇପାରିବା। ସ୍ଥାନୀୟ ଲୋକଙ୍କ ଭିତରୁ ଏକ ବଡ଼ ସମୁଦାୟ ଏମାନଙ୍କ ଗତିବିଧିକୁ ନ୍ୟାୟ ଓ ସ୍ୱାଧୀନତାର ଆନ୍ଦୋଳନ ରୂପେ ଦେଖିଥାଏ। ଏଇ ଅଣରାଷ୍ଟ୍ରତତ୍ତ୍ୱ ମାନେ ଏତେ ବଳଶାଳୀ ଓ କ୍ଷମତାଶାଳୀ ହେଲେ କେମିତି ? ପ୍ରଥମ କଥା ହେଲା ସ୍ଥାନୀୟ ସମସ୍ୟା ପ୍ରତି ସରକାରଙ୍କର ନିରନ୍ତର ଅବହେଳା ଓ ଉପେକ୍ଷା, ନୀତିଗତ ବିଫଳତା ଓ ଦ୍ୱିତୀୟରେ ହେଲା ମଜଭୁତ କେନ୍ଦ୍ର ନିର୍ମାଣ ପାଇଁ ରାଜ୍ୟ ବା ପ୍ରାନ୍ତ ଗୁଡ଼ିକୁ ଦୁର୍ବଳ କରି ରଖିବା ଓ ସେମାନଙ୍କର ନ୍ୟାଯ୍ୟ, ସ୍ୱାୟତ୍ତର ଦାବିକୁ ଅସ୍ୱୀକାର। ତୃତୀୟ କଥାଟି ହେଲା କଂଗ୍ରେସ ଓ ଦକ୍ଷିଣପନ୍ଥୀ ରାଜନୈତିକ ଦଳର ଭୋଟ ରାଜନୀତି। ବିଭିନ୍ନ ରାଜ୍ୟରେ ନିରଙ୍କୁଶ କ୍ଷମତା ପାଇଁ କେଉଁଠି ଧାର୍ମିକ, କେଉଁଠି ସାଂସ୍କୃତିକ ବିଚ୍ଛିନ୍ନତାବାଦୀ ଓ ମୌଳବାଦୀ ସଂଗଠନ ଗୁଡ଼ିକୁ ପ୍ରୋତ୍ସାହିତ କରିଛି କଂଗ୍ରେସ। ଏ ଦିଗରେ ଇନ୍ଦିରାଗାନ୍ଧୀ ଓ ଭିନ୍ଦରନେୱାଲା ସଂସ୍କରଣକୁ ଉଦାହରଣ ରୂପେ ନେଇପାରିବା। ପଞ୍ଜାବରେ ଅକାଳୀ ଦଳକୁ ଦୁର୍ବଳ କରିବା ଓ କଂଗ୍ରେସକୁ କ୍ଷମତାରେ ଆଣିବା ପାଇଁ ଇନ୍ଦିରାଗାନ୍ଧୀ ଭିନ୍ଦରନେୱାଲାକୁ ସୃଷ୍ଟି କରିଥିଲେ। ଶେଷରେ ସେ ପ୍ରତିକ୍ରିୟାରୁ ଜନ୍ମନେଲା ଖଲିସ୍ଥାନର ଆତଙ୍କବାଦୀ ଗତିବିଧି। ଠିକ୍ ସେମିତି ମହାରାଷ୍ଟ୍ରରେ ଶିବସେନାକୁ ଶକ୍ତିଶାଳୀ କରେଇବାରେ କଂଗ୍ରେସର ଭୂମିକା ରହିଛି। 'ଉଲ୍‌ଫା' ହେଉ କି ଉତ୍ତରପୂର୍ବର ଅସ୍ଥିରତା ପାଇଁ ଅନେକ ଦୃଷ୍ଟିରୁ କଂଗ୍ରେସର ନୀତି ଦାୟୀ, ଠିକ୍ ସେମିତି କଂଗ୍ରେସର ଭୁଲ କାଶ୍ମିର ନୀତି ଓ ସେ ଭୁଲ କରିବା ପାଇଁ ଚାପ ଦେଇ ଆସିଥିବା ଜନସଂଘ ଯୋଗୁଁ ଆଜି କାଶ୍ମୀରବାସୀଙ୍କର ମନ ହୃଦୟ ଭାରତଠୁ ବିଚ୍ଛିନ୍ନ। ଠିକ୍ ସେମିତି ହିନ୍ଦୁ ଓ ମୁସଲିମ ମୌଳବାଦୀ ପ୍ରେରିତ ଆତଙ୍କବାଦ ନିର୍ମାଣ ପଛରେ କଂଗ୍ରେସ ଓ ଭାଜପାର ସଂକୀର୍ଣ୍ଣ ରାଜନୀତି ଦାୟୀ। ଗୋଟିଏ ଉଦାହରଣ ଯଥେଷ୍ଟ ହେବ। ରାଜୀବ ଗାନ୍ଧୀ ମୁସଲିମ ମୌଳବାଦୀଙ୍କ ତୁଷ୍ଟିକରଣ ପାଇଁ ସାହାବାନୁ ମାମଲାରେ ହସ୍ତକ୍ଷେପ

କଲେ ଓ ହିନ୍ଦୁ ମୌଳବାଦୀଙ୍କୁ ଖୁସ୍ କରିବା ପାଇଁ ରାମ ମନ୍ଦିରର ଦ୍ୱାର ଖୋଲିଦେଲେ। ଠିକ୍ ସେମିତି ବାବ୍‌ରି ମସଜିଦ ପଛରେ ଉଭୟ କେନ୍ଦ୍ର ଓ ରାଜ୍ୟ ଏବଂ ଗୁଜରାଟ ଦଙ୍ଗା ପଛରେ ରାଜ୍ୟ ସରକାରଙ୍କ ପ୍ରଚ୍ଛନ୍ନ ସମର୍ଥନ ରହିଲା ଯାହା ଅନେକ ମୁସଲିମ ଯୁବକଙ୍କୁ ତଥାକଥିତ ଜେହାଦୀରେ ପରିବର୍ତ୍ତିତ କଲା ଏବଂ ଆମେ ବ୍ଲାଷ୍ଟ ପରେ ବ୍ଲାଷ୍ଟର ଶୃଙ୍ଖଳ ଦେଖିବାକୁ ପାଇଲୁ।

ବମ୍ବେ ଘଟଣାସହ ବହୁଲୋକ ପାକିସ୍ତାନ ସହିତ ଯୁଦ୍ଧ ନହେଲେ ପାକିସ୍ତାନରେ ରହିଥିବା ଆତଙ୍କବାଦୀ ଶିବିର ଉପରେ ଆକାଶ ମାର୍ଗରୁ ଆକ୍ରମଣ କଥା ଯୋର୍‌ସୋର୍‌ରେ ଉଠାଇଲେ। ଭାରତ-ପାକ୍ ଯୁଦ୍ଧ କେବଳ ଏକ ଦାୟିତ୍ୱହୀନ ଅପରିଣାମଦର୍ଶୀ ଚାହିଁବ କିମ୍ବା ଭାରତ ଓ ପାକିସ୍ତାନରେ ଥିବା ମୁସଲିମ ଓ ହିନ୍ଦୁ ଅତିବାଦୀମାନେ ଚାହିଁବେ। ଆଉକିଛି ଲୋକ ଯୁଦ୍ଧ ସଂପର୍କୀୟ କ୍ଷୟକ୍ଷତି ଓ ସାମ୍ଭାବ୍ୟ ପରିଣତିକୁ ନେଇ ଅଜ୍ଞାନତା ବଶତଃ ଯୁଦ୍ଧ ହେଉ ବୋଲି କହିଥାନ୍ତି। ଗୋଟିଏ ସମୟ ଥିଲା ଆମେରିକାର ସ୍ୱାର୍ଥ ଓ ସମର୍ଥନରେ ପାକିସ୍ଥାନ ଓ ଆଫଗାନିସ୍ଥାନରେ ପ୍ରତିପାଳିତ ହେଉଥିବା ଜେହାଦୀ ଓ ତାକୁ ସାମାଜିକ ସାଂସ୍କୃତିକ ଭିତ୍ତି ହେଉଥିବା ଧାର୍ମିକ ମୌଳବାଦୀ ସଂଗଠନ ଓ କଟ୍‌ଟର, ମୁଲ୍ଲା, ଇମାମ୍, ଅମୀନ୍ ମାନେ ଆଜି ଖୋଦ୍ ପାକିସ୍ଥାନ ପାଇଁ ମୁଣ୍ଡବ୍ୟଥାର କାରଣ ହୋଇସାରିଛନ୍ତି। ପାକିସ୍ଥାନ ନିଜେ ଆଜି ଆତଙ୍କବାଦର ବଡ଼ ଶିକାର। ଅନେକ ସମୟରେ ଏହି ଜେହାଦୀ ଓ ମୌଳବାଦୀଙ୍କୁ ମିଲିଟାରୀର ନ ହେଲେ ସରକାରଙ୍କ ସମର୍ଥନ ମିଳିଛି। ଏଭଳି ଶକ୍ତି ଓ ତତ୍ତ୍ୱ କେବେବି ପାକିସ୍ଥାନରେ ଏକ ଗଣତାନ୍ତ୍ରିକ ସରକାର ରହୁ ଓ ସମାଜରେ ଗଣତାନ୍ତ୍ରିକ ମୂଲ୍ୟବୋଧର ସଂସ୍କୃତି ମଜଭୁତ୍ ହେଉ ତାହା ଚାହିଁବ ନାହିଁ। ସେମାନେ ଚାହାନ୍ତି ନାହିଁ ଭାରତ ଓ ପାକିସ୍ଥାନ ଭିତରେ ସଂପର୍କ ମଧୁର ହେଉ। ଚାହାଁନ୍ତି କାଶ୍ମୀର ସମସ୍ୟାର ସମାଧାନ ନହେଉ। ସେସବୁର କାରଣ, ଗଣତନ୍ତ୍ର ଓ ଗଣତାନ୍ତ୍ରିକ ମୂଲ୍ୟବୋଧ ହେଉଛି ମୌଳବାଦୀ ତତ୍ତ୍ୱ, ବିଚାର ଓ ଶକ୍ତିର ବାଧକ। ଏଭଳି ନକାରାତ୍ମକ ତତ୍ତ୍ୱର ଉପସ୍ଥିତିର ଯଥାର୍ଥତା ନିର୍ଭର କରେ ଭାରତ ପାକିସ୍ତାନ ତିକ୍ତ ସମ୍ପର୍କ ଓ ଅସମାଧିତ କାଶ୍ମୀର ସମସ୍ୟାର ଜଟିଳତା ଉପରେ। ଭାରତ ବିରୋଧୀ ପାକ ଜାତୀୟତା କି ପାକ ବିରୋଧୀ ଭାରତୀୟ ଜାତୀୟତାର ଉଦ୍ଦେଶ୍ୟ ମହତ୍ତର, ସକାରାତ୍ମକ ହୋଇପାରେନା। ଭାରତ-ପାକିସ୍ତାନ ସଂପର୍କ ମଧୁର ହେଲେ ଆମ ଜାତୀୟତା ବୃହତ୍ତର ଲକ୍ଷ୍ୟରେ (ଆଭ୍ୟନ୍ତରୀଣ ସମସ୍ୟାର ସମାଧାନ ଓ ବିଶ୍ୱ ରାଜନୀତିରେ ସକାରାତ୍ମକ ହସ୍ତକ୍ଷେପ) ଲାଗିପାରିବ। ଆତଙ୍କବାଦୀ ହୁଅନ୍ତୁ କି ଧାର୍ମିକ ମୌଳବାଦୀ ନିଜ ଗତିବିଧିକୁ ଆଉ ଭାରତ-ପାକ ଜାତୀୟତା ସହ ଯୋଡ଼ିପାରିବେ ନାହିଁ। ଠିକ୍ ସେମିତି କାଶ୍ମୀର ସମସ୍ୟାର ସମାଧାନ ହେଲେ ଉଭୟ ଦେଶ ନିଜ ମିଲିଟାରୀ ଖର୍ଚ୍ଚ କମ୍ କରି ନିଜ ଅର୍ଥନୀତିକୁ ସଜାଡ଼ି ପାରିବେ। ଏ ସମ୍ଭାବନାର ଫୁଲ ଫୁଟିବା ଆଗରୁ ତାକୁ ମାରି ନଦେଲେ ଆତଙ୍କବାଦୀ, ଜେହାଦୀମାନେ ପ୍ରତିପାଳିତ ହେବା ପାଇଁ ଜାଗା ଓ ଯୁକ୍ତି ପାଇବେ କୋଉଠି।

ଠିକ୍ ସେମିତି ମୌଳବାଦୀମାନଙ୍କୁ ମିଛ ଜାତୀୟତା ଓ ଧର୍ମ ସୁରକ୍ଷାର ନାରା ଦେବାର ଅବସର ମିଳିବ କେମିତି। ଭାରତ-ପାକ୍ ସଂପର୍କରେ ଅସ୍ଥିରତା ରହିଲେ କି ଯୁଦ୍ଧର ପରିସ୍ଥିତି ସୃଷ୍ଟିହେଲେ ଏ ପ୍ରକାର ଶକ୍ତି ବଳ ଓ ଅବସର ପାଇବ ନ ହେଲେ ଭାରତ-ପାକିସ୍ତାନ ଦେଶର ସରକାର ଓ ଉଭୟ ଦେଶରେ ପ୍ରଗତିଶୀଳ ଓ ଗଣତନ୍ତ୍ରପ୍ରେମୀଙ୍କ ମିଳିତ ପ୍ରଚେଷ୍ଟାରେ ଏଇ ନକାରାତ୍ମକ ଶକ୍ତିର ଚେର ଛିଣ୍ଡିଯିବାକୁ ସମୟ ଲାଗିବ ନାହିଁ। ଖୁସିର କଥା ଯେ, ପାକିସ୍ତାନରେ ଅସମା ଜାହାଙ୍ଗିର ଭଳି ପ୍ରଗତିଶୀଳ ଲୋକଙ୍କ ଏକ ଛୋଟ 'ନାଗରିକ ସମାଜ'ର ଅଭ୍ୟୁଦୟ ଘଟିଲାଣି, ସେମାନେ ପାକିସ୍ତାନ ସରକାର ବମ୍ବେ ଘଟଣାର ଆସାମୀଙ୍କ ବିରୋଧରେ ଦୃଢ଼ ପଦକ୍ଷେପ ନେଉ ବୋଲି ଦାବୀ କରିବା ସହ ଯୁଦ୍ଧ ପାଗଳାମିରୁ ମୁକ୍ତ ରହିବା ପାଇଁ ପାକିସ୍ତାନୀ ଜନତାଙ୍କୁ ନିବେଦନ କରୁଛନ୍ତି। ଭାରତର ମୁସଲିମ ସମୁଦାୟ ଏପରିକି ଦିଲ୍ଲୀର ଇମାମ୍ ବମ୍ବେ ଆତଙ୍କବାଦୀ ଗତିବିଧିର ଦୃଢ଼ ନିନ୍ଦା କରିଛନ୍ତି। ଏଠି ଗୋଟିଏ କଥା ଗୁରୁତ୍ୱପୂର୍ଣ୍ଣ ହେଲା ଆତଙ୍କବାଦୀ ଓ ମୌଳବାଦୀଙ୍କୁ ଶକ୍ତି ମିଳୁଥିବା ପୁନଃରୁତ୍ଥାନବାଦୀ ତତ୍ତ୍ୱ ଓ ବିଚାରକୁ ନଷ୍ଟ କରିବା ପାଇଁ କିଛି ଦମନକାରୀ ଦୃଢ଼ ପଦକ୍ଷେପ ଓ ହିନ୍ଦୁ ମୁସ୍‌ଲିମ୍ ସମନ୍ୱୟୀ ସଂସ୍କୃତିର ପ୍ରଚାର ପ୍ରସାର ମାଧ୍ୟମରେ ଉଭୟ ଦେଶର ସାଧାରଣ ଜନତାଙ୍କ ଭିତରେ ଆସ୍ଥା ଓ ବିଶ୍ୱାସ ସୃଷ୍ଟି ପାଇଁ ଆନ୍ତରିକତାର ସହ କାମ ହେବ ପ୍ରଥମ ପଦକ୍ଷେପ। ଦ୍ୱିତୀୟରେ ନିଜ ଦେଶର ଆଭ୍ୟନ୍ତରୀଣ ସମସ୍ୟାର ସମାଧାନ ହେଉକି ଆତଙ୍କବାଦର ଦମନ ଅବା ଦ୍ୱିପାକ୍ଷିକ ସଂପର୍କ ସଜାଡ଼ିବା ଲାଗି ଆମେରିକା ପ୍ରତି ମାତ୍ରାଧିକ ନିର୍ଭରଶୀଳତା ପରିହାର କରିବାକୁ ହେବ। ନହେଲେ ଆମେରିକା ଭଳି ଦେଶ, ନିଜର ମିଲିଟାରୀ ତଥା ବାଣିଜ୍ୟିକ ସ୍ୱାର୍ଥ ପାଇଁ କେବେ ଏ ଦୁଇ ଦେଶ ଭିତରେ ଶତ୍ରୁତା ତ ଆଉ କେବେ ମିଲିଟାରୀ ଓ ମୌଳବାଦୀ ତତ୍ତ୍ୱଙ୍କୁ ସହଯୋଗ କରି ଦେଶର ଅଭ୍ୟନ୍ତରରେ ଅସ୍ଥିରତା ସୃଷ୍ଟି କରିବ ସେ କଥା କହିହେବ ନାହିଁ। ଭାରତ-ପାକିସ୍ତାନ ନିଜ ସଂପର୍କ ସଜାଡ଼ିବା ସହ ସାର୍କକୁ ମଜବୁତ କରି ପାରିଲେ ଆଗାମୀ ଦିନରେ ପଶ୍ଚିମ ଏସିଆ ଓ ସାମଗ୍ରିକ ଭାବେ ଏସିଆ ତଥା ବିଶ୍ୱ ରାଜନୀତିରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇ ପାରିବେ।

ହିନ୍ଦୁ ଓ ମୁସଲିମ ମୌଳବାଦୀ, ଜେହାଦୀ ଓ ଆତଙ୍କବାଦୀ ଦଳ (ଆର.ଏସ.ଏସ., ମୁସଲିମ ଲିଗ୍, ଅଲକାଇଦା, ଜେସେ ମହମ୍ମଦ, ଅଭିନବ ଭାରତ ଅବା କାଶ୍ମୀରର ତଥାକଥିତ ସ୍ୱାଧୀନତା ସେନାନୀ) ମାନେ ବା ଏମାନଙ୍କ ପ୍ରତି ଆସ୍ଥା ରଖୁଥିବା କିମ୍ବା ମୌଳବାଦୀଙ୍କ କଥାରେ ବିଭ୍ରାନ୍ତ ହେଉଥିବା ଲୋକେ ଏକଥା ବୁଝିବା ଦରକାର ଯେ, ଆଧୁନିକ ଜାତିରାଷ୍ଟ୍ର ନିର୍ମାଣର ଭିତ୍ତି ବା ପ୍ରେରଣା ଧର୍ମ ହୋଇପାରିବ ନାହିଁ। ଧର୍ମ ଆଧାରରେ ପାକିସ୍ତାନ ହୋଇଥିଲା। ଧର୍ମର ଆଧାର ଯଥେଷ୍ଟ ହୋଇଥିଲେ ଏତେ ଶୀଘ୍ର ପାକିସ୍ତାନ ବିଭାଜିତ ହୋଇ ବାଙ୍ଗଲାଦେଶ ଜନ୍ମ ନେଇନଥାନ୍ତା। ଇସଲାମ ଧର୍ମର ବାଖ୍ୟା ସବୁ ଦେଶ କି ସବୁଗୋଷ୍ଠୀ ପାଇଁ ସମାନ ନୁହେଁ। ସିହା-ସୁନ୍ନି ବିବାଦକୁ ଆଧାର କରି ପଶ୍ଚିମଏସିଆ ଓ

ଦକ୍ଷିଣଏସିଆର ଦେଶ ଦେଶ ଭିତରେ ବିବାଦ ରହିଛି। ପ୍ରତି ଦେଶରେ ସିହା-ସୁନ୍ନି ବିବାଦ ରହିଛି। ଶ୍ରେଣୀଗତ ଦ୍ୱନ୍ଦ୍ୱ ବି ଅଛି। ଆମେରିକା ନିଜ ତେଲ ରାଜନୀତିକୁ କାର୍ଯ୍ୟକାରୀ କରିବାପାଇଁ ପ୍ରତି ଆରବୀୟ ଦେଶରେ ଥିବା ଏଇ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱ ଓ ଦେଶ ଦେଶ ଭିତରର ବିବାଦକୁ ଅହିନକୁଳ ସ୍ତରକୁ ନେଇଛି। ଠିକ୍ ସେମିତି ହିନ୍ଦୁଧର୍ମ ଓ ଧର୍ମଶାସ୍ତ୍ରକୁ ଆଧାର କରି ହିନ୍ଦୁରାଷ୍ଟ୍ରର ପରିକଳ୍ପନା ଆମକୁ ମାଲେଗାଓଁ ଆଡ଼କୁ ଟାଣିନେବ। ମାଲେଗାଓଁଠୁ ଆରମ୍ଭ ହେଉଥିବା ଯାତ୍ରା ଶେଷରେ ନିଜ ପାଇଁ ମଡ଼େଲ୍ ଖୋଜି ପହଁଚୁଛି ତାଲିବାନ ପାଖରେ ଓ ଇସ୍ରାଏଲକୁ ସାହାଯ୍ୟ ମାଗିବାର ଯୋଜନା କରୁଛି। ଆର.ଏସ.ଏସ. ହିଟଲରଙ୍କ ନାଜିବାଦକୁ ଓ ଅଭିନବ ଭାରତ ତାଲିବାନ ଓ ଇସ୍ରାଏଲଠୁ ପ୍ରେରଣା ନେଇ ଏକ ଫାସିବାଦୀ ଆତଙ୍କବାଦୀ ରାଷ୍ଟ୍ରର ପରିକଳ୍ପନା କରୁଛନ୍ତି। ପଶ୍ଚିମଏସିଆର ନାରକୀୟ ହିଂସାକୁ ଦକ୍ଷିଣଏସିଆରେ/ଭାରତରେ ଦେଖିବାକୁ ଚାହୁଁଛନ୍ତି ଓ ଦେଖୁଛନ୍ତି। କିନ୍ତୁ ଏହାର ଶିକାର ହେଉଛନ୍ତି ସବୁଧର୍ମର ନିରୀହ ଜନତା।

ଆତଙ୍କବାଦ ଏକ କଣ୍ଟା ନୁହେଁ ଯେ କଣ୍ଟାରେ କଣ୍ଟାକୁ କାଢ଼ି ହେବ। ଆଧୁନିକ ରାଷ୍ଟ୍ର ବ୍ୟବସ୍ଥାରେ ରାଜନୈତିକ-ଅର୍ଥନୀତି ହେଲା ମୂଳ। ଦ୍ୱିତୀୟରେ ସମାଜରେ ଶାନ୍ତି ଓ ଏକତା ପାଇଁ ଏକ ସମନ୍ୱୟୀ ସଂସ୍କୃତିର ନିର୍ମାଣ। ସେ ସଂସ୍କୃତି ଅଦାନ ପ୍ରଦାନରୁ ଆସିବ, ଦମନ କି ଲଦିବାରୁ ନୁହେଁ। ଓବାମା ଏବେ କ୍ଷମା ମାଗିଛନ୍ତି, ମୁସଲିମ ସମୁଦାୟ ପାଖରେ ଏଇଆ କହି ଯେ, ଅତୀତରେ ଭୁଲ ହୋଇଛି। ଭୁଲକୁ ସୁଧୁରାଯିବ। ଏ ବକ୍ତବ୍ୟରେ ଆନ୍ତରିକତା ରହିବା ଜରୁରୀ। ଏ ଆନ୍ତରିକତାର ପ୍ରଥମ ସର୍ତ୍ତ ହେଲା (୧) ସାମ୍ରାଜ୍ୟବାଦୀ ମନୋବୃତ୍ତିର ପରିହାର (୨) ଆତଙ୍କବାଦକୁ ଧର୍ମ ସହ ଯୋଡ଼ିବା ବନ୍ଦ। ଠିକ୍ ସେମିତି ଭାରତ ପାଇଁ (୧) ଅବହେଳିତ ବର୍ଗ, ଜାତି, ଓ ଧାର୍ମିକ ସମୁଦାୟ ତଥା ପଛୁଆ ଅଞ୍ଚଳର ଉନ୍ନତି। (୨) କାଶ୍ମୀରକୁ ଆର୍ଥିକ-ପ୍ରଶାସନିକ ସ୍ୱାୟତ୍ତତା। (୩) ସାର୍କ ଦେଶମାନଙ୍କ ଭିତରେ ଏକତା ଓ ଆମେରିକା ପ୍ରତି ମାତ୍ରାଧିକ ନିର୍ଭରଶୀଳତାରୁ ମୁକ୍ତି। ଏସବୁ ସମ୍ଭବ ଯେବେ ନୂଆ ଭାରତ ଓ ନୂଆ ବିଶ୍ୱର ସମ୍ଭାବନା ଦିଗରେ କାମ କରିବା ପାଇଁ ଭାରତୀୟ ଶାସକ ଶ୍ରେଣୀ ପ୍ରସ୍ତୁତ ହେବ। ଆମ ଶାସକବର୍ଗ ପ୍ରସ୍ତୁତ ନୁହଁନ୍ତି ସେ କଥା ପରମାଣୁ ଚୁକ୍ତିରୁ ସ୍ପଷ୍ଟ। ପରମାଣୁ ଚୁକ୍ତିର ଅନ୍ଧାରୀଦିଗକୁ ଆଲୋଚନା କଲେ ଜଣାପଡ଼ିବ ଯେ ଏମାନଙ୍କ ଚିନ୍ତାଶକ୍ତି ଶେଷ ହୋଇଯାଇଛି ଆତ୍ମସମୀକ୍ଷାର ସାହସ ନାହିଁ ସେ କଥା ଜଣାପଡୁଛି ଯେତେବେଳେ ଏମାନେ କିଛି କଡ଼ା ଆଇନ, ଯାଞ୍ଚ ଏଜେନ୍ସି, (NIA), ଅଧିକ କମାଣ୍ଡୋ ସେଣ୍ଟର ଓ ଆମେରିକୀୟ ଉପରେ ଆତଙ୍କବାଦର ସମାଧାନ ଲାଗି ଅଣ୍ଟା ଭିଡୁଛନ୍ତି। ପୂର୍ବରୁ ଥିବା ଟାଡ଼ା ଓ ପୋଟା ଆଇନର ଦୁର୍ବ୍ୟବହାର କଥା ସଂପର୍କରେ ଆମେ ସଭିଏଁ ଜାଣୁ। ଟାଡ଼ା ଆଇନ ଅନ୍ତର୍ଗତ ବନ୍ଦୀମାନଙ୍କ ଭିତରୁ ୯୮% ନିର୍ଦ୍ଦୋଶ ସାବ୍ୟସ୍ତ ହେବା ଏହାର ନଗ୍ନ ଉଦାହରଣ। ଟାଟା ଓ ପୋଟାକୁ ମୁଖ୍ୟତଃ ରାଜନୈତିକ ବିରୋଧୀ ଓ ଭିନ୍ନମତ

ରଖୁଥିବା ଲୋକଙ୍କ ବିରୋଧରେ ବ୍ୟବହାର କରାଯାଇଥିଲା। ଗୁଜରାଟରେ ପୋଟାର ବ୍ୟବହାର ଅଧିକାଂଶତଃ ମୁସଲିମ ଲୋକଙ୍କ ବିରୋଧରେ ହୋଇଥିଲା। ପୋଟା ରଦ୍ଦ କରିଥିବା ପ୍ରଗତିଶୀଳ ମେଣ୍ଟ ସରକାର ଭାଜପାର ଇଚ୍ଛା ଅନୁରୂପ ଏକ ଆଇନ ନିର୍ମାଣ କଲେ। (ବେଆଇନ ଗତିବିଧି ନିରୋଧ ଆଇନ) । ଯାଞ୍ଚ ଏଜେନ୍ସିର ପ୍ରାବଧାନ ଅନୁସାରେ ରାଜ୍ୟ ସରକାରଙ୍କ ଆଉ କୌଣସି କର୍ତ୍ତୃତ୍ୱ ରହିବ ନାହିଁ। ତାମାନେ କେନ୍ଦ୍ରୀକରଣ ଦିଗରେ ଆଉ ଏକ ପଦକ୍ଷେପ ଏବଂ ନିରୀହ ଲୋକଙ୍କ ଉପରେ ଦମନ ଓ ଅତ୍ୟାଚରର ପ୍ରବନ୍ଧନ ଯାହା ପ୍ରଶାସନ ପ୍ରତି ଅବିଶ୍ୱାସ ଓ ବିଚ୍ଛିନ୍ନତାବୋଧକୁ ଦୃଢ଼ କରିବ। ଗୋଟିଏ ପଟେ ଅସ୍ତ୍ରଶସ୍ତ୍ର ବଜାରକୁ ଖୋଲା ରଖିଥିବା କର୍ପୋରେଟ ଅନ୍ୟପଟେ କ୍ଷେତ ଓ ଖାଦ୍ୟଥାଳିରେ ବିଷ ପରଶି ନିଜ ଲାଭ ଓ ଲୋଭର ସାମ୍ରାଜ୍ୟ ବିସ୍ତାରର ଉଦ୍ଦେଶ୍ୟ ରଖି ଜିନ୍ ପରିବର୍ତ୍ତିତ ଫସଲ ଓ ଖାଦ୍ୟପ୍ରଚଳନ ଆରମ୍ଭ କରିଛି। ଏହାର ପ୍ରଚଳନରେ ପ୍ରତିଟି ଜୀବନ୍ତ ପ୍ରାଣୀ ମଣିଷ ଓ ଉଦ୍ଭିଦ ପ୍ରଭାବିତ ହେବେ। କୃଷକ ଓ ଖାଉଟିର ଜୀବନ ସାଙ୍ଗକୁ ଜୈବବିବିଧତା ସଂକଟରେ ପଡ଼ିବ। ପ୍ରିନ୍ସ ଚାର୍ଲସ ପରି ବୁଦ୍ଧିଜୀବୀ ଓ ପୁଷ୍ପା ଭାର୍ଗବଙ୍କ ପରି ବୈଜ୍ଞାନିକ ଏହାକୁ ସଭ୍ୟତାର ବଡ଼ ବିପର୍ଯ୍ୟୟ ବୋଲି ଅଭିହିତ କରିସାରିଲେଣି।

ନୂଆ ଭାରତ, ଏସିଆ ବା ନୂଆ ବିଶ୍ୱର ଅର୍ଥ ଏଠି ନୂଆ ଅର୍ଥନୀତି । ଯେଉଁଠି ଗୋଟିଏ ଦେଶ ଆଉ ଗୋଟିଏ ଦେଶକୁ ଉପନିବେଶ ଏବଂ ଦେଶର ଗୋଟିଏ ଶ୍ରେଣୀ ବାକି ଶ୍ରେଣୀକୁ ନିଜର ଉପନିବେଶ କରିବାର ମନୋବୃତ୍ତି ଛାଡ଼ିବ। ତା ମାନେ ଏକ ନୂଆ ବିକାଶ ନୀତି। ଅମାନବୀୟ ବିଷମତା (ଦେଶ-ଦେଶ, ଧନୀ-ଗରିବ, ସହର-ଗାଁ)କୁ ଶେଷ କରିବାର ବିକାଶ ନୀତି। ପ୍ରଚଳିତ ରାଜନୀତିକ ଅର୍ଥନୀତି ଓ ବିକାଶ ଢାଞ୍ଚାରେ ନା ବିଶ୍ୱଶାନ୍ତି ସମ୍ଭବ ନା ଏ ପୃଥିବୀର ଭବିଷ୍ୟତ ସୁରକ୍ଷିତ। ପ୍ରଚଳିତ ବିକାଶ ପ୍ରକୃତିକୁ ଯେଉଁ ସ୍ତରର ବିନାଶରେ ପହଁଚାଇଛି ତାହା ଜାରି ରହିଲେ ପୃଥିବୀରେ ଅକାଳ ମୃତ୍ୟୁ ନିଶ୍ଚିତ ବୋଲି ବୁଝାଯାଉଛି। ପୃଥିବୀକୁ ଏ ସୁନିଶ୍ଚିତ ମୃତ୍ୟୁରୁ ରକ୍ଷାର ଅର୍ଥ ଏକ ନୂଆ ବିଚାରର ନିର୍ମାଣ ଯାହା କେବଳ ମିଳିତ ପ୍ରଚେଷ୍ଟାରେ ହିଁ ସମ୍ଭବ ହୋଇପାରିବ ।

ଇତିହାସର ଅନ୍ତ, ବିଚାରର ଅନ୍ତ ଏବଂ ଆଜିର ବିଶ୍ୱରେ ଚାଲିଥିବା ସଂଘର୍ଷକୁ ଦୁଇଟି ସଭ୍ୟତା ଭିତରେ ଯୁଦ୍ଧ ବୋଲି ବିଶ୍ୱାସ କରିବା ପାଇଁ ଆମକୁ ପ୍ରବର୍ତ୍ତାଉଥିବା ତତ୍ତ୍ୱ ଓ ବିଚାରକୁ ପ୍ରତ୍ୟାଖାନ କରିବାକୁ ପଡ଼ିବ। ଏକ ତାର୍କିକ, ମାନବୀୟ ସମାଜ, ଦେଶ ଓ ବିଶ୍ୱ ବ୍ୟବସ୍ଥା ଯେ ସମ୍ଭବ, ସେ ସ୍ୱପ୍ନ ଦେଖିବାକୁ ହେବ। ସେ ସ୍ୱପ୍ନ ପାଇଁ ଦାୟିତ୍ୱ ନେବାକୁ ହେବ। ଆଉ ଦୁଇଟି ଆତଙ୍କ କଥା ଅଛି। ବିଶଦ ଚର୍ଚ୍ଚା ନ କରି କେବଳ ତାର ସଂକେତ ଦେଉଛି। ପ୍ରଥମଟି ହେଲା ପୁଞ୍ଜିବାଦୀ ରାଷ୍ଟ୍ରର ଆତଙ୍କ ଏବଂ ରାଷ୍ଟ୍ରତନ୍ତ୍ରର ସମର୍ଥନରେ କର୍ପୋରେଟ ଆତଙ୍କ। ସେମିତି ଦେଖିଲେ ଏହା ସାମ୍ରାଜ୍ୟବାଦୀ ଅର୍ଥନୀତି ଓ ରାଜନୀତିର ସ୍ୱାଭାବିକ ପରିଣତି। ଏହା ଅସ୍ମିତା ନଷ୍ଟ ଜନିତ ସର୍ଶକାତରତା ସାଙ୍ଗକୁ ଏକ ସଂପଦ

ବିହୀନ ଜୀବିକା ବିହୀନ ଜନସମୂହକୁ ଜନ୍ମ ଦେଉଛି ଯାହା ପ୍ରତ୍ୟକ୍ଷ ଓ ପରୋକ୍ଷରେ ମୌଳବାଦୀଙ୍କ ଆତଙ୍କକୁ ସାହାଯ୍ୟ କରୁଛି। ଅନ୍ୟ ଦିଗରେ କର୍ପୋରେଟ ସ୍ୱାର୍ଥରେ, ଦେଶର ପୁଞ୍ଜି ନିର୍ମାଣର ପାଗଳାମୀରେ ବଳି ପଡୁଥିବା ସମୁଦାୟ ଏ ବ୍ୟବସ୍ଥାର ବିରୋଧ କରୁଛି। ବିରୋଧର ସମସ୍ତ ଗଣତାନ୍ତ୍ରିକ ପକ୍ଷକୁ ରାଷ୍ଟ୍ରତନ୍ତ୍ର ଓ କର୍ପୋରେଟତନ୍ତ୍ର କେବଳ ଅଣୁଣା କରିଦେଉନାହିଁ ବରଂ ତାଙ୍କୁ ହିଂସ୍ରତାସହ ଦମନ କରୁଛି। ତାର ପରିଣତି ହେଉଛି ସେ ସମୁଦାୟଗୁଡ଼ିକ ନିରାଶାରେ ନୀରବ ହୋଇଯାଉଛନ୍ତି ନ ହେଲେ ପ୍ରତିବାଦର ଗଣତାନ୍ତ୍ରିକ ପରିସର ନ ପାଇ ହିଂସାତ୍ମକ ପ୍ରତିବାଦର ରାସ୍ତା ବାଛୁଛନ୍ତି। କୋଉଠି ସେମାନେ ମାଓବାଦୀ ନେତୃତ୍ୱ ଆଡ଼କୁ ଢଳୁଛନ୍ତି ତ ଆଉ କୋଉଠି ପୁଞ୍ଜିବାଦୀ ବିକାଶର ପ୍ରକଳ୍ପ ଗୁଡ଼ିକ ବିରୋଧରେ ନେଉଛନ୍ତି ସ୍ୱତଃସ୍ଫୂର୍ତ୍ତ ହିଂସାର ଆଶ୍ରୟ। ସରକାର ତାଙ୍କୁ ବିକାଶ ବିରୋଧୀ କହି ଦମନ କରୁଛି। ରାଷ୍ଟ୍ର ନିଜେ ଏଠି ଆତଙ୍କବାଦୀର ରୂପ ନେଉଛି ଓ ଲୋକଙ୍କୁ ହିଂସାର ପଥ ବାଛିବା ପାଇଁ ବାଧ କରୁଛି। ରାଷ୍ଟ୍ରର ଆତଙ୍କ, ମୌଳବାଦୀଙ୍କ ଆତଙ୍କ, ସାମ୍ରାଜ୍ୟବାଦୀ ଆତଙ୍କ, ବିକାଶର ଆତଙ୍କ ଏସବୁକୁ ଏ ଆଧୁନିକ ସଭ୍ୟତାର ସଂକଟ ରୂପେ ଦେଖିବାକୁ ହେବ। ସାଂପ୍ରତିକ ସଭ୍ୟତାର ରାଜନୈତିକ-ଅର୍ଥନୀତି, ବିକାଶ ଓ ପ୍ରଯୁକ୍ତି ନେଇ ପ୍ରଶ୍ନ ତଥା ବିମର୍ଶ କ'ଣ ବିଶ୍ୱରେ ରାଜୁତି କରୁଥିବା ସାମ୍ରାଜ୍ୟବାଦୀ ଶାସକ ବର୍ଗଠୁ ଆଶା କରିବା ? ଉତ୍ତର ହେବ ନା। ସେ ବିମର୍ଶ ଆମକୁ ତିଆରିବାକୁ ହେବ। ବିମର୍ଶ ବେଳେ ବ୍ୟକ୍ତି ଜୀବନ ପାରିବାରିକ ଓ ସାମାଜିକ ଜୀବନରେ ଥିବା ହିଂସା ସମ୍ବନ୍ଧରେ ବି ଚିନ୍ତା କରିବାକୁ ପଡ଼ିବ। ହିଂସା ଓ ଆତଙ୍କ ମଧ୍ୟରେ ଥିବା ଅନ୍ତଃସମ୍ପର୍କକୁ ଗଭୀରତାର ସହ ବିଚାର କରିବା ଆବଶ୍ୟକ। ନିଜ ଭିତରେ ହିଂସ୍ର ମଣିଷଟାକୁ ଆମେ ବା କେତେ ଚିହ୍ନୁ। ସେ ବିମର୍ଶ ନିର୍ମାଣରେ ଲେଖକ, ସାହିତ୍ୟିକ, ଐତିହାସିକ, ବୈଜ୍ଞାନିକ, ଗବେଷକଙ୍କ ସହ ଏ ସଭ୍ୟତାର ସଂକଟକୁ ପ୍ରତ୍ୟକ୍ଷ କରୁଥିବା ଏବଂ ସେଥିରୁ ମୁକ୍ତି ଲାଗି ସଂଘର୍ଷ କରୁଥିବା ସମୂହ ସହଭାଗୀ ହୋଇପାରିବେ ତ ? ଏ ବିମର୍ଶ ନିର୍ମାଣର ପ୍ରଥମ ସର୍ତ୍ତ ହେଲା ଆମ ସମୟର ଜଟିଳତାର ସହଜ ସରଳ ଅଥଚ ବହୁପକ୍ଷୀୟ, ବହୁତଳୀୟ ବ୍ୟାଖ୍ୟାର ଚେଷ୍ଟା। ଅନ୍ୟଟି ହେଲା ନିଷ୍ଠୁର ଭାବେ ସତ କହିବାର କଳିଜା। ଏପରି କଳିଜା ଥିବା ଲୋକଙ୍କ ଗତିବିଧି ବମ୍ବେ ଘଟଣା ପରେ ନିର୍ମିତ ବେଆଇନ ଗତିବିଧି ନିରୋଧ ଆଇନ (Unlawful Activities Prevention Act) ପର୍ଯ୍ୟାୟରେ ନ ପଡ଼ିଲେ ହେଲା।



# ସାମ୍ରାଜ୍ୟବାଦୀ ଅର୍ଥନୀତିରେ ବିକାଶ ଓ ବିସ୍ଥାପନ

ତଥାକଥିତ ବିକାଶ ସହ ଯୋଡ଼ି ହୋଇ ରହିଛି ଏକ ବୃହତ୍ତର ବର୍ଗକୁ ତାଙ୍କର ଜୀବିକା ଓ ସଂସାଧନରୁ ବିସ୍ଥାପିତ କରିବାର ପ୍ରକ୍ରିୟା। ଏହି ପ୍ରକ୍ରିୟା ସହ ଯୋଡ଼ି ହୋଇଛି ଏକ ଲମ୍ବା ଇତିହାସ ଯାହା ଆରମ୍ଭ ହୋଇଛି ଏସିଆ ଆଫ୍ରିକାର ଦେଶ ଗୁଡ଼ିକ ୟୁରୋପର ଉପନିବେଶ ହେଲା ଦିନଠୁଁ। ଉପନିବେଶବାଦ ମୂଳରେ ରହିଲା ସାମ୍ରାଜ୍ୟବାଦୀ ରାଜନୈତିକ- ଅର୍ଥନୀତି। ଗୋଟିଏ ପଟେ ପଶ୍ଚିମ ଦେଶ ଗୁଡ଼ିକ ଦ୍ୱାରା ତୃତୀୟ ବିଶ୍ୱର ସମସ୍ତ ସଂପଦର ଲୁଟ ସାଙ୍ଗକୁ ସ୍ୱଦେଶୀ କାରିଗରୀ କୌଶଳରେ ଉତ୍ପାଦିତ ସାମଗ୍ରୀର ବଜାର ବ୍ୟବସ୍ଥାକୁ ଶେଷ କରିବା ଲାଗି ସ୍ଥାନୀୟ କାରିଗରୀ କୌଶଳ ଓ କାରିଗର ଶ୍ରେଣୀ ଉପରେ ଆକ୍ରମଣ, ଆବଶ୍ୟକ କଞ୍ଚାମାଲ ବ୍ୟବହାର ଉପରେ ନିୟନ୍ତ୍ରଣ, କଞ୍ଚାମାଲ ରପ୍ତାନୀ ପାଇଁ ବାଧ୍ୟବାଧକତା, ବିକ୍ରୀ ଟିକସ ବୃଦ୍ଧି, ଭାରତରୁ ରପ୍ତାନୀ ଉପରେ ନିୟନ୍ତ୍ରଣ ଆଇନ୍, ଉତ୍ପାଦିତ ସାମଗ୍ରୀକୁ କମ୍ ଦରରେ ବିକ୍ରୀ ପାଇଁ ବାଧ୍ୟ କରିବା ପରି ଅମାନବୀୟ ପଦକ୍ଷେପ ମାନ ନିଆଗଲା। ଚାହିଦା ବୃଦ୍ଧି ଓ ତାର ପୂରଣ ପାଇଁ କମ୍ ସମୟରେ ଅଧିକ ଉତ୍ପାଦନ ନାଁରେ ନୂଆ ପ୍ରଯୁକ୍ତିର ପ୍ରବର୍ତ୍ତନ କରାଗଲା ଏବଂ ସ୍ୱଦେଶୀ ଯନ୍ତ୍ର ଓ କାରିଗରୀ କୌଶଳକୁ ଅଦରକାରୀ ଓ ମରହଟ୍ଟୀ ବୋଲି କୁହାଗଲା। ତା ପ୍ରତି ବିଶ୍ୱାସକୁ ଭାଙ୍ଗିବା ପାଇଁ ନୂଆ ପ୍ରଯୁକ୍ତିର ଚମତ୍କାରିତାରେ ଲୋକଙ୍କୁ ଅନ୍ଧ କରି ୟୁରୋପରୁ ଆମଦାନୀ କରାଯାଉଥିବା ସାମଗ୍ରୀକୁ ଲଦି ଦିଆଗଲା। ଦେଶର ବିକାଶ ପାଇଁ ସମୃଦ୍ଧଶାଳୀ ରାଷ୍ଟ୍ରମାନଙ୍କ ସହ ସମକକ୍ଷ ହେବାଲାଗି ୟୁରୋପୀୟ ପ୍ରଯୁକ୍ତିକୁ ଅତ୍ୟାବଶ୍ୟକୀୟ ସର୍ତ୍ତ ବୋଲି ଧରିନିଆଗଲା। ଅନ୍ୟପଟେ ଅର୍ଥନୈତିକ ଶୋଷଣ ସହ ରାଜନୈତିକ କ୍ଷମତାକୁ ହାତେଇବା ଲାଗି ସୈନ୍ୟଦଳ ଓ ଆଧୁନିକ ଅସ୍ତ୍ରଶସ୍ତ୍ରର ବ୍ୟବହାର କରାଗଲା। ରାଜନୈତିକ କ୍ଷମତାର ପ୍ରତ୍ୟକ୍ଷ ଓ ପରୋକ୍ଷ ନିୟନ୍ତ୍ରଣ ଦ୍ୱାରା ସଂପଦ ଓ ଆର୍ଥିକ ଶୋଷଣ ସହଜ ହେଲା। ସେଇଥିରୁ ଆରମ୍ଭ ହେଲା ଏକ ନର୍ଦ୍ଦିଷ୍ଟ ବର୍ଗର ଲୋକଙ୍କ ନିର୍ଦ୍ଦିଷ୍ଟ ପ୍ରକାର ଜୀବନ ଜୀବିକାରୁ ବିସ୍ଥାପନ। ଯା ବାହାରେ ପ୍ରାକୃତିକ ସଂପଦର ଶୋଷଣ ଓ ଜମି ବନ୍ଦୋବସ୍ତ ତଥା ଜଙ୍ଗଲ ଆଇନ୍ ନାଁରେ ଆଦିବାସୀଙ୍କୁ

ବିସ୍ଥାପିତ କରାଗଲା । ଅରଣ୍ୟ ଆଧାରିତ ଜୀବନରୁ ବିସ୍ଥାପିତ ଏକ ବୃହତ୍ତର ବର୍ଗ ନିଜର ପାରଂପରିକ ସଂପଦ ଓ ଜୀବିକାରୁ ବଞ୍ଚିତ ହୋଇ ଆଖି ଫେରେଇଲେ କୃଷି କ୍ଷେତ୍ରକୁ ।

ଉପନିବେଶବାଦୀ ବ୍ୟବସ୍ଥାର ଆରମ୍ଭରୁ ହିଁ ଦେଶରେ ଏକ ସ୍ଥାନୀୟ ଶାସକ ଶ୍ରେଣୀ ଔପନିବେଶିକ ଲୋଭ ଓ ବିଳାସତନ୍ତ୍ରରେ ବଶୀଭୂତ ହୋଇ କାୟମନୋବାକ୍ୟରେ ସାମ୍ରାଜ୍ୟବାଦୀ ଶକ୍ତିଙ୍କ ଗୁଣଗାନକାରୀ ହୋଇ ସେମାନଙ୍କ ପ୍ରଦର୍ଶିତ ରାସ୍ତାର ଅନ୍ଧାନୁକରଣ କଲେ । ନିଜର ବିଳାସମୟ ଜୀବନ ପାଇଁ ଏଇ ସମ୍ଭ୍ରାନ୍ତ ବର୍ଗଟି ନିଜକୁ ସାଧାରଣଙ୍କଠୁ ଅଲଗା କରି ଅସାଧାରଣ ହୋଇ ରହିଲେ । ଗତ ତିନିଶହ ବର୍ଷର ସାମ୍ରାଜ୍ୟବାଦୀ ଇତିହାସ ହେଉଛି ବିଶ୍ୱର ୟୁରୋପକେନ୍ଦ୍ରିକ ଦେଶର ବିକାଶ ଏବଂ ଏସିଆ-ଆଫ୍ରିକାର ଦେଶସମୂହର ଦରିଦ୍ରୀକରଣ । 'ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିର ଚମତ୍କାରିତାର ନିଦର୍ଶନ ହେଉଛି ୟୁରୋପୀୟ ବିକାଶ । ଆଫ୍ରିକା ଓ ଏସିଆର ଦେଶଗୁଡ଼ିକ ନିଜସ୍ୱ ସାଂସ୍କୃତିକ ଏବଂ ବୌଦ୍ଧିକ ପଛୁଆପଣ କାରଣରୁ ବିଜ୍ଞାନ ଓ ପ୍ରଯୁକ୍ତି ସହ ବିକାଶର ରାସ୍ତାରେ ବଢ଼ିପାରୁନାହାନ୍ତି ବୋଲି ଏକ ମିଥ୍ ଗଢ଼ିଉଠିଲା । କିନ୍ତୁ ଗୋଟିଏ କଥା ସ୍ପଷ୍ଟ ଯେ ଏକ ନିର୍ଦ୍ଦିଷ୍ଟ ପ୍ରକାରର ପ୍ରଯୁକ୍ତି ସମସ୍ତ ଦେଶର ବିକାଶପାଇଁ ଅନିର୍ବାର୍ଯ୍ୟ ବା ନିରଂକୁଶ ନୁହେଁ । ପ୍ରତ୍ୟେକ ଦେଶର ସାମାଜିକ, ଐତିହାସିକ, ଆର୍ଥିକ ପୃଷ୍ଠଭୂମିସହ ମାନବ ସଂବଳକୁ ଆଖି ଆଗରେ ରଖି ପ୍ରଯୁକ୍ତିର ବ୍ୟବହାର ଅଲଗା ଅଲଗା ହେବ । ପ୍ରଯୁକ୍ତିର ବିକାଶ ପଛରେ ଏକ ଆର୍ଥିକ, ସାମାଜିକ, ଐତିହାସିକ ସଂଦର୍ଭ ରହିଥାଏ ଏବଂ ଏକ ନିର୍ଦ୍ଦିଷ୍ଟ ସମାଜରେ ବିକଶିତ ପ୍ରଯୁକ୍ତି ଅନ୍ୟ କୌଣସି ସମାଜର ଆବଶ୍ୟକତାର ଅନୁକୂଳ ହେବାର ସମ୍ଭାବନ ଅତି କ୍ଷୀଣ ହୋଇପାରେ । ଶିଳ୍ପ ବିପ୍ଳବ ଏବଂ ତତ୍‌ସଂଲଗ୍ନ ପ୍ରଯୁକ୍ତିର ମୂଳଚରିତ୍ର ମଧ୍ୟ ସାମ୍ରାଜ୍ୟବାଦୀ । ଏହି ପ୍ରଯୁକ୍ତିର ବିକାଶପାଇଁ ଅପର୍ଯ୍ୟାପ୍ତ ପୁଂଜିର ଆବଶ୍ୟକତା ରହିଛି । ଏହି ପୁଂଜି ସଂଗୃହୀତ ହେଉଛି ଉପନିବେଶିକ ଶୋଷଣରୁ, କଂଚାମାଲର ଲୁଟ୍‌ରୁ । ଏହି ବିକଶିତ ପ୍ରଯୁକ୍ତି ପଛରେ ଥିବା ଏହି ଲୁଟ୍‌କୁ ଲୁଚେଇବା ପାଇଁ ଏହାକୁ ପଶ୍ଚିମ ଦେଶର ସାଂସ୍କୃତିକ ଓ ବିଜ୍ଞାନଗତ ଶ୍ରେଷ୍ଠତା ବୋଲି ପ୍ରତିଷ୍ଠିତ କରିବା ଉଦ୍ଦେଶ୍ୟରେ ୟୁରୋପୀୟ ଅର୍ଥଶାସ୍ତ୍ରର ପରଂପରାରେ ଦୀକ୍ଷିତ ହୋଇ ତାଙ୍କ ସ୍ୱାର୍ଥର ପ୍ରତିନିଧିତ୍ୱ କରୁଛନ୍ତି । ଆଧୁନିକ ପ୍ରଯୁକ୍ତି ଓ ପ୍ରଯୁକ୍ତିଜନିତ ଉତ୍ପାଦନ ବ୍ୟବସ୍ଥାରେ ଶ୍ରମିକର ଶ୍ରମ ଓ ଶ୍ରମ କୌଶଳ ଅପେକ୍ଷା ପୁଂଜିପତି ଏବଂ ପରିଚାଳନାର ମହତ୍ତ୍ୱ ବଢ଼ିଯାଇଛି । ଏମିତିରେ ଶ୍ରମଜୀବୀ ଓ କାରିଗର ବର୍ଗର ବିସ୍ଥାପନ ବଢ଼ିବଢ଼ି ଯିବାଟା ସ୍ୱାଭାବିକ । ମାର୍କ୍ସ ମଧ୍ୟ କହିଛନ୍ତି ଯେ ମେସିନ୍ ଦ୍ୱାରା ବିସ୍ଥାପିତ ଶ୍ରମ, ମେସିନ୍ ତିଆରିରେ ଲାଗୁଥିବା ଶ୍ରମ ଅପେକ୍ଷା ଅଧିକ । ପୁଂଜିପତିର ମୁନାଫା ବଢ଼େ ଏଇଥି ପାଇଁ ଯେ ଶ୍ରମିକ ସଂଖ୍ୟା କମେଇଲେ ପ୍ରତି ଶ୍ରମିକ ପିଛା ଉତ୍ପାଦନ ବଢ଼େ । ଏବଂ ସେ ଯୋଗୁଁ ଅତିରିକ୍ତ ଉତ୍ପାଦନ ହୁଏ । ଏହି

ପ୍ରଯୁକ୍ତିର ଚାରିତ୍ରିକ ବିଶେଷତା ଏବଂ ଅର୍ଥବ୍ୟବସ୍ଥା ତଥା ବ୍ୟାପକ ସମାଜ ବ୍ୟବସ୍ଥା ଉପରେ ଏହାର ପ୍ରଭାବକୁ ଏଯାଏଁ ଗଂଭୀରତାର ସହ ବିଚାର କରାଯାଇନାହିଁ । ଉଭୟ ପୁଂଜିବାଦୀ ଓ ସାମ୍ୟବାଦୀ ଅର୍ଥଶାସ୍ତ୍ରୀମାନେ ପ୍ରଯୁକ୍ତିର ଏହି ଶ୍ରମିକ ଓ ଶ୍ରମକୌଶଳମାରଣ ଚରିତ୍ର ପ୍ରତି ଏଯାଏଁ ପ୍ରଶ୍ନ ବିନ୍ଦୁ ଲଗେଇ ନାହାନ୍ତି । ଏହି ପ୍ରଯୁକ୍ତି ହେଉଛି ଆଧୁନିକ ବିଜ୍ଞାନର ଅବଦାନ । ୟୁରୋପ ଆମେରିକାର ସମୃଦ୍ଧିର ଏକମାତ୍ର କାରଣ କୁହାଯାଉଥିବା ଆଧୁନିକ ବିଜ୍ଞାନର ଚରିତ୍ରକୁ ମଧ୍ୟ ବିଶ୍ଳେଷଣ କରିବା ଜରୁରୀ । ଏ ପ୍ରକାର ଦୃଷ୍ଟିଭଙ୍ଗୀ ଯାହା ଆମର ଉଚ୍ଚଶିକ୍ଷା ଦ୍ୱାରା ପରିପୁଷ୍ଟ କରାଯାଉଛି ତା ସହ ଦୁଇଟି ପ୍ରଶ୍ନ ଜଡ଼ିତ । ଭାରତ ପରି ବିକାଶଶୀଳ ରାଷ୍ଟ୍ର ୟୁରୋପ ଆମେରିକାରେ ରୂପାନ୍ତରିତ ହୋଇପାରିବ କି ? ଆମେ ଆମ ଦେଶକୁ ଅନ୍ୟ ଏକ ୟୁରୋପୀୟ ଦେଶ ରୂପେ ଦେଖିବାକୁ ଚାହୁଁକି ? ଥୋକେ ସଂଗେ ସଂଗେ ଭାରତର ସର୍ବପୁରାତନ ମହାନ ସଂସ୍କୃତିକୁ ବଂଚେଇ ରଖିବା ପାଇଁ ବାହାରି ପଡ଼ିବେ । ଏ ମହାଭାରତୀୟ ସଂସ୍କୃତିଟି କ'ଣ ଏଯାଏଁ ଠିକ କରି କୁହାଯାଇପାରିନି । ଜାତିଭିତ୍ତିକ ବୈଷମ୍ୟ, ସାମନ୍ତବାଦୀ ଶୋଷଣ ଉପରେ ଆଧାରିତ ସମାଜର ସଂସ୍କୃତି ନା ମାନସିକ ଉତ୍ତରଣ ନାଁରେ ଅତିମାନସ ସ୍ତରରେ ଜୀଇଁ ରହିବାର ଢୋଙ୍ଗ କରୁଥିବା ଏବଂ ପାର୍ଥିବ ଆହ୍ୱାନ ଗୁଡ଼ିକ ସମ୍ମୁଖୀନ ହେବାର ସାହସ କରିନପାରି ସେ ଆହ୍ୱାନ ଗୁଡ଼ିକରୁ ଆତ୍ମପ୍ରତ୍ୟାହାରର ସଂସ୍କୃତି ।

ଉପନିବେଶ ହୋଇଥିବା ଅଧିକାଂଶ ରାଷ୍ଟ୍ର ସତୁରୀ ଦଶକରେ ରାଜନୈତିକ ସ୍ୱାଧୀନତା ପାଇ ସାରୁ ସାରୁ ଆଧୁନିକ ବିଜ୍ଞାନ (ବିଜ୍ଞାନ ମାର୍ଫତ ପ୍ରଯୁକ୍ତି) କୁ ମାଧ୍ୟମ କରି ପଶ୍ଚିମୀ ବିଶେଷଜ୍ଞଙ୍କ ପରାମର୍ଶରେ ନିଜ ସମାଜକୁ ସମୃଦ୍ଧ କରିବାର ଯୋଜନା କଲେ । ନିଜର ସାମାଜିକ-ଐତିହାସିକ ପୃଷ୍ଠଭୂମିର ବିବିଧତା ପ୍ରତି ତାଙ୍କର ନଜର ଗଲାନାହିଁ । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ସମାଜର କେତୋଟି ବର୍ଗକୁ ଶକ୍ତିଶାଳୀ କଲା । କ୍ଷମତାର ସୁଖ ପରେ ରହିଛି ପ୍ରଯୁକ୍ତିର ସୁଖ । ପ୍ରଯୁକ୍ତିକୁ ନିଜ ନିୟନ୍ତ୍ରଣରେ ରଖି କ୍ଷମତାଧାରୀ ବର୍ଗ ଏହି ସୁଖକୁ ଏକଚାଟିଆ ଭୋଗିବା ଲାଗି ସମର୍ଥ ହୋଇଛି । ଅନ୍ୟପକ୍ଷରେ କେତୋଟି ଆଙ୍ଗୁଠି ଗଣା ଦେଶ ଏବଂ ସେମାନେ ନିଜ ପ୍ରଭୁତ୍ୱକୁ ବଜାୟ ରଖିବା ପାଇଁ ତୃତୀୟ ବିଶ୍ୱରେ ସୃଷ୍ଟି କରିଥିବା କିଛି ବିଶ୍ୱ ନାଗରିକଙ୍କୁ (ସେ ଭିତରେ ଉଚ୍ଚ ମଧ୍ୟବିତ୍ତ, ପୁଂଜିସଂପନ୍ନ ବୁଦ୍ଧିଜୀବୀ, ବୈଜ୍ଞାନିକ) ବାଦ ଦେଲେ ଜନସାଧାରଣ କୁହାଯାଉଥିବା ବର୍ଗଟି ଦିନକୁ ଦିନ ଅସହାୟ ହେବାରେ ଲାଗିଛି । ଲୋକତନ୍ତ୍ରକୁ ନିଜ ଦେଶର ଆର୍ଥିକ ବିକାଶର ଆବଶ୍ୟକୀୟ ସର୍ତ୍ତ ମାନୁଥିବା ୟୁରୋପୀୟ ଦେଶ ଓ ତାଙ୍କ ଅର୍ଥନୀତି, ତୃତୀୟ ବିଶ୍ୱର ଜନସାଧାରଣର ସମର୍ଥନ ନ ପାଇବା ଏବଂ ଅର୍ଥଶାସ୍ତ୍ରୀମାନେ ଲୋକତାନ୍ତ୍ରିକ ବ୍ୟବସ୍ଥାରୁ ବାଧାର ଆଶଂକା କରି ଅର୍ଥ ବ୍ୟବସ୍ଥାକୁ ଗଣତାନ୍ତ୍ରିକ ପ୍ରକ୍ରିୟାର ବାହାରକୁ ନେଇଯିବାର ପ୍ରୟାସରେ ରତ । ଆଜି ତୃତୀୟ

ବିଶ୍ୱର ସାଧାରଣ ନାଗରିକ ନିଜର ବିକାଶ ପାଇଁ ନିଷ୍ପତ୍ତି ନେବାର ଯୋଜନା କରିବାର ଭୂମିକାରୁ ହିଁ ବିସ୍ଥାପିତ। ଉପନିବେଶିକ ଶାସନରେ ଦେଶୀୟ ରାଜାମାନେ ଯେମିତି ରବର ଷ୍ଟାଂପ୍ ହୋଇରହିଥିଲେ, ଠିକ ସେମିତି ଆଜି ତୃତୀୟ ବିଶ୍ୱର ରାଷ୍ଟ୍ରର ଶାସକଙ୍କ ଅବସ୍ଥା। ଉଭୟେ ନିଜର ବିଳାସକୁ ପ୍ରାଥମିକତା ଦେଇଆସିଛନ୍ତି। ଆମ ଦେଶର ବଜେଟ, ଶିକ୍ଷା, ସ୍ୱାସ୍ଥ୍ୟ, କୃଷି ଶିଳ୍ପ ନୀତି ତିଆରି ହୁଏ ବିଶ୍ୱବ୍ୟାଙ୍କର ପରାମର୍ଶରେ ନୁହେଁ ପ୍ରଭାବରେ। ବିଧେୟକ ତିଆରିରେ ଲୋକସଭା ବିଧାନସଭାର ଭୂମିକା ଆଜି ନାମକୁ ମାତ୍ର। ଜନକଲ୍ୟାଣକାରୀ ରାଷ୍ଟ୍ର ଜନକଲ୍ୟାଣରୁ ବିସ୍ଥାପିତ। ଜନକଲ୍ୟାଣ ନାଁରେ 'ବିଶ୍ୱ ନାଗରିକ'ଙ୍କ କଲ୍ୟାଣରେ ଆଜି ଆମ ଦେଶର ପ୍ରତିଟି ବର୍ଗ କୌଣସି ନା କୌଣସି ଦିଗରୁ ବିସ୍ଥାପିତ ଓ ବଂଚିତ। କିନ୍ତୁ ବିଭିନ୍ନ ବର୍ଗ ଉପରେ ଏହାର ପ୍ରଭାବ ଅଲଗା ଅଲଗା। 'ବିଶ୍ୱ ନାଗରିକ' ବର୍ଗଟି ବୌଦ୍ଧିକ ଦାସତ୍ୱ, ବଚସ୍କରତା ସତ୍ତ୍ୱେ ପାଇଛି ବିଳାସର ଜୀବନ ଓ ତୃଣମୂଳ ବର୍ଗଟି କାମ କରିବାର ମୌଳିକ ଅଧିକାରରୁ ବଂଚିତ ହୋଇ ଭୋଗୁଛି ଦାରିଦ୍ର୍ୟ ଓ ଅନାହାର।

ୟୁରୋପୀୟ ବିଜ୍ଞାନ ଓ ପ୍ରଯୁକ୍ତି ବିକାଶର ମୂଳ ପ୍ରେରଣା ଥିଲା ସାମ୍ରାଜ୍ୟବାଦୀ ଆବଶ୍ୟକତାର ପରିପୂର୍ତ୍ତି, ସେ ପୁଣି ସାମ୍ରାଜ୍ୟବାଦୀ ଢାଂଚାରେ। ସେଇଥିପାଇଁ ତ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ସମାଜରେ ଥିବା ବୈଷମ୍ୟକୁ ଦୂର କରିବାରେ ସହାୟକ ହୋଇପାରିନି। ସମାଜର ପ୍ରତିବର୍ଗକୁ ଖାଦ୍ୟ, ପାନୀୟଜଳ ଉପଲବ୍ଧ କରେଇବାରେ, ରୋଜଗାର ଯୋଗାଇବା ଦିଗରେ ପ୍ରୟାସୀ ହୋଇନାହିଁ। ଶିକ୍ଷା ଓ ସ୍ୱାସ୍ଥ୍ୟ ସେବାକୁ ଶସ୍ତା ଓ ସହଜଲବ୍ଧ କରିନାହିଁ। ସମାଜବାଦୀ ନେତା କିଶନ ପଟ୍ଟନାୟକ ପ୍ରଯୁକ୍ତି ଉପରେ ଲେଖିଥିବା ଲେଖାରେ ଆଧୁନିକ ବିଜ୍ଞାନ ଉପରେ ଗାନ୍ଧୀଙ୍କ ଚିନ୍ତାଧାରା ପ୍ରକାଶ କରିବାକୁ ଯାଇ ଲେଖିଛନ୍ତି - "ସାରା ପୃଥିବୀକୁ ୟୁରୋପୀୟ ସମୃଦ୍ଧିର ସ୍ତରଯାଏ ପହଂଚେଇବାର ଅର୍ଥ ହେଲା ଉପନିବେଶବାଦକୁ ପୃଥିବୀରୁ ହଟେଇ ବ୍ରହ୍ମାଣ୍ଡର ଆଉ କୋଉ ଗ୍ରହକୁ ପୃଥିବୀର ଉପନିବେଶ କରିବାକୁ ହେବ। ଏହାବିନା ଦୁନିଆରୁ କେବେ ଉପନିବେଶବାଦ ହଟିବ ନାହିଁ। କିମ୍ବା ଉପନିବେଶବାଦର ବିଲୋପ ହେଲେ ୟୁରୋପ ଓ ଆମେରିକାର ସମୃଦ୍ଧି ରହିବ ନାହିଁ। ଆଧୁନିକ ପ୍ରଯୁକ୍ତିର ଚରିତ୍ର ଯାହା ସେ ତୃତୀୟ ବିଶ୍ୱକୁ ସମୃଦ୍ଧ କରିବ ନାହିଁ। ଆଧୁନିକ ପ୍ରଯୁକ୍ତିରେ ଅଧିକାଂଶ ଯନ୍ତ୍ରର ଚରିତ୍ର ହେଉଛି ଲୋକଙ୍କୁ ମାଲିକ ଓ ଚାକର ଶ୍ରେଣୀରେ ବାଣ୍ଟିବା। ବିତ୍ତଶାଳୀ ଔଦ୍ୟୋଗିକ ଦେଶମାନେ ବିକାଶଶୀଳ ରାଷ୍ଟ୍ରରେ ବଜାର ଖୋଜୁଛନ୍ତି, ଯେଉଁଠି ପର୍ଯ୍ୟାପ୍ତ ପ୍ରାକୃତିକ ସଂସାଧନ, ଶସ୍ତା ମାନବ ଶ୍ରମ ଏବଂ ତାଙ୍କ ଉତ୍ପାଦିତ ଉପଭୋଗର ସାମଗ୍ରୀ କିଣିବା ଲାଗି ଏକ ମଧ୍ୟବିତ୍ତ ବର୍ଗ ରହିଥିବ। ତୃତୀୟ ବିଶ୍ୱର ରାଷ୍ଟ୍ରମାନେ ଆଧୁନିକ ବିଜ୍ଞାନକୁ, ପ୍ରଯୁକ୍ତିକୁ ନିଜର ସାମାଜିକ ଐତିହାସିକ ତଥା ମାନବ

ସଂବଳର ସଂଖ୍ୟା ଓ ଚରିତ୍ରର ପୃଷ୍ଠଭୂମିରେ ପରଖିବା ବେଳେ ନିଜ ନିଜ ଭିତରେ କୌଣସି ଆଲୋଚନା ନ କରିବାଟା ଦୁର୍ଭାଗ୍ୟଜନକ। ୟୁରୋପୀୟ ବିଜ୍ଞାନ ଓ ଯନ୍ତ୍ର କୌଶଳକୁ ପ୍ରାଥମିକତା ଦେଉଥିବା ଯାଏଁ ତୃତୀୟ ବିଶ୍ୱରେ ବିସ୍ଥାପନର ସମସ୍ୟା ବଢ଼ିବଢ଼ି ଚାଲିଥିବ।"

ତଥାକଥିତ ବିକାଶଜନିତ ବିସ୍ଥାପନ ସହ ମୁଖ୍ୟତଃ ଦୁଇଟି ଦିଗ ଜଡ଼ିତ। ପ୍ରଥମଟି ହେଲା ଜୀବନ ଜୀବିକାରୁ ଉଚ୍ଛେଦୀକରଣ, ଦ୍ୱିତୀୟଟି ହେଲା ପରିବେଶ ସମସ୍ୟା। ଏହି ଦି'ଟି ଦିଗରୁ କୃଷି କ୍ଷେତ୍ରରେ ନୂଆ ସମସ୍ୟାମାନ ସୃଷ୍ଟି ହେଉଛି। ମୁଖ୍ୟ କୃଷି ସମସ୍ୟା ଭିତରେ ଚାଷଜମି, ଅଣଚାଷ ଜମିରେ ରୂପାନ୍ତରିତ ହେବା, ପରିବେଶ ସମସ୍ୟାରୁ ମରୁଡ଼ି, ଜଳ, ବାୟୁ ଓ ମୃତ୍ତିକା ପ୍ରଦୂଷଣ ଯୋଗୁଁ ଫସଲହାନୀ ଓ ଚାଷଜମି ପଡ଼ିଆ ପକେଇବାକୁ ବାଧ୍ୟ ହେବା। ପରିବେଶ ସମସ୍ୟା ସହ ଜଙ୍ଗଲକୈନ୍ଦ୍ରିକ ଜୀବନ ଜିଉଁଥିବା ବର୍ଗଟି ବିସ୍ଥାପିତ ହେଉଛି। ଅଣକୃଷି କ୍ଷେତ୍ରରେ କର୍ମ ସଂସ୍ଥାନ ସୃଷ୍ଟି ହେଉ ନଥିବା ବେଳେ କୃଷିକ୍ଷେତ୍ର ଅଣକୃଷି ଜମିରେ ପରିଣତ ହେବା ଦ୍ୱାରା ଚାଷୀ ଓ କୃଷି ଶ୍ରମିକ ବର୍ଗଟି କାମ କରିବାର ଅଧିକାରରୁ ବଂଚିତ ହେଉଛି। ରପ୍ତାନୀଭିତ୍ତିକ କୃଷି ନାଁରେ ହଜାର ହଜାର ଏକର ଜମି ଲିଜ୍ ଦେବା, କର୍ପୋରେଟ୍ ସେକ୍ଟରକୁ ଉତ୍ସାହିତ କରିବା, କୃଷିକୁ ଉଦ୍ୟୋଗ ରୂପେ ଘୋଷଣା କରି ପାରଂପାରିକ ଖାଦ୍ୟଶସ୍ୟ ଉତ୍ପାଦନକୁ ନିରୁତ୍ସାହିତ କରି ଖାଦ୍ୟ ନିରାପତ୍ତା ବିପର୍ଯ୍ୟସ୍ତର ମସୁଧା କରିବା, ପୋଖରାନ୍‌ରେ ଭା.ଜ.ପା ସରକାରର ନପୁଂସକ ବୀରତା ପ୍ରଦର୍ଶନ ପରେ ପରେ ପ୍ରତି କଥାରେ ଭୀରୁତା ପ୍ରଦର୍ଶନ କରି ପଶ୍ଚିମୀ ନବ୍ୟ-ଉପନିବେଶବାଦ ଆଗରେ ମୁଣ୍ଡ ନୁଆଇଁ 'ପେଟେଣ୍ଟ ସଂଶୋଧନ ବିଲ୍ ଆଗତ କରି ଅନେକ ପରଂପରାଗତ ବସ୍ତୁ, କୌଶଳ ଓ ଔଷଧ ଉପରୁ ସାଧାରଣ ଲୋକଙ୍କ ପ୍ରାକୃତିକ ଓ ଆଇନ୍‌ଗତ ହକ୍ ଛଡ଼େଇ ନେବା, ବିଶ୍ୱବ୍ୟାପାର ସଂଗଠନର ପ୍ରାବଧାନ ଓ ନିୟନ୍ତ୍ରଣଗୁଡ଼ିକ ଭାରତରେ ଲାଗୁ କରିବା, ଯେଉଁ ଔଦ୍ୟୋଗିକ ଉତ୍ପାଦନ ଉପରେ ୟୁରୋପୀୟ କମ୍ପାନୀର ଦାଦାଗିରି ବଢ଼ୁଛି ତାକୁ ଆମ ଉପରେ ଲଦିବା ପାଇଁ ପ୍ରଶ୍ରୟ ଦେବା, ଇଣ୍ଟରନେଟ୍ ଦ୍ୱାରା ଜ୍ଞାନର ବିବିଧତାକୁ ନଷ୍ଟ କରିବା, ଜ୍ଞାନ ବଦଳରେ ସୂଚନାକୁ ପ୍ରାଧାନ୍ୟ ଦେବା, ଭାରତୀୟ ବ୍ୟାଙ୍କ ଓ ବୀମା ଶିଳ୍ପର ଘରୋଇକରଣ ପ୍ରଭୃତି ପଦକ୍ଷେପମାନ ନୂଆ ନୂଆ ବିସ୍ଥାପନର ସମସ୍ୟା ସୃଷ୍ଟି କରିବା ସହ ସାଧାରଣ ଜନତାର ବୁନିଆଦୀ ଅଧିକାରର ଅସ୍ତିତ୍ୱ ଶେଷ ହେବାର ବିପଦ ସୃଷ୍ଟି ହେଉଛି।

ଜୈବ ବିବିଧତାର ସଂରକ୍ଷକ ହୋଇଥିବା ଏକ ନୂଆ ଗୋଷ୍ଠୀ ଅଭୟାରଣ୍ୟ ପାଇଁ ସେଇ ମଣିଷକୁ ଅରଣ୍ୟ ଅଂଚଳରୁ ବହିଷ୍କୃତ କରିବାକୁ ଚାହାଁନ୍ତି, ଯାର ସଂସ୍କୃତି ଏବଂ ଜୀବନଧାରା ଜଙ୍ଗଲ ଉପରେ ନିର୍ଭରଶୀଳ। ତାଙ୍କ ଦୃଷ୍ଟିରେ ନୂତନ ଜଙ୍ଗଲ ସୃଷ୍ଟି ଅସମ୍ଭବ, ତେଣୁ ସୀମିତ ଜଙ୍ଗଲ ଇଲାକାରେ ପଶୁ ଏବଂ ବିତ୍ତଶାଳୀ ବର୍ଗର ବିଳାସୀ ପର୍ଯ୍ୟଟକଙ୍କ

ଏକାଧିକାର ନିଶ୍ଚିତ କରିବା ପାଇଁ ସେମାନେ ଲାଗିଛନ୍ତି । ବିଭିନ୍ନ ପ୍ରକଳ୍ପ ସ୍ଥାପନ ଓ ପ୍ରାକୃତିକ ସମ୍ପଦର ଲୁଣ୍ଠନ ଯେଉଁ ଧନୀକ ବର୍ଗର ସୃଷ୍ଟି ପାଇଁ ହେଲା ସେମାନଙ୍କ ବିଳାସ ପାଇଁ ବନବାସୀକୁ ବିସ୍ଥାପିତ କରାଯାଉଛି ।

ସାମ୍ରାଜ୍ୟବାଦୀ ଉଦ୍ୟୋଗର ମୁଖ୍ୟ ଚରିତ୍ର ହେଲା-ପ୍ରାକୃତିକ ସମ୍ପଦର ବିନିଯୋଗ କମ୍ ସମୟ ସୀମା ଭିତର ଏତେ ବେଶି ହେବ ଯେ ଅସରା ମନେ ହେଉଥିବା ସମ୍ବଳ ମାତ୍ର କେତୋଟି ପୀଢ଼ିରେ ଶେଷ ହୋଇଯିବ, ତା ଛଡ଼ା ନିଜ ଦେଶ ଅପେକ୍ଷା ଅନ୍ୟ ଦେଶର ସମ୍ବଳକୁ ବେଶି ବ୍ୟବହାର କରିବା, ଯେଉଁ ପ୍ରାକୃତିକ ସମ୍ବଳର ଶୋଧନରେ ଇନ୍ଧନକୁ ପରିବର୍ତ୍ତନରେ କିମ୍ବା ଯେଉଁ ସାମଗ୍ରୀ ଉତ୍ପାଦନରେ ବେଶି ପ୍ରଦୂଷଣର ସମ୍ଭାବନା ରହିଛି ସେସବୁ ପ୍ରକଳ୍ପ ତୃତୀୟ ବିଶ୍ୱର ରାଷ୍ଟ୍ରରେ ପ୍ରତିଷ୍ଠା କରିବା ଇତ୍ୟାଦି ଏହାର ଅନ୍ୟ ପ୍ରଧାନ ଚରିତ୍ର । ଏ ପ୍ରକାର ଶୋଷଣକୁ ସମର୍ଥନ କରୁଥିବା ବିକାଶ ନୀତି ଓ ଅର୍ଥନୀତି ଆପଣେଇବା ପାଇଁ ବିଶ୍ୱବାଣିଜ୍ୟ ସଂଗଠନ, ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ମାଧମରେ ଓ ତେଲ ଉତ୍ପାଦନକାରୀ ଦେଶଙ୍କ ଉପରେ ସାମରିକ-ରାଜନୈତିକ ନିୟନ୍ତ୍ରଣ ଜାହିର କରି 'ଦେଶକୁ' ମାଧ୍ୟମ କରି ମଧ ଚାପ ସୃଷ୍ଟି କରାଯାଉଛି । ପ୍ରଯୁକ୍ତିର ବିକାଶରେ ସାମ୍ରାଜ୍ୟବାଦୀମାନଙ୍କ ସହଯୋଗର ଅନିବାର୍ଯ୍ୟତା ଜାହିର କରାଯାଉଛି ।

ଜୀବନ ଜୀବିକା ହରେଇବା ଓ ପରିବେଶ ନଷ୍ଟ ବିରୋଧରେ ବିସ୍ଥାପନ ବିରୋଧୀ ଆନ୍ଦୋଳନ ହେଉଛି । ଏ ପ୍ରକାର ଆନ୍ଦୋଳନର ମୂଳ କାରଣ ହେଲା ହରେଇବାର ଭୟ (ସେ ପାରମ୍ପରିକ ଜୀବିକା ଅର୍ଜନର ଉତ୍ସ ହେଉ କି ପରମ୍ପରାଗତ ଭାବରେ ଚାଲିଆସିଥିବା ଏବଂ ସୁରକ୍ଷିତ ମନେହେଉଥିବା ସାମାଜିକ ସ୍ଥିତି ଓ ବ୍ୟବସ୍ଥା ହେଉ) ଓ ଭବିଷ୍ୟତ ଜୀବନକୁ ନେଇ ଅନିଶ୍ଚିତତା । ଏ ଭୟ ଓ ଅନିଶ୍ଚିତତାର ଗଭୀରତା ସମାଜର ବିଭିନ୍ନ ବର୍ଗର ମଣିଷ ପାଇଁ ଅଲଗା, ଯଦିଓ ସଭିଏଁ ଉଣା-ଅଧିକେ କ୍ଷତିଗ୍ରସ୍ତ ହେଇଥାଏ । ଅଧିକାଂଶ ଆନ୍ଦୋଳନରେ ଉଭୟ ପରିବେଶ ଏବଂ ଜୀବନ ଜୀବିକାର ପ୍ରଶ୍ନ ଜଡ଼ିତ କରାଯାଉଛି । ଅତୀତରେ ହେଉଥିବା ପ୍ରକଳ୍ପଗୁଡ଼ିକରେ ବିସ୍ଥାପିତ ଲୋକେ ଭୋଗି ଆସୁଥିବା ନାହିଁ ନଥିବା ଦୁର୍ଦ୍ଦଶାର କରୁଣ କାହାଣୀ, ବିସ୍ଥାପିତ ହେଲାପରର କରୁଣ ସାମାଜିକ, ଅର୍ଥନୈତିକ ସ୍ଥିତି, ପରିଚୟହୀନ ଅବସ୍ଥିତି, ଜୀବନକାଳ ଭିତରେ ଦୁଇ ତିନିଥର ବିସ୍ଥାପିତ ହେବା, ପ୍ରକଳ୍ପ ସ୍ଥାପନ ପରେ ସ୍ଥାନୀୟ ଲୋକଙ୍କ ଉପରେ ବହିରାଗତଙ୍କ ଶୋଷଣ ଓ ଅତ୍ୟାଚାର ଏବଂ ଦଶନ୍ଧି ଦଶନ୍ଧି ଧରି କ୍ଷତିପୂରଣ ନ ପାଇବାର ଉଦାହରଣ ଲୋକଙ୍କୁ ଭିଟାମାଟି ନଛାଡ଼ିବା ଦିଗରେ ପ୍ରତିଜ୍ଞାବଦ୍ଧ କରାଉଛି । ପ୍ରକଳ୍ପ ବିରୋଧୀ ଆନ୍ଦୋଳନ ସ୍ଥାନୀୟ ଭିତ୍ତିରେ ଗଢ଼ିଉଠୁଛି ସତ କିନ୍ତୁ ଏ ଆନ୍ଦୋଳନଗୁଡ଼ିକ ମଧ୍ୟରେ ସଂଯୋଗ ଓ ସମନ୍ୱୟ ସ୍ଥାପନ ପାଇଁ ନେତୃତ୍ୱ ସ୍ତରରେ ଉଦ୍ୟମ

ହେବା ଏକ ସୁଖକର କଥା। କିନ୍ତୁ ଏ ପ୍ରକାର ପ୍ରକଳ୍ପ ଗୁଡ଼ିକ ପଛରେ ରହିଥିବା ସାମ୍ରାଜ୍ୟବାଦୀ ରାଜନୀତିକ ଅର୍ଥନୀତି, ବିଜ୍ଞାନ ଓ ଅତ୍ୟାଧୁନିକ ଯନ୍ତ୍ରକୌଶଳର ଚରିତ୍ର ନେଇ ତାଙ୍କ ଭିତରେ ଯଥେଷ୍ଟ ଆଲୋଚନା ହେଇପାରି ନାହିଁ। ଜନସାଧାରଣଙ୍କ ଭିତରେ ତ ଏ ନେଇ ଆଲୋଚନା ହିଁ ଆରମ୍ଭ ହୋଇନାହିଁ। ରୂପାୟିତ ପ୍ରକଳ୍ପ ଓ ପ୍ରସ୍ତାବିତ ପ୍ରକଳ୍ପ ଗୁଡ଼ିକ କେବଳ ସ୍ଥାନୀୟ ଲୋକଙ୍କ ସମସ୍ୟା ରୂପେ ବିଚାର କରାଯାଉଛି। ପ୍ରଚଳିତ ବ୍ୟବସ୍ଥା, ବିଜ୍ଞାନ ଓ ତାର ବିକଳ୍ପ ନେଇ ସେମାନଙ୍କ ଭିତରେ ଏ ଯାଏଁ କୌଣସି ସହମତି ନାହିଁ ଏବଂ ବିକଳ୍ପ ଚିନ୍ତାକୁ ପ୍ରତିଷ୍ଠିତ କରିବାର ଯଥେଷ୍ଟ ଅବସର ନାହିଁ। ଗତ ଦୁଇତିନି ଦଶକରେ ଆଧୁନିକ ପ୍ରଯୁକ୍ତିର ସର୍ବାଧିକ ସମାଲୋଚନା, ପରିବେଶକୁ ନେଇ ଆନ୍ଦୋଳନ କରୁଥିବା ନେତୃତ୍ୱ କରିଛି। ମାତ୍ର ସେ ଆଲୋଚନା ସ୍ଥାନୀୟ ଓ ନିର୍ଦ୍ଦିଷ୍ଟ ଘଟଣାକୈନ୍ଦ୍ରିକ ହେଇ ରହିଛି। ସ୍ଥାନୀୟ ଓ ଘଟଣାକୈନ୍ଦ୍ରିକ ହେଇ ରହିଥିବା ଯାଏ ଆନ୍ଦୋଳନଗୁଡ଼ିକ ମଧ୍ୟରେ ସମ୍ପର୍କ ଓ ସମନ୍ୱୟ ସ୍ଥାପନ ସହ ସାମ୍ରାଜ୍ୟବାଦୀ ବ୍ୟବସ୍ଥା ବିରୋଧରେ ସ୍ୱର-ଉତ୍ତୋଳନ ମଧ୍ୟ ଏବର ଜଗତୀକରଣ ବ୍ୟବସ୍ଥାରେ ଯଥେଷ୍ଟ ହେବ ନାହିଁ। ଏହା ଆନ୍ଦୋଳନକୁ ବ୍ୟାପକ କରିବା ଦିଗରେ ଅନ୍ୟତମ ସଫଳ ପଦକ୍ଷେପ ମାତ୍ର। ତୃତୀୟ ବିଶ୍ୱର ରାଷ୍ଟ୍ରଗୁଡ଼ିକ ମଧ୍ୟରେ ଏକଥାକୁ ନେଇ ଆଲୋଚନା ହେବା ଦରକାର ମାତ୍ର ତୃତୀୟ ବିଶ୍ୱର ରାଷ୍ଟ୍ର ଗୁଡ଼ିକରେ ଥିବା "ବିଶ୍ୱ ନାଗରିକ" ଏବଂ ତାଙ୍କ ଦ୍ୱାରା ନିୟନ୍ତ୍ରିତ ରାଷ୍ଟ୍ରଶକ୍ତି ପଶ୍ଚିମ ଦେଶଦ୍ୱାରା ସୃଷ୍ଟି ନବ୍ୟ-ବଜାର ଶକ୍ତିର ଇଙ୍ଗିତରେ ପରିଚାଳିତ। ଏପରିକି ପ୍ରମୁଖ ରାଜନୈତିକ ଦଳ (ସେ ଦକ୍ଷିଣପନ୍ଥୀ ହୁଅନ୍ତୁ କି ବାମପନ୍ଥୀ) ସାମ୍ରାଜ୍ୟବାଦୀ ମାନସିକତାର ଉଦ୍ୟୋକ୍ତା ପାଲଟି ସାରିଛନ୍ତି।

ଆଧୁନିକ ଯନ୍ତ୍ର କୌଶଳରେ ପ୍ରତିଷ୍ଠିତ ହେଉଥିବା ଶିଳ୍ପ ଏବଂ ସେ ଶିଳ୍ପ ପାଇଁ ହେଉଥିବା ପ୍ରାକୃତିକ ସମ୍ବଳର ଲୁଣ୍ଠନ, ପ୍ରକଳ୍ପ ଯୋଗୁଁ ଦେଶର କୃଷି ବ୍ୟବସ୍ଥାରେ ଏବଂ ଶ୍ରମିକମାନଙ୍କର ହେଉଥିବା କ୍ଷତିକୁ ନେଇ ଭାରତର ମୁଖ୍ୟ ଧାରାର ବାମପନ୍ଥୀମାନେ ଏ ପର୍ଯ୍ୟନ୍ତ ବି ବଡ଼ ଦ୍ୱନ୍ଦ୍ୱାତ୍ମକ ଅବସ୍ଥାରେ। ତୃତୀୟ ବିଶ୍ୱର ବଢୁଥିବା ବେରୋଜଗାରୀ, ବିସ୍ଥାପନ ଏବଂ ଉଦାରୀକରଣ ପ୍ରକ୍ରିୟାରେ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ଦେଶଗୁଡ଼ିକର ଆର୍ଥିକ ପ୍ରଗତି ହେଉନଥିବାର ଚର୍ଚ୍ଚା ହେଉଥିବା ସତ୍ତ୍ୱେ ମୁଖ୍ୟଧାରାର ବାମପନ୍ଥୀ ମାନେ ଅତ୍ୟାଧୁନିକ ଯନ୍ତ୍ରକୌଶଳ ସହ ପ୍ରକଳ୍ପ ସ୍ଥାପନ ସହିତ ସାମାଜିକ ବୈଷମ୍ୟ ଓ ସାମନ୍ତବାଦୀ ବ୍ୟବସ୍ଥାରେ ପରିବର୍ତ୍ତନର ସ୍ୱପ୍ନ ଦେଖୁଛନ୍ତି। ଏପରି ଭ୍ରମାତ୍ମକ ଚିନ୍ତାପଛରେ ତାଙ୍କର ଚିନ୍ତାଧାରାରେ ସ୍ୱବିରତା, ଦୃଷ୍ଟିଭଙ୍ଗୀରେ ପଛୁଆପଣ ନା କୌଣସି ନିହିତ ସ୍ୱାର୍ଥ ଦାୟୀ ତାହା ବିଚାର୍ଯ୍ୟ। ସେମାନଙ୍କର ଦୃଷ୍ଟିଭଙ୍ଗୀକୁ ନେଇ ଯାହା କିଛି ଭ୍ରମ ଥିଲା ନନ୍ଦିଗ୍ରାମ, ସିଙ୍ଗୁର ଓ ଲାଲଗଡ଼ ଘଟଣା ପରେ ତାହା ଦୂର ହେଇଯାଇଛି। ସେ ଦୃଷ୍ଟିରୁ ପୋସ୍କୋ ଓ ଗୋପାଳପୁର ଆନ୍ଦୋଳନରେ ସି.ପି.ଆଇ. ଦଳର ସଂପୃକ୍ତି ବ୍ୟତିକ୍ରମ ମନେ ହୁଏ।

ଆନ୍ଦୋଳନକାରୀଙ୍କ ମଧ୍ୟରେ ଆଉ ଏକ ଗୋଷ୍ଠୀ ରହିଛନ୍ତି ଯେଉଁମାନେ ଏ ପର୍ଯ୍ୟନ୍ତ ଦେଶର ବିଗ୍ଭର ବିଭାଗକୁ ବଜାରଶକ୍ତି ଆଗରେ ମୁଣ୍ଡ ନୁଆଁଇ ସାରିଥିବା ରାଷ୍ଟ୍ରଶକ୍ତି ନିୟନ୍ତଣ ବାହାରେ ବୋଲି ମନେ କରୁଛନ୍ତି । ତେଣୁ ପ୍ରଦୂଷଣ ଓ ପରିବେଶ ନଷ୍ଟ ବିରୋଧରେ ବିଗ୍ଭରାଳୟରେ ଲଢ଼େଇ କରୁଛନ୍ତି । ଗଣତାନ୍ତିକ ରାଷ୍ଟ୍ରରେ ଜନଶକ୍ତି ଓ ଜନମତ ଅପେକ୍ଷା ବିଗ୍ଭରାଳୟ ଉପରେ ବେଶି ଆସ୍ଥା ସ୍ଥାପନ କରିବା ସୁସ୍ଥ ଗଣତନ୍ତ ପାଇଁ ବିପଦ୍‌ଜନକ । ଏବେ ଭାରତ ବର୍ଷରେ ସ୍ୱେଚ୍ଛାସେବୀ ସଂଗଠନଗୁଡ଼ିକ ନିଜକୁ ଏକ ପ୍ରଗତିଶୀଳ ଶକ୍ତି ବୋଲି ପ୍ରତିପାଦିତ କରିବା ପାଇଁ ବ୍ୟାକୁଳ ହେବାର ଦେଖାଯାଉଛି । ରାଜନୈତିକ ଦଳ ଗୁଡ଼ିକଙ୍କ ଅପେକ୍ଷା ଏମାନଙ୍କ ଭୂମିକା ଆହୁରି ଅସ୍ୱଷ୍ଟ ଏବଂ ଦ୍ୱନ୍ଦ୍ୱାତ୍ମକ । ଏମାନଙ୍କ ମଧ୍ୟରେ ଅନେକେ ନ୍ୟାୟୋଚିତ କ୍ଷତିପୂରଣ ନୀତିର ଆଲୋଚନା କରୁଛନ୍ତି । ପ୍ରକଳ୍ପ ସ୍ଥାପନ ଓ ବିସ୍ଥାପନକୁ ସଂପୂର୍ଣ୍ଣ ବିରୋଧ କରୁଥିବା ସ୍ଥାନୀୟ ନେତୃବୃନ୍ଦଙ୍କୁ ଏଥିରେ ଜଡ଼ିତ କରୁଛନ୍ତି ଏବଂ ଅନ୍ୟପଟେ ଏପ୍ରକାର ଆନ୍ଦୋଳନରେ ସକ୍ରିୟ ଭୂମିକା ନେବାର ଦାବୀ କରୁଛନ୍ତି । ସେମାନେ ନିଜର ଶକ୍ତି ଓ ସାର୍ମଥ୍ୟ ଓ ସୀମିତତା ବୁଝି ଏ ପ୍ରକାର ଆନ୍ଦୋଳନକୁ କି ପ୍ରକାର ସହଯୋଗ କରିପାରନ୍ତେ ସେ ନେଇ ଗଭୀର ଭାବେ ଚିନ୍ତା କରିବା ସହିତ ଅମୁକ ଆନ୍ଦୋଳନ ଆମର ଆନ୍ଦୋଳନ ବୋଲି ଗର୍ବ କରିବାର ଲାଳସା ପରିହାର କଲେ ହୁଏତ ଆନ୍ଦୋଳନକୁ କିଛିଟା ସାହାଯ୍ୟ କରିପାରନ୍ତେ । ସେମାନଙ୍କ ମଧ୍ୟରୁ ଅନେକ ସରକାରୀ କଳର ମଧ୍ୟସ୍ତି ହେଇ ଗ୍ଭଲୁ ରହିଥିବା ଜନଆନ୍ଦୋଳନମାନଙ୍କୁ ଭାଙ୍ଗିବା ପାଇଁ ସରକାର ଓ କମ୍ପାନୀ ଦଲାଲି କରିବାକୁ ପଛାଉ ନାହାନ୍ତି । ଏଭଳି ସଂଗଠନର ମୁଖ୍ୟ ଅଧିକାରୀମାନେ ନିଜର, ନିଜ ସଂଗଠନର ସ୍ୱାର୍ଥ ଓ ନିରାପତ୍ତା ଦୃଷ୍ଟିରୁ ଆନ୍ଦୋଳନର କାର୍ଯ୍ୟକ୍ରମକୁ ସଂକୁଚିତ କରି କ୍ରମଶଃ ସାଲିସ୍ ଆଡ଼କୁ ନେଇ ଯାଇଥାଆନ୍ତି । ଏସବୁ ଅନୁଷ୍ଠାନର ପରିଗ୍ଭଳକମାନେ ନିଜ ସଂସ୍ଥା ଏବଂ ଲୋକ ସଂଗଠନ ମଧ୍ୟରେ ଭିନ୍ନତାକୁ ଉପଲବ୍ଧି କରିବା ଜରୁରୀ । ଆନ୍ଦୋଳନକାରୀମାନେ ମଧ୍ୟ ସ୍ୱେଚ୍ଛାସେବୀ ସଂଗଠନ ସହିତ କି ପ୍ରକାର ସମ୍ପର୍କ ରଖିବେ ଏବଂ ଆନ୍ଦୋଳନରେ ସେମାନଙ୍କ ଭୂମିକା କଣ ହେବ ସେ ନେଇ ନିଜ ଭିତରେ ଆଲୋଚନା କରି ସ୍ୱଷ୍ଟ ହେବା ଜରୁରୀ । ସ୍ୱଦେଶୀ ଅର୍ଥନୀତିର କଥା କହୁଥିବା ଗାନ୍ଧିବାଦୀ, ସର୍ବୋଦୟୀମାନେ ଏ ପ୍ରକାର ଆନ୍ଦୋଳନରେ ସେତେବେଶୀ ସକ୍ରିୟ ନୁହଁନ୍ତି ମାତ୍ର ସେମାନେ ୟୁରୋପୀୟ ପ୍ରଯୁକ୍ତି ବିଦ୍ୟାର ସମାଲୋଚକ । କିନ୍ତୁ ସେମାନଙ୍କ ପାଇଁ ୟୁରୋପୀୟ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ବିକଳ୍ପ ହେଉଛି ଚରଖାନୀତି । ଚରଖା ନୀତିର ଆଗକୁ ଚିନ୍ତା କରିବା ପାଇଁ ସେମାନେ ପ୍ରସ୍ତୁତ ହେବା ଦରକାର । ଗାନ୍ଧୀଙ୍କ ଚରଖା ନୀତିର ବହୁ ସମାଲୋଚନା ହେଇ ସାରିଛି ଏ ଭିତରେ । ଏଇ ସମାଲୋଚନାର ପରିପ୍ରେକ୍ଷୀରେ ଗାନ୍ଧୀନୀତିର ସଂସ୍କାର ସହ ଆଗକୁ ଚିନ୍ତା କରିବାର ଅଛି । ବିସ୍ଥାପନ ଏବଂ ବିଭିନ୍ନ ପ୍ରକାରର ପ୍ରକଳ୍ପକୁ ନେଇ କିଛି

ଆନ୍ଦୋଳନକାରୀଙ୍କ ଏକ ଅଲଗା ଦୃଷ୍ଟି କୋଣ ରହିଛି । ସେମାନେ ଆଧୁନିକ ଯନ୍ତ୍ର କୌଶଳ ସହ ଉଦ୍ୟୋଗୀକରଣକୁ ବିରୋଧ କରିବା ଅପେକ୍ଷା ଉଦ୍ୟୋଗ ଉପରେ କା'ର ମାଲିକାନା ରହିବ ସେ ନେଇ ବେଶି ଚିନ୍ତିତ ପରି ଜଣାପଡୁଛନ୍ତି । ତାଙ୍କ ଦୃଷ୍ଟିକୋଣ ହେଲା - ସମାଜର ସାମୂହିକ ସମ୍ବଳ ଓ ଶ୍ରମିକର ଶ୍ରମ ଉଦ୍ୟୋଗର ମୂଳତତ୍ତ୍ୱ ହେଉଥିବା ବେଳେ ପୁଞ୍ଜିଯୋଗାଡ଼ କରୁଥିବା ବ୍ୟକ୍ତିର ମାଲିକାନାର ପ୍ରଶ୍ନ ଆସୁଛି କେଉଁଠୁ ? ଉଦ୍ୟୋଗ ଉପରେ ସମାଜର ମାଲିକାନା ରହୁ । ଉଦ୍ୟୋଗର ପଚାଶ ଭାଗ ଅଂଶ ସମାଜର, ଦଶ ଭାଗ ଜମି ହରାଉଥିବା କୃଷକର, ଦଶଭାଗ ଶ୍ରମିକ ଏବଂ ତିରିଶ ଭାଗ ପୁଞ୍ଜିପତିର । ସମାଜ ମାଲିକ ହେବ, ପୁଞ୍ଜିପତି ପରିଚାଳନା କରିବ । ଯେଉଁ ପର୍ଯ୍ୟନ୍ତ ଏ ସର୍ତ୍ତ ପୂରଣ କରାଯାଇ ନାହିଁ, ସେ ପର୍ଯ୍ୟନ୍ତ ଉଦ୍ୟୋଗ ହେବାକୁ ଦିଆଯିବ ନାହିଁ । କିଛି ବର୍ଷ ହେଲା ପଶ୍ଚିମୀ ଦେଶ ସମୂହ ଏକ ନୂଆ ବିଶ୍ୱବ୍ୟାପୀ ଅର୍ଥ ବ୍ୟବସ୍ଥା ନିର୍ମାଣରେ ଲାଗିଛନ୍ତି ଯାହା ମାଧ୍ୟମରେ ସେମାନେ ନିଜର ଅତିରିକ୍ତ ପୁଞ୍ଜିକୁ ଅନ୍ୟ ଦେଶରେ ଖଟାଇ ନିଜ ଆବଶ୍ୟକତା ମୁତାବକ ଉତ୍ପାଦନ ସହ ଅର୍ଥ ଓ ବ୍ୟାପାର ଉପରେ ନିଜର ପୁରା କବ୍‌ଜା ଚାହୁଁଛନ୍ତି । ପୁଞ୍ଜି ମାଧ୍ୟମରେ ସେମାନେ ଅନ୍ୟ ଦେଶରେ ଉପଲବ୍‌ଧ ପ୍ରାକୃତିକ ସଂପଦ, ଶ୍ରମବଳ ଏବଂ ବଜାର ଉପରେ ନିଜର ନିୟନ୍ତ୍ରଣକୁ ମଜବୁତ କରିବେ । ଭାରତ ପରି ତୃତୀୟ ବିଶ୍ୱର ଅର୍ଥଶାସ୍ତ୍ରୀ ଏପରି ବ୍ୟବସ୍ଥାର ବିକାଶ ଅନୁରୂପ ନୀତି ପ୍ରଣୟନକୁ 'ଆର୍ଥିକ ଉଦାରୀକରଣ'ର ନାଁ ଦେଇଛନ୍ତି । ଏତଦ୍ୱାରା ଦେଶୀ ପୁଞ୍ଜିପତିଙ୍କର କ୍ଷତି ହେଉଥିବା ସତ୍ତ୍ୱେ ନିଜ ସ୍ୱାର୍ଥ ସାଧନ ପାଇଁ ସେମାନେ ପଶ୍ଚିମ ଦେଶ ଉପରେ ଆଶ୍ରିତ । ଏପରି ଅବସ୍ଥାରେ ଦେଶୀ ପୁଞ୍ଜିପତିମାନେ ନିଜର ସ୍ୱାଧୀନ ସ୍ଥିତି ବଞ୍ଚେଇ ପାରୁନାହାନ୍ତି ଏବଂ ଉଦ୍ୟୋଗଗୁଡ଼ିକ ଆଧୁନିକ ଯନ୍ତ୍ର କୌଶଳ ଆଶ୍ରିତ, ଶ୍ରମ ଓ ଶ୍ରମ କୌଶଳ ଅପେକ୍ଷା ପୁଞ୍ଜିକୁ ବେଶି ମହତ୍ତ୍ୱ ଦେଉଛନ୍ତି । ସାମ୍ରାଜ୍ୟବାଦୀ ଶୋଷଣ ପାଇଁ ଯାର ବିକାଶ ହେଉଛି ଏବଂ ଅର୍ଥବ୍ୟବସ୍ଥାର ଜଗତୀକରଣ ଯୋଗୁଁ ବିକାଶଶୀଳ ରାଷ୍ଟ୍ରର ଅର୍ଥବ୍ୟବସ୍ଥାକୁ ଯେଉଁଠି ଗଣତନ୍ତ୍ରର ପରିଧି ବାହାରକୁ ନେବାର ମସୁଧା ଚାଲୁଛି ସେପରି ଅବସ୍ଥାରେ ସମାଜର ମାଲିକାନା କିମ୍ବା ବିସ୍ଥାପିତ ଶ୍ରମିକ ଓ କୃଷକର ଭାଗିଦାରୀ କଥା ଚିନ୍ତା କରିବା ହୁଏତ ବାସ୍ତବ ଏବଂ ବ୍ୟବହାରିକ ଲାଗୁନାହିଁ । ଅବଶ୍ୟ ଏ ସଂବଧରେ ଆହୁରି ବିତର୍କର ଆବଶ୍ୟକତା ରହିଛି ।

ନକସଲପନ୍ଥୀମାନେ ଏବେ ଏବେ ଏପ୍ରକାର ଆନ୍ଦୋଳନ ଆଡ଼କୁ ନଜର ଦେଉ ଥିବାର ଦେଖିବାକୁ ମିଳୁଛି । ଏମାନଙ୍କ ଭୂମିକା ଓ ତାର ପ୍ରଭାବର ସମୀକ୍ଷା ଲାଗି ଆଉ କିଛି ବର୍ଷ ଆବଶ୍ୟକ । ନର୍ମଦା ଆନ୍ଦୋଳନର ବିଫଳତାକୁ ଇଙ୍ଗିତ କରି ସେମାନେ କୁହନ୍ତି ଯେଉଁ ତତ୍ତ୍ୱ ଓ ଶକ୍ତି ବିରୋଧରେ ଏ ଲଢ଼େଇରେ ସଶସ୍ତ୍ର ଗଣସଂଗ୍ରାମ ବିନା ସଫଳତା

ମିଳିବ ନାହିଁ। ଅହିଂସାତ୍ମକ ଆନ୍ଦୋଳନର ଦିନ ସରିଗଲା ବୋଲି ସେମାନେ ଦାବି କରନ୍ତି। ଛତିଶଗଡ଼ର 'ରାଓ ଘର'ର ପ୍ରସ୍ତାବିତ ଲୁହା ଖଣି ପ୍ରକଳ୍ପକୁ ମାଓବାଦୀମାନେ ସଶସ୍ତ୍ର ସଂଗ୍ରାମ ବଳରେ ବନ୍ଦ କରିରଖିଥିବା କଥା ତାଙ୍କ ମୁଖପତ୍ର 'ପିପୁଲସ୍ ମାର୍ଚ୍ଚ'ରେ ପ୍ରକାଶିତ। ଏଠି ଏକ ପ୍ରଶ୍ନ ଉଠୁଛି ସତରେ କଣ ଅହିଂସାତ୍ମକ ଆନ୍ଦୋଳନର ଯୁଗ ସରିଗଲା ? ଅନ୍ୟ ଦିଗରେ କେବଳ ହିଂସାତ୍ମକ ଆନ୍ଦୋଳନ ଯେ ସଫଳ ହେବ ତାହା ଗୋଟିଏ ଦିଟା ଉଦାହରଣ ଦେଇ ପ୍ରମାଣିତ କରାଯାଇ ନପାରେ । କାରଣ ସ୍ଥାୟୀ, ସଂଗଠିତ ଓ ବ୍ୟାପକ ହିଂସାତ୍ମକ ପରିସ୍ଥିତି ସୃଷ୍ଟି କରିବାର କ୍ଷମତା ରାଷ୍ଟ୍ର ପାଖରେ ବହୁ ଅଧିକ। ଏହି ବିନ୍ଦୁ ଯାଏଁ ଆସି ବିସ୍ଥାପନ ବିରୋଧୀ ଆନ୍ଦୋଳନ ଏକ ଗତିରୋଧର ସାମ୍ନା କରୁଛି। ଏଇ ଗତିରୋଧକୁ ଭଙ୍ଗାଯାଇ ପାରିବ କି ? ସାମୟିକ ଭାବରେ ନୁହେଁ ସବୁଦିନ ପାଇଁ ? ଅବଶ୍ୟ ଏକଥା ଭୁଲିଗଲେ ଚଳିବ ନାହିଁ ଯେ, ଓଡ଼ିଶାରେ ଅହିଂସାତ୍ମକ ଗଣତାନ୍ତ୍ରିକ ଆନ୍ଦୋଳନ ବଳରେ ଗନ୍ଧମାର୍ଦନରୁ ବାଲ୍‌କୋ, ବାଲିଆପାଳରୁ ସାମରିକ ଘାଟି, ଚିଲିକାରୁ ଟାଟା, ଗୋପାଳପୁରରୁ ଟାଟା ହଟିଛି। କିନ୍ତୁ ଏସବୁ ନବେ ପୂର୍ବର ଆନ୍ଦୋଳନ। ତା ଛଡ଼ା ପ୍ରଥମ ଦୁଇଟି ଥିଲା ସରକାରୀ ପ୍ରକଳ୍ପ ବିରୋଧରେ। ନବେର ଜଗତୀକରଣ ପରେ ବିଶେଷତଃ ନର୍ମଦା ଆନ୍ଦୋଳନ ପରଠୁ ଅଧିକାଂଶ ହେଲା ରପ୍ତାନୀଭିତ୍ତିକ ଘରୋଇ ପ୍ରକଳ୍ପ। ସେ ଖଣି ହେଉକି କାରଖାନା ଅବା ବହୁ ରାଷ୍ଟ୍ରୀୟ କମ୍ପାନୀ ଗୁଡ଼ିକୁ ଜଳ ଓ ବିଜୁଳି ଯୋଗାଣର ଲକ୍ଷ୍ୟ ରଖି ନଦୀବନ୍ଧ ଓ ତାପଜ ବିଦ୍ୟୁତ ପ୍ରକଳ୍ପ ନୀତି, ସବୁ କ୍ଷେତ୍ରରେ ବିଦେଶୀ ଓ ଘରୋଇ ପୁଞ୍ଜି ନିବେଶ ଓ ରପ୍ତାନୀ ଭିତ୍ତିକ ଖଣି ଓ ଶିଳ୍ପ ପ୍ରତିଷ୍ଠା କରି ବିଦେଶୀ ମୁଦ୍ରା ସଂଗ୍ରହର ଲକ୍ଷ୍ୟ ହିଁ ହେଲା ଆଜିର 'ଜାତୀୟ ଅର୍ଥନୀତି'ର ଏକ ବଡ଼ ପକ୍ଷ। ସେ ଦୃଷ୍ଟିରୁ ଶ୍ରମ ଆଇନରେ ପରିବର୍ତ୍ତନ, ଶସ୍ତାରେ ଜମି ଲିଜ୍, ଜଳ ଓ ବିଜୁଳି ଦରରେ ରିହାତି, ପରିବେଶ, ଜଙ୍ଗଲ ଓ ଖଣି ଲିଜ୍ ନୀତିକୁ ବିଦେଶୀ ଓ ଘରୋଇ ପୁଞ୍ଜିର ସ୍ୱାର୍ଥ ଅନୁରୂପ କୋହଳ କରିବା ଆଦି କାମ ଜୋରସୋରରେ ଚାଲିଛି। ଦେଶର ଚାହିଦା ଦୃଷ୍ଟିରୁ କିମ୍ବା ରୋଜଗାର ସୃଷ୍ଟିର ଲକ୍ଷ୍ୟ ନରଖି କେବଳ ମୁନାଫାଭିତ୍ତିକ ଏବଂ ଶାସକ ଶ୍ରେଣୀର ଅନୈତିକ ଅର୍ଥଲାଳସା ପାଇଁ ହେଉଥିବା ଏ ପ୍ରକଳ୍ପଗୁଡ଼ିକ ପ୍ରତି ପ୍ରଶାସନ, ପୁଲିସ ଓ ବିଚାର ବିଭାଗର ମାତ୍ରାଧିକ ଅନୁରକ୍ତି ଓ ଆନୁଗତ୍ୟ ପରିଲକ୍ଷିତ ହେଉଛି। ଏପରିକି ବହୁ ସ୍ଥାନରେ ବିରୋଧୀ ଦଳ ତରଫରୁ ଆଗରୁ ଅନ୍ତତଃ ହେଉଥିବା ଉପରଠାଉରିଆ ବିରୋଧ ମଧ୍ୟ ଦେଖିବାକୁ ମିଳୁନାହିଁ। କାଶୀପୁରରେ ସର୍ବଦଳୀୟ କମିଟି, ଉତ୍କଳ ଆଲୁମିନା କଂପାନୀ ପ୍ରତିଷ୍ଠା ସପକ୍ଷରେ ଯାଇ ଲୋକଙ୍କୁ ଦମନ କରିବା ପାଇଁ ସରକାର ଉପରେ ନିରନ୍ତର ଚାପ ପକେଇଥିବା ଘଟଣା ଉଲ୍ଲେଖଯୋଗ୍ୟ। କଳିଙ୍ଗ ନଗରର ଟାଟା, ଜଗତସିଂପୁର ଅଞ୍ଚଳରେ ପୋସ୍କୋ ଓ ଲାଞ୍ଜିଗଡ଼ରେ ମଧ୍ୟ ବେଦାନ୍ତ ପ୍ରକଳ୍ପଗୁଡ଼ିକ ବିରୋଧରେ ମୁଖ୍ୟଧାରାର ରାଜନୈତିକ ଦଳ

ବିଶେଷ କିଛି ପଦକ୍ଷେପ ନେଇ ନାହାନ୍ତି। ଏପରିକି ତାଙ୍କର କେନ୍ଦ୍ରୀୟ ନେତୃତ୍ୱ କୌଣସି କମ୍ପାନୀ ବିରୋଧରେ ପଦକ୍ଷେପ ନେବାର ଆଗ୍ରହ ଦେଖଉ ନାହାନ୍ତି। ଏ ସବୁ ଆନ୍ଦୋଳନରେ ଦମନର ମାତ୍ରା ପ୍ରଥମ ଦୁଇ ପର୍ଯ୍ୟାୟଠୁ ଅଧିକ ତୀବ୍ର ଓ ବ୍ୟାପକ ହେଉଛି। ଲୋକଙ୍କୁ ହତ୍ୟା କରାଯିବା, ମୃତ ଲୋକଙ୍କ ପାପୁଲି କାଟି ଦେବା, ଜୀବିକାର ସୁରକ୍ଷା ପାଇଁ ସଂଘର୍ଷରତ ଲୋକଙ୍କ ନାଁରେ ହତ୍ୟା ଉଦ୍ୟମ, ଦଙ୍ଗା, ଡକାୟତି, ଚୋରି ପରି ଦଫା ଲଗାଯାଇ ମାସ ମାସ ଜେଲରେ ରଖାଯାଉଛି। ତଳକୋର୍ଟଗୁଡ଼ିକରେ ବେଲ୍ ଦିଆଯାଉନି। ପୁଲିସ କିମ୍ବା କମ୍ପାନୀ ସପକ୍ଷବାଦୀଙ୍କ ହିଂସା ବିରୋଧରେ କୌଣସି ଅଭିଯୋଗ ହେଲେ ମଧ୍ୟ ତାଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନତ ଦୂରର କଥା କେସ୍ ମଧ୍ୟ ଦାୟର ହେଉ ନାହିଁ। ସେ କାଶୀପୁର, ପ୍ରସ୍ତାବିତ ପୋସ୍କୋ ଅଞ୍ଚଳ ହେଉ କି କଳିଙ୍ଗ ନଗର।

ଏହାର ଅର୍ଥ ହେଲା ପ୍ରଚଳିତ ବିକାଶଧାରା ପାଇଁ ବିସ୍ଥାପନକୁ ସ୍ୱାଭାବିକ ଓ ଏକ ବଡ଼ ସମୂହକୁ ବଳି ପକାଯିବାକୁ ସାଧାରଣ ଘଟଣା ବୋଲି ଧରି ନିଆଯାଇଛି। ଆରମ୍ଭରୁ ଏମାନଙ୍କ ପ୍ରତି ସରକାର, ରାଜନୈତିକ ଦଳ, ଗଣମାଧ୍ୟମ, ବୁଦ୍ଧିଜୀବୀ ଓ ମଧ୍ୟବିତ୍ତ ଶ୍ରେଣୀ ଉଦାସୀନ ରହିଆସିଛନ୍ତି, ଯାହା ସମୟ କ୍ରମେ ଚରମ ସମ୍ବେଦନହୀନତାରେ ରୂପାନ୍ତରିତ ହେଇଛି। 'ନାଗରିକ ସମାଜ'ର ମୃଦୁ ହସ୍ତକ୍ଷେପକୁ ସରକାର ଗୁରୁତ୍ୱ ଦେଉନାହାନ୍ତି। ବିକାଶର ଏ ପ୍ରଚଳିତ ପ୍ରକ୍ରିୟା ପ୍ରତି ଏ ପ୍ରକଳ୍ପ ବିରୋଧୀ ଆନ୍ଦୋଳନ ଗୁଡ଼ିକ ପ୍ରଶ୍ନ ଉଠେଇଛନ୍ତି ଓ ବିକାଶ ନାଁରେ ଲୁଟ୍ ଓ ପରିବେଶ କ୍ଷତି ପ୍ରତି କିଛିଟା ଜନ ସଚେତନତା ସୃଷ୍ଟି କରିଛନ୍ତି ସତ ମାତ୍ର ପ୍ରତିଷ୍ଠିତ ରାଜନୈତିକ - ସାମାଜିକ ଶକ୍ତିର ଅସହଯୋଗ ଓ ବିକଳ୍ପ ରାଜନୈତିକ ଓ ସାମାଜିକ ତତ୍ତ୍ୱଗୁଡ଼ିକ ମଧ୍ୟରେ ସମନ୍ୱୟର ଅଭାବ ତଥା ଏତେବଡ଼ ଶକ୍ତି ବିରୋଧରେ ଲଢ଼ିବା ଲାଗି ଆବଶ୍ୟକତା ଅନୁରୂପ ଶକ୍ତି ନିର୍ମାଣ ନେଇ ପାରି ନଥିବା ତଥା କର୍ପୋରେଟ୍ ପୁଞ୍ଜି ମାଧ୍ୟମରେ ନିର୍ମିତ ଭ୍ରମ, ପ୍ରଲୋଭନ ଓ ଆତଙ୍କର ବାତାବରଣ ଯୋଗୁଁ ପ୍ରଚଳିତ ବିକାଶ ପ୍ରକ୍ରିୟାକୁ ଗଭୀର ଆଘାତ ଦିଆଯାଇ ପାରୁନି।

ଏବେ କଥା ଉଠେ ଦେଶର ବିକାଶ ନୀତି, ଅର୍ଥବ୍ୟବସ୍ଥା, ଉଦ୍ୟୋଗୀକରଣ ଓ ସେଥିରେ ବ୍ୟବହୃତ ପ୍ରଯୁକ୍ତି ବିଦ୍ୟାର ଚରିତ୍ର ଏବଂ ସର୍ବୋପରି ବିଜ୍ଞାନର ଚାରିତ୍ରିକ ବିଶେଷତାକୁ ନେଇ କାହିଁକି ବା ସାଧାରଣମାନେ ଚିନ୍ତା କରିବେ। ଏସବୁ କଥା ଚିନ୍ତା କରିବାକୁ ରାଜନୈତିକ ଦଳ, ଅର୍ଥଶାସ୍ତ୍ରୀ, ନୀତିନିର୍ଦ୍ଧାରକ, ବିଶେଷଜ୍ଞ ଓ ବୈଜ୍ଞାନିକମାନେ ତ ଅଛନ୍ତି। ରାଷ୍ଟ୍ରଟିଏ ତ ପୁଣି ଅଛି ! ଆଗରୁ ବୈଜ୍ଞାନିକଙ୍କୁ ଛାଡ଼ି ଅନ୍ୟମାନଙ୍କ ଭୂମିକା ବିଷୟରେ ଆଲୋଚନା ସରିଛି। କିଛି ବ୍ୟତିକ୍ରମଙ୍କୁ ଛାଡ଼ି ଅଧିକାଂଶ ବୈଜ୍ଞାନିକ,

ସାମ୍ରାଜ୍ୟବାଦୀଙ୍କ ହାତରେ ଶୋଷଣର ଅସ୍ତ୍ର ହୋଇ ରହିଥିବା ବିଜ୍ଞାନ ବାହାରେ, ଶୂନ୍ୟତାପୂର୍ଣ୍ଣ ଚମତ୍କାରିତା ବାହାରେ ବୈଷମ୍ୟହୀନ ସମାଜ ଗଠନ ଦିଗରେ, ମଣିଷ ଭିତରେ ଶୋଷଣର ମନୋବୃତ୍ତି ବଦଳରେ ଉଦାରତା କିମ୍ବା ବିଶ୍ୱବୋଧ ସୃଷ୍ଟି ଦିଗରେ କାମ କରିବା ଲାଗି ପ୍ରସ୍ତୁତ ନୁହଁନ୍ତି। ଏଥିପାଇଁ ବିଜ୍ଞାନୀଗଣ ପୁଞ୍ଜିପତିଙ୍କ ସହ କିମ୍ବା କ୍ଷମତାର ଛତ୍ରଛାୟାରେ ଛିଡ଼ା ନହୋଇ ସାଧାରଣଙ୍କ ସହ ଛିଡ଼ା ହେବାର ଆହ୍ୱାନକୁ ଗ୍ରହଣ କରିବା ଜରୁରୀ। କିନ୍ତୁ ସ୍ୱାଧୀନ ଭାବରେ କାମ କରିବା ଲାଗି ତାଙ୍କୁ ସ୍ୱାଧୀନ ପୁଞ୍ଜିର ଆବଶ୍ୟକତା ରହିଛି। ଏ ଦିଗରେ ବିକଳ୍ପ ସମାଜର ଚିନ୍ତା କରୁଥିବା ଲୋକଙ୍କୁ ଭୂମିକା ନେବାକୁ ହେବ। ଏ ପରିପ୍ରେକ୍ଷୀରେ ସାଧାରଣ ମାନେ ହିଁ ଚିନ୍ତା ଓ ଆଲୋଚନା କରି ନିଷ୍କର୍ଷ ବାହାର କରି ତାକୁ ଜାହିର କରିବାର ଆବଶ୍ୟକତା ଅନୁଭବ ହେଉଛି। ନୀରବ ବା ନିରପେକ୍ଷ ରହିବାର ଅର୍ଥ ହେଉଛି ଦେଶର ପ୍ରଚଳିତ ବିକାଶ ନୀତି, ଅର୍ଥନୀତି, ଉଦ୍ୟୋଗୀକରଣରେ ଅତ୍ୟାଧୁନିକ ଯନ୍ତ୍ରକୌଶଳର ବ୍ୟବହାରକୁ ସମର୍ଥନ କରିବା। ନୀରବତାର ସଂସ୍କୃତି ଭାଙ୍ଗୁଛି। ଭାଙ୍ଗୁଛି ବୋଲି ଏସବୁ ବିରୋଧରେ ଆନ୍ଦୋଳନ ହେଉଛି। କମ ସଂଖ୍ୟାରେ ବରଂ ହେଉ ପଛେ ଏବେ କିଛି ବୁଦ୍ଧିଜୀବୀ, ଚିନ୍ତାନାୟକ, ବୈଜ୍ଞାନିକ ମାନେ ବିକଳ୍ପ ଉଦ୍ୟମ ଆରମ୍ଭ କରିଛନ୍ତି। ସେମାନଙ୍କୁ ଆହୁରି ଆକ୍ରମଣାତ୍ମକ ଭାବରେ ସକ୍ରିୟ ହୋଇ ଏପ୍ରକାର ଉଦ୍ୟମକୁ ବ୍ୟାପକ କରିବାକୁ ହେବ। ଅଂଧାନୁକରଣର ମାନସିକତାକୁ ଛାଡ଼ି ନିଜ ପରିସ୍ଥିତି ଓ ଆବଶ୍ୟକତା ଅନୁରୂପ ରୋଜଗାରଭିତ୍ତିକ, ବିକେନ୍ଦ୍ରିତ ଉତ୍ପାଦନ ବ୍ୟବସ୍ଥା, ତତ୍ ଅନୁକୂଳ ଅର୍ଥ ବ୍ୟବସ୍ଥା ତିଆରି ଲାଗି ପ୍ରୟାସ କରିବାକୁ ହେବ। ଏସବୁ ହେଉଛି ରାଜନୈତିକ ପ୍ରଶ୍ନ। କେବଳ ଅର୍ଥବ୍ୟବସ୍ଥା କିମ୍ବା ବିଜ୍ଞାନ ଓ ପ୍ରଯୁକ୍ତିର ଆଲୋଚନାରୁ ଏ ସଂବଧରେ ବିଶେଷ କିଛି କରାଯାଇ ପାରିବ ନାହିଁ। ନୈତିକ ପ୍ରଶ୍ନଗୁଡ଼ିକର ମଧ୍ୟ ସେ ପର୍ଯ୍ୟନ୍ତ କୌଣସି ମୂଲ୍ୟ ନାହିଁ ଯେତେଦିନ ଯାଏ ସ୍ପଷ୍ଟ ରାଜନୈତିକ ଦୃଷ୍ଟିକୋଣ ସହ ଏସବୁ ପ୍ରଶ୍ନକୁ ଜାଗ୍ରତ କରାଯିବ ନାହିଁ। ଦେଶର ମୁଖ୍ୟଧାରାର ରାଜନୈତିକ ଦଳଙ୍କର ଏନେଇ କୌଣସି ଦୃଷ୍ଟିଭଙ୍ଗୀ ଓ ମୁଣ୍ଡବ୍ୟଥା ନଥିବାବେଳେ ଜନଆନ୍ଦୋଳନ ଓ ରାଜନୈତିକ ସଂଗଠନମାନଙ୍କୁ ଅଧିକ ଦାୟିତ୍ୱର ସହ ଏସବୁ ପ୍ରଶ୍ନକୁ ଉଠାଇବାକୁ ହେବ।



## ଅଭିଜାତବାଦୀ ରାଷ୍ଟ୍ରତନ୍ତ୍ର ଓ ଜନତା

''ଲୋକଙ୍କୁ ଧମକେଇ ଚମକେଇ
ଡରେଇ ଥରେଇ
ଏବେ ସେ ନିଜେ ଡରିଯାଇଛି'' (ତାର ମାଟିକୁ ଡର)
ରାଷ୍ଟ୍ର ବାବଦରେ କବି ଓୟର୍‌ଓୟର୍ ରାଓ

**ଜନପ୍ରତି ଅନାସ୍ଥାରୁ ଜନତାର ଅନାସ୍ଥା -**

ସ୍ୱାଧୀନତାର ପ୍ରଥମ ଦୁଇ ଦଶନ୍ଧି ପରେ ବା ସତୁରୀ ଦଶକ ଆସୁ ଆସୁ ବ୍ୟବସ୍ଥା ପ୍ରତି ଥିବା ଲୋକଙ୍କ ଆସ୍ଥା ଓ ବିଶ୍ୱାସ ଦୁର୍ବଳ ହେବାକୁ ଆରମ୍ଭ କଲା । ଶାସକ ବର୍ଗ 'ସରକାରୀ ତନ୍ତ୍ର'ର ସମସ୍ତ ଅନୁଷ୍ଠାନକୁ ନିଜ ବ୍ୟକ୍ତିଗତ,ଦଳଗତ ଓ ଆକାଂକ୍ଷା ଓ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀକୁ କାଳ କାଳ ଯାଏ ସମାଜ ଓ ଶାସନ କଳରେ କ୍ଷମତାରୂଢ଼ କରି ରଖିବା ଲାଗି ବ୍ୟବହାର କଲା । ଜାତି, ବର୍ଗ, ଧର୍ମ, ଭାଷା, ଲିଙ୍ଗ ଓ ନୃବଂଶ ତଥା ଅଞ୍ଚଳ ନିର୍ବିଶେଷରେ ଦେଶବାସୀଙ୍କ ସର୍ବନିମ୍ନ ଆଶା ଓ ଆକାଂକ୍ଷା ହେଲା ଖାଦ୍ୟ, ବସ୍ତ୍ର, ବାସ, ଶିକ୍ଷା ଓ ସ୍ୱାସ୍ଥ୍ୟ ସେବା, ସ୍ୱାଭିମାନର ସହ ଦେଶର ସାମାଜିକ - ଆର୍ଥିକ - ରାଜନୈତିକ ପ୍ରକ୍ରିୟାରେ ଅଂଶଗ୍ରହଣ । ଶାସକ ବର୍ଗର ଅଭୀପ୍ସା ଦେଶବାସୀଙ୍କ ଆଶା ଓ ଆକାଂକ୍ଷା ଭିତରେ କୌଣସି ମେଳ ରହିଲା ନାହିଁ । ଯୋଜନାବଦ୍ଧ ଭାବେ ସମାଜକୁ ସର୍ବସମ୍ମତିର ରାସ୍ତାରୁ ବଞ୍ଚିତ କଲା ଏବଂ କ୍ଷମତା କେନ୍ଦ୍ର ଓ ଲୋକଙ୍କ ଭିତରେ ସମ୍ବାଦର ସମସ୍ତ ସମ୍ଭାବନାକୁ ଶେଷ କରିବାର କାମରେ ମନୋନିବେଶ କଲା । ଜନତାନ୍ତ୍ରିକ ରାଜନୀତି 'ନିର୍ବାଚନସର୍ବସ୍ୱ ରାଜନୀତି'ରେ ପରିବର୍ତ୍ତିତ ହେଲା । ଚାଲିଲା ସଂଖ୍ୟାର ଖେଳ । ବହୁ ସଂଖ୍ୟକ, ଅଳ୍ପସଂଖ୍ୟକର ଖେଳ 'ରାଜନୀତି'କୁ ବିଚାରବିହୀନ କରି ପକେଇଲା । ନିର୍ବାଚନୀ ବହୁମତକୁ ନେଇ ଅସୁରକ୍ଷା ଓ ବ୍ୟଗ୍ରତା ଯେତେ ବଢ଼ିଲା ଲୋକଙ୍କ ପ୍ରତି ଅନାସ୍ଥା ସେତେ ବଢ଼ିଲା । ସେ ଅନାସ୍ଥା ବଢ଼ିବା ସ୍ୱାଭାବିକ ଥିଲା କାରଣ ଜନ ଓ ଜନ ସମସ୍ୟାକୁ କେନ୍ଦ୍ରୀୟ ପ୍ରଶ୍ନ କରି ରାଜନୀତି କରିବାକୁ ସାମନ୍ତି ସମ୍ଭ୍ରାନ୍ତ କେବେ ଅନ୍ତରଙ୍ଗ ଭାବେ ଚାହିଁ ନପାରେ । ସେ ନିଜକୁ 'ଜନ' ମନେ କରେ ନାହିଁ । ଜନସ୍ୱାର୍ଥ ସେମାନଙ୍କର ବିରୋଧୀ

ସ୍ୱାର୍ଥ । ତେଣୁ ସେ 'ଭାଗକର-ଭୋଗକର' ରାଜନୀତିକୁ ଆପଣେଇଲା । ପୁରା ସମୁଦାୟକୁ ନ ଧରି ସମୁଦାୟର ଏକ ଆଙ୍ଗୁଠିଗଣା ସଂଭ୍ରାନ୍ତବର୍ଗଙ୍କୁ ଧରିଲା, ସାରା ଅଞ୍ଚଳକୁ ନଧରି ପ୍ରମୁଖ ଜାତି, ଧର୍ମ, ଭାଷାର ମୁଖିଆମାନଙ୍କୁ ଧରିଲା । ଅତି ବିଶିଷ୍ଟ ଧନୀ ଓ ଶିଳ୍ପପତି ପରିବାରଙ୍କୁ ଧରିଲା । ସମାଜରେ ମାନ୍ୟତା ଥିବା ଧାର୍ମିକ/ ସାଂସ୍କୃତିକ ଅନୁଷ୍ଠାନର ମୁଖ୍ୟମାନଙ୍କୁ ଧରିଲା । 'ଜନ' ପ୍ରତି ଅନାସ୍ଥା ଏକତାରଫା ହୋଇ ରହିବ ନାହିଁ । ସମୟକ୍ରମେ 'ଅନୁଭବୀ ଜନତା'ର ମଧ୍ୟ ସେମାନଙ୍କ ପ୍ରତି ଅବିଶ୍ୱାସ ଦୃଢ଼ ହେବାକୁ ଲାଗିଲା ।

'ଜନ' ପ୍ରତି ଅନାସ୍ଥା ଓ ଅନାଗ୍ରହତା ଥିବା ଶାସକବର୍ଗ ଯେବେ ନିର୍ବାଚନରେ ବହୁମତକୁ ଅନ୍ତିମ ଲକ୍ଷ୍ୟ ଓ ନିଜ ଜୀବନମରଣ ପ୍ରଶ୍ନ ମନେ କରେ, ସେଠି ରାଜନୈତିକ ଗତିବିଧିର ଅର୍ଥ ଛଳ ବଳ କପଟ ଓ ମିଛ ପ୍ରତିଶ୍ରୁତି । ହିଂସା, ଆତଙ୍କ ଓ ଦମନକୁ ଆୟୁଧ କରି ଏକ ଶକ୍ତିଶାଳୀ ରାଷ୍ଟ୍ରର ନିର୍ମାଣ ସେଠି ଏକ ଆବଶ୍ୟକତା । ଏହା ସମୟକ୍ରମେ ବହୁଳତାବାଦୀ ସଂସ୍କୃତି ଓ ସ୍ୱାୟତ୍ତତାର ସ୍ୱାଭାବିକ ଦାବି ଓ ଆକାଂକ୍ଷାର ଅବମାନନା କଲା । ଏଣୁ ଗୋଟିଏ ସମୟରେ ସରକାରୀତନ୍ତ୍ରର ନିର୍ଭରଶୀଳତା ପୁଲିସ୍, ଅର୍ଦ୍ଧ ସାମରିକ ବଳ ଓ ସୈନ୍ୟ ଶକ୍ତି ଉପରେ ବଢ଼ିବାକୁ ଲାଗିଲା । ରାଷ୍ଟ୍ରତନ୍ତ୍ର ପ୍ରତି 'ଜନ ଅନାସ୍ଥା'ର ଏକ ବଡ଼ ଉଦାହରଣ ହେଲା ସତୁରି ଦଶକର 'ନକସଲ୍ ବାଡ଼ି' । ଠିକ୍ ସେମିତି ରାଷ୍ଟ୍ରତନ୍ତ୍ରର 'ଜନ' ପ୍ରତି ଅନାସ୍ଥାର ବଡ଼ ଉଦାହରଣ ହେଲା କାଶ୍ମୀରବାସୀଙ୍କ ସ୍ୱାୟତ୍ତତା ଆଗ୍ରହର ଉପେକ୍ଷା ଓ ଜମି ଆନ୍ଦୋଳନରେ ଜଡ଼ିତ ତଥା ତାକୁ ସମର୍ଥନ କରୁଥିବା ଲୋକଙ୍କ ଗଣହତ୍ୟା । କଲିକତାର ସହରୀ ଶିକ୍ଷିତ ଯୁବକ ବି ସେଥିରୁ ବାଦ୍ ଗଲେ ନାହିଁ ।

ଅନ୍ୟତମ ନିର୍ବାଚନୀ ଆୟୁଧ ହେଲା 'ସାଂପ୍ରଦାୟିକତା'ର ରାଜନୀତି । କଂଗ୍ରେସ ବିରୋଧୀ ସମାଜବାଦୀ ଦଳ ଓ କଂଗ୍ରେସ ପ୍ରତି ସ୍ପଷ୍ଟ ଦୃଷ୍ଟିକୋଣ ରଖି ନଥିବା ବାମପନ୍ଥୀ ଦଳମାନଙ୍କ ଆଶାନୁରୂପ ସଫଳତା ଅଭାବରୁ ପଛୁଆ ଅଞ୍ଚଳ, ପଛୁଆ ବର୍ଗ, ଆଦିବାସୀ - ଦଳିତ, ଅସଙ୍ଗଠିତ ଶ୍ରମିକଙ୍କ ଭିତରେ କ୍ରମବର୍ଦ୍ଧମାନ ନିରାଶା, ଅସହାୟତା ସେମାନଙ୍କୁ ଅସ୍ମିତା/ ପରିଚୟଗତ ରାଜନୀତି ଓ 'ନିଜ କଥା ନିଜେ ବୁଝ'ର ସ୍ୱତନ୍ତ୍ର ଜନ ଆନ୍ଦୋଳନ ଆଡ଼କୁ ଯିବାକୁ ବାଧ କଲା । ବାମପନ୍ଥୀ ଦଳମାନେ ଗୋଟିଏ ସମୟ ପରେ ସଂଘର୍ଷର ରାଜନୀତିରୁ ଦୂରେଇ ଗଲେ । ନିର୍ବାଚନ ଓ କ୍ଷମତାକୁ ମାର୍କ୍ସବାଦୀ ଲକ୍ଷ୍ୟ ଓ ଉଦ୍ଦେଶ୍ୟର ପୂର୍ତ୍ତି ପାଇଁ ବ୍ୟବହାର କରିବା ବଦଳରେ ସେମାନେ ନିଜେ ପ୍ରଚଳିତ ବ୍ୟବସ୍ଥାର ଅଙ୍ଗ ହେବାକୁ ଲାଗିଲେ । ଚୀନ-ଭାରତ ଯୁଦ୍ଧ ବେଳର ଭୂମିକାରୁ ତାଙ୍କ ଦେଶପ୍ରେମ ଉପରେ ଅଙ୍ଗୁଳି ଉଠିଥିଲା । ଜରୁରୀକାଳୀନ ପରିସ୍ଥିତି ବେଳେ ସିପିଆଇର ଇନ୍ଦିରା ସମର୍ଥନ ଓ ସିପିଏମ୍‌ର ନିଷ୍କ୍ରିୟତା ଯୋଗୁଁ ଉତ୍ତରଭାରତରେ ବାମପନ୍ଥୀ ନିଜ ଭିତ୍ତିଭୂମି ବ୍ୟାପକ କରିବାର ସୁଯୋଗ ହରେଇଲା ।

କଂଗ୍ରେସର ଛଦ୍ମ ଧର୍ମ ନିରପେକ୍ଷତା, ସ୍ୱାୟତ୍ତତା ବିରୋଧୀ କ୍ରିୟାକଳାପ, ଜନତନ୍ତ୍ରକୁ ନିର୍ବାଚନୀତନ୍ତ୍ରରେ ଓ ସମାଜବାଦକୁ ମିଛ ସ୍ଲୋଗାନ (ଗରିବୀ ହଟାଓ, ରୋଜଗାରର ଅଧିକାର ଭଳି ପ୍ରସଙ୍ଗ)ରେ ପରିଣତ କରିବା, ଗଣତାନ୍ତ୍ରିକ ଅନୁଷ୍ଠାନର ଉପେକ୍ଷା, ଦଳ ଭିତରେ ଆଭ୍ୟନ୍ତରୀଣ ଗଣତନ୍ତ୍ରର ଅଭାବ, ବ୍ୟକ୍ତିବାଦ ଓ ପରିବାରବାଦ, ରାଜନୀତିର କ୍ରମଲଂପଟୀକରଣ ଭଳି କାମ ସାଂପ୍ରଦାୟିକ ଦଳ ଓ ଗୋଷ୍ଠୀକୁ ଶକ୍ତିଶାଳୀ କଲା । ରାଜନୀତିର ଲଂପଟୀକରଣରେ ସଂଜୟ ଗାନ୍ଧୀଙ୍କ ଏକ ବଡ଼ ଭୂମିକା ରହିଛି । ଅଧିକାଂଶ 'ସମାଜବାଦୀ' କଂଗ୍ରେସ ଓ ବିଭିନ୍ନ ସାଂପ୍ରଦାୟିକ ଦଳମାନଙ୍କ ଭିତରେ ବାଣ୍ଟି ହୋଇ ସମୟକ୍ରମେ ସମାଜବାଦୀ ଧାରାକୁ ମାରି ପକେଇଲେ । ଭାରତର ଶୋଷିତ ଚାଷୀ, ଆଦିବାସୀ, ଅସଙ୍ଗଠିତ ଶ୍ରମିକ ଓ ସମାଜିକ ଅପମାନର ଶିକାର ଦରିଦ୍ରତମ ଦଳିତଙ୍କୁ ବାମପନ୍ଥୀଙ୍କ ବିଫଳତା ଓ ଦଳ ଉପରେ ଏକ ଅଭିଜାତ ବର୍ଗ ବିଶେଷତଃ ଉଚ୍ଚ ଜାତି ଓ ବ୍ରାହ୍ମଣବାଦୀ ତଥା ଅପେକ୍ଷାକୃତ ସୁବିଧାଜନକ ସ୍ଥିତିରେ ଥିବା ସଂଗଠିତ ଶ୍ରମିକନେତାଙ୍କ କର୍ତ୍ତୃତ୍ୱ, ଯା ଭିତରେ ଉଦ୍ୟୋଗିକ ସମୃଦ୍ଧି ଓ ତଦ୍‌ଜନିତ ଭୋଗର ଆବିଳତା ଓ ଦୁର୍ବଳତା ଥିଲା । ଏଇ ବୈଶିଷ୍ଟ୍ୟ ହିଁ ସେମାନଙ୍କୁ ବୃହତ୍ତର ଜନତାଠୁ ଦୂରକୁ ନେଇଗଲା ।

ଅନେକ ଦୋଷ ଦୁର୍ବଳତା ସତ୍ତ୍ୱେ ପଛୁଆ ବର୍ଗ ଓ ଦଳିତ 'ଅସ୍ମିତା'ର ରାଜନୀତି ହିଁ ଗୋଟିଏ ଶକ୍ତି ଯିଏ ଭାଜପା ଭଳି ସାମ୍ପ୍ରଦାୟିକ ଦଳର ଅଗ୍ରଗତିକୁ କିଛିଟା ଲଗାମ ଦେବାରେ ସମର୍ଥ ହୋଇଛି । ଏ କିଛି କମ୍ ଉପଲବ୍ଧି ନୁହେଁ । କିନ୍ତୁ ଏମାନେ ସମଗ୍ର ଦେଶ ପାଇଁ ସବୁ ବର୍ଗ ପାଇଁ ନେତୃତ୍ୱ ନେଇ ପାରିବା ପରି ଦକ୍ଷତା ବା ମାନସିକତାର ଅଧିକାରୀ ଏଯାଏଁ ହେଇ ପାରିନାହାନ୍ତି । ତା'ର ଅନେକ କାରଣ ଭିତରୁ ଗୋଟିଏ କାରଣ ହେଲା - ପ୍ରତିକ୍ରିୟାଶୀଳତାର ଊର୍ଦ୍ଧ୍ୱକୁ ଯାଇ ନପାରିବା । ଅନ୍ୟଟି ହେଲା ଏମାନଙ୍କ ଭିତରେ ମଧ ଏକ ଆଭିଜାତ ଶ୍ରେଣୀ ଜନ୍ମ ନେଇଛନ୍ତି ଯେଉଁମାନେ ନିଜ ବର୍ଗର ଦରିଦ୍ରତମ ବହୁସଂଖ୍ୟକଙ୍କ ଆଶା ଆକାଂକ୍ଷାର ଅସଲ ପ୍ରତିନିଧି ହେବାକୁ ଚାହାଁନ୍ତି ନାହିଁ । ପଛୁଆ ଓ ଦଳିତ ବର୍ଗର ମୂଳ ସାମାଜିକ - ଆର୍ଥିକ ଶୈକ୍ଷିକ ପରିବର୍ତ୍ତନ ପାଇଁ ଯେଉଁ ରକମର ସଂଘର୍ଷର ରାଜନୀତି ଓ ସଂଗଠନ ଆବଶ୍ୟକ ସେଥିପାଇଁ ଏମାନେ ନିଜକୁ ପ୍ରସ୍ତୁତ କରିପାରି ନାହାନ୍ତି । ପଛୁଆ, ଦଳିତ ଓ ଅନ୍ୟ ଧାର୍ମିକ ସଂଖ୍ୟାଲଘୁ ଶ୍ରେଣୀର ମୁକ୍ତି ପ୍ରସଙ୍ଗକୁ ଏମାନେ ଆରକ୍ଷଣର ଦାବିରେ ସୀମିତ କରି ରଖିବାକୁ ଚାହାନ୍ତି । ଏମାନଙ୍କ ଭିତରୁ ଏକ 'ନବବ୍ରାହ୍ମଣବାଦୀ ଗୋଷ୍ଠୀ' ପ୍ରଚଳିତ ବିକାଶଧାରାର ସମର୍ଥକ ହେଉ ଉଦ୍ୟୋଗିକ ସମୃଦ୍ଧି ଓ ପ୍ରଯୁକ୍ତି ପ୍ରବନ୍ଧର ପ୍ରଶଂସକ ସାଜିଛନ୍ତି । ଏହା ପରୋକ୍ଷରେ ଉଦାରୀକରଣ, ଘରୋଇକରଣ ପ୍ରକ୍ରିୟାକୁ ବଳ ଦେଉଛି ଓ ତାହା ଆରକ୍ଷଣଜନିତ ଅଯଥେଷ୍ଟ ସୁବିଧା ସୁଯୋଗରୁ ମଧ ଏ ଶ୍ରେଣୀକୁ ବଞ୍ଚିତ କରୁଛି ।

**କର୍ପୋରେଟ ମୋଡ଼େଲ ଓ ଅଭିଜାତ ବର୍ଗର ଯୁଗଳବନ୍ଦୀ -**

ସାଂପ୍ରଦାୟିକତା, ନୃବଂଶୀୟତା, ଉଦ୍ୟୋଗିକ ସମୃଦ୍ଧି, ପ୍ରଯୁକ୍ତି ଭିତ୍ତିକ ପ୍ରବନ୍ଧନ, ନିର୍ବାଚନ ସର୍ବସ୍ୱତା ଓ ସମୃଦ୍ଧିର ଏକରୂପୀକରଣରେ ବିଶ୍ୱାସୀ ଶାସକବର୍ଗ ଓ ତାର ଦୃଢ଼ ସମର୍ଥକ 'ଅଭିଜାତ' ବର୍ଗ ବିକାଶର ଯେଉଁ ରାସ୍ତା ଅନୁକରଣ କରୁଛି ସେଥିରେ ସମ୍ପତ୍ତି, କ୍ଷମତା, ବିଶେଷାଧିକାର, ସଂସାଧନ, ପଦପଦବୀ ଓ ସର୍ବୋପରି ନିଯୁକ୍ତି ତଥା ରୋଜଗାର ଏକ ସୀମିତ ସଂଖ୍ୟକ ସମୂହକୁ ମିଳୁଛି । ଚାଷୀ, ଆଦିବାସୀ ଶ୍ରମିକ, ଦଳିତ, ଧାର୍ମିକ ଅଳ୍ପ ସଂଖ୍ୟକ ଓ ଦେଶର ସୀମାବର୍ତ୍ତୀ ଜନସମୂହକୁ ବର୍ତ୍ତମାନର 'ଅତି କେନ୍ଦ୍ରୀକୃତ ପୁଞ୍ଜିବାଦୀ ପ୍ରଯୁକ୍ତି ଭିତ୍ତିକ ଆର୍ଥିକ ମୋଡ଼େଲ'ର ବାହାରେ ଛାଡ଼ି ଦିଆଯାଇଛି । ସପିଂମଲ୍‌ସ ଓ ସେଜ୍ ପ୍ରକଳ୍ପ ବାହାରେ ଛିଡ଼ା, ଲୋକଟି କଥା ଚିନ୍ତା କରନ୍ତୁ । ଆଜିର 'ରାଷ୍ଟ୍ରତନ୍ତ୍ର' ଉପର ବର୍ଣ୍ଣିତ ବର୍ଗର ନିହିତ ସ୍ୱାର୍ଥର ପ୍ରତିନିଧି ଓ ସଂରକ୍ଷକ ସାଜିଛି । ତେଣୁ ସେ ବିକାଶ ବନାମ ବିନାଶର ବିତର୍କରେ ଚାଷୀ ଆଦିବାସୀ ବିରୋଧୀ ତଥା ପରିବେଶର ପ୍ରଶ୍ନକୁ ନେଇ ଉଦାସୀନ । ପଛୁଆ ବର୍ଗ ଓ ଧାର୍ମିକ ଅଳ୍ପସଂଖ୍ୟକଙ୍କୁ ଧର୍ମକୁ ଆଖିଠାର ଭଳି ଦିଆଯାଉଥିବା ରିହାତି ଓ ସଂରକ୍ଷଣ ପ୍ରତି ଅସହିଷ୍ଣୁ । ଦଳିତର ଉତଥାନ ଓ ଅଧିକାର ସଚେତନତା ପ୍ରତି ଆକ୍ରାମକ ।

ତେଣୁ ଏଇ ଶ୍ରେଣୀଟି 'ରାଷ୍ଟ୍ର'କୁ ବ୍ୟବସ୍ଥା ଓ ବିକାଶର କେନ୍ଦ୍ରୀୟ ସଂସ୍ଥା ବନେଇବା ବଦଳରେ ବଜାରର ଉପକରଣ ବା ଆୟୁଧ କରିବାକୁ ଚାହୁଁଛି । ପରିଣାମ ସ୍ୱରୂପ ଜନମଙ୍ଗଳ ଦାୟିତ୍ୱରୁ ରାଷ୍ଟ୍ରର ପଳାୟନ, ଉଦାରୀକରଣ ଅର୍ଥ ବ୍ୟବସ୍ଥାର ଘରୋଇକରଣ ଓ ଏନ୍.ଜି.ଓ ମାନଙ୍କୁ ଦାୟିତ୍ୱ ହସ୍ତାନ୍ତରର ପ୍ରୟାସକୁ ବଳ ଦେଉଛି । ପ୍ରଚାରିତ ହେଉଛି ଯେ ଘରୋଇ ପୁଞ୍ଜି, ଘରୋଇ କ୍ଷେତ୍ର, ସ୍ୱୟଂସେବୀ ସଂସ୍ଥା, ବ୍ୟବସାୟିକ ପ୍ରତିଷ୍ଠାନ, ବଂଶ ଏବଂ ବିଭିନ୍ନ ରାଷ୍ଟ୍ରୀୟ - ଅନ୍ତଃରାଷ୍ଟ୍ରୀୟ ପରାମର୍ଶକାରୀ ପ୍ରତିଷ୍ଠାନ 'ବିକାଶ'ର କାମକୁ ରାଷ୍ଟ୍ରତନ୍ତ୍ର ଅପେକ୍ଷା ବେଶୀ ଭଲ ଭାବରେ କରିପାରିବ ଯେମିତିକି ବିଶ୍ୱ ବ୍ୟାଙ୍କ, ଏସିଆନ୍ ଡେଭଲପ୍‌ମେଣ୍ଟ ବ୍ୟାଙ୍କ, ଡବ୍ଲ୍ୟୁଟିଓ, ଆଇ.ଏମ୍.ଏଫ୍., ଡି.ଏଫ୍.ଆଇ.ଡ଼ି । ଏଇ ବିଚାର ଆମକୁ ଆଜି କର୍ପୋରେଟ୍ ମୋଡ଼େଲ ଆଡ଼କୁ ନେଇଯାଉଛି । ଏଇ ସମାଜରେ କର୍ପୋରେଟ, ପଞ୍ଜିକୃତ ସଂସ୍ଥା ଓ ଏନ୍.ଜି.ଓ. ଆଧାରରେ ଗଠିତ ସଂଗଠନ ଗୁଡ଼ିକ ନିର୍ଣ୍ଣାୟକ ଭୂମିକା ନେବେ । ସେଥିପାଇଁ ବିଧାନସଭା, ସଂସଦ ଏବଂ ଜନସାଧାରଣଙ୍କ ପ୍ରତି ଉତ୍ତରଦାୟୀ ରାଜକୀୟ ଢାଞ୍ଚାକୁ ପଛକୁ ଠେଲି ଦିଆଯାଉଛି । ଏଇ ରାଜକୀୟ ଢାଞ୍ଚା ଉପରେ ଉପର ବର୍ଣ୍ଣିତ ବିଚାର ଓ ସେ ବିଚାରର ଉଦ୍ୟୋକ୍ତାମାନଙ୍କର ନିୟନ୍ତ୍ରଣ ମଜବୁତ ହେଇ ରହିଛି ବୋଲି ଅବଶ୍ୟ ଏହା ସମ୍ଭବ ହେଇ ପାରିଛି ।

ଏସବୁ ଯୋଗୁଁ ଅବହେଳିତ, ପ୍ରତାଡ଼ିତ ଓ ପ୍ରତାରିତ ହୋଇଥିବା ସମୂହଗୁଡ଼ିକ ଯେତେବେଳେ ନିଜ ଅସ୍ମିତା ଓ ଅସ୍ତିତ୍ୱ ପ୍ରତି ସଂକଟ ଅନୁଭବିଲା, ସେତେବେଳେ ନିଜର

ପ୍ରତିକ୍ରିୟା ଦେଖେଇଲା । ସମସ୍ତ ଗଣତାନ୍ତିକ ପ୍ରକ୍ରିୟା ଓ ଅନୁଷ୍ଠାନର ଆଶ୍ରୟ ନେଲା । ତଥାକଥିତ ଆଇନସମ୍ମତ ଉପାୟ କଲା । ନ୍ୟାୟ ପାଇଲା ନାହିଁ । ଆଗରୁ ତ ଚର୍ଚ୍ଚା ହେଉଛି ଯେ ସେସବୁ ଢାଞ୍ଚା/ ଅନୁଷ୍ଠାନ/ ପ୍ରକ୍ରିୟା ବହୁଦିନରୁ ତା'ର ମୂଲ୍ୟ ହରାଇସାରିଛି । ଶାସକବର୍ଗ ସେସବୁକୁ ଅକାମୀ ଓ ଲୋକବିରୋଧୀ କରିସାରିଛି । ପ୍ରତାରିତ ବର୍ଗର ଦାବୀ ଓ ପ୍ରତିବାଦକୁ ଦେଖି ଅଭିଜାତବର୍ଗ କହୁଛି, ''ରାଜନୀତି ବହୁତ ହେଲା । ରାଜନୀତି ବନ୍ଦ କର । ରାଷ୍ଟ୍ର ସାମ୍ନାରେ ଖୁବ୍ ବେଶୀ ଦାବି ଜମା ହେଇଗଲାଣି ।'' ଦାବିଗୁଡ଼ିକ ବହୁମୁଖୀ ଓ ବହୁସ୍ତରୀୟ ଓ ପ୍ରାୟତଃ ନ୍ୟାୟୋଚିତ । ମାତ୍ର ଅଭିଜାତଙ୍କ ମତରେ ଏକ ଖୋଲା ରାଜନୀତି ପ୍ରକ୍ରିୟାକୁ ନିର୍ଦ୍ଦିଷ୍ଟ ଢଙ୍ଗରେ ଆଗକୁ ବଢ଼େଇବ । ଏବଂ ଏକ ଶକ୍ତିଶାଳୀ ରାଷ୍ଟ୍ର ନିର୍ମାଣର ରାସ୍ତାରେ ଏସବୁ ଦାବି ଓ ପ୍ରତିବାଦ ବାଧକ ସାଜୁଛି । ତା ମତରେ ଏସବୁ ଆଇନ୍ ଶୃଙ୍ଖଳାର ପ୍ରଶ୍ନ ।

ସତୁରୀ ଦଶକରେ, ସମାଜର ତଳ ଶ୍ରେଣୀର ବ୍ୟାପକ ଆନ୍ଦୋଳନର ଚାପରୁ ଅନେକ ଦାବି ଉଠିଥିଲା । ସେ ଭିତରୁ କିଛି ପ୍ରମୁଖ ଦାବି ଥିଲା - ଭୂମିସୁଧାର, ସମସ୍ତଙ୍କୁ ସମାନ ଶିକ୍ଷା ଓ ଶ୍ରମ ଓ ଶ୍ରମିକ ସମ୍ବନ୍ଧିତ ଅଧିକାର, ଜାତୀୟ ସମ୍ପଦର ଜାତୀୟକରଣ ଓ ଜଙ୍ଗଲ ଉପରେ ଆଦିବାସୀର ଅଧିକାର ତଥା କିଛି ଢାଞ୍ଚାଗତ ପରିବର୍ତ୍ତନ (ବିକେନ୍ଦ୍ରୀକରଣ) । ତା'ର ଉଦ୍ଦେଶ୍ୟ ଥିଲା ଆଧୁନିକ ରାଷ୍ଟ୍ରର ଉତ୍ତରଦାୟୀ ଅମଲାତନ୍ତ୍ର, ଯୋଜନା ନିର୍ମାଣ ଏବଂ 'ବିକାଶ'ର ଏକ ଢାଞ୍ଚା ସହ ସଂସାଧନ ଓ ଅବସରଗୁଡ଼ିକର ସୁସଂଗତ ଓ ସୁଷମ ବଣ୍ଟନ । ଏ ଦାବି ଓ ପ୍ରକ୍ରିୟା ପ୍ରତି ଅସହମତ ପ୍ରତିକ୍ରିୟାଶୀଳ ଅଭିଜାତବର୍ଗ 'ରାଜନୀତି'ର ଭୂମିକାକୁ ସୀମିତ କରି ୮୦ ଦଶକରୁ ପ୍ରଯୁକ୍ତିକୈନ୍ଦ୍ରିକ ପ୍ରବନ୍ଧନର କଥା କହିଲା । ଉତ୍ତରଦାୟୀ ଅମଲାତନ୍ତ୍ର, ସଂସଦ, ନିର୍ବାଚିତ ପ୍ରତିନିଧି ଓ ରାଜନୈତିକ ଦଳ ବଦଳରେ ଅନ୍ତରାଷ୍ଟ୍ରୀୟ ବିଶେଷଜ୍ଞ ସଂସ୍ଥା ସହିତ ଜଡ଼ିତ ପ୍ରବନ୍ଧକ ଓ ତଥାକଥିତ ଟେକ୍ନିକାଲ୍ ବା ସ୍ପେଶିଆଲିଷ୍ଟମାନଙ୍କ ଏକ କ୍ଷୁଦ୍ର ସମୂହ ଯେଉଁମାନଙ୍କର ଜନ ଓ ଜନ ସମସ୍ୟା ସହ କୌଣସି ସମ୍ପର୍କ ନାହିଁ । ସେଥିପାଇଁ ଦେଶ ଓ ବିଦେଶର ବଡ଼ ବଡ଼ ଶିକ୍ଷାନୁଷ୍ଠାନରୁ ଶିକ୍ଷାପ୍ରାପ୍ତ ଓ ଅନ୍ତରାଷ୍ଟ୍ରୀୟ ସଂସ୍ଥାରେ କର୍ମରତ ଅମଲାଙ୍କ ପ୍ରଭୁତ୍ୱ ବଢୁଛି । ଗଣ, ଗଣରାଜନୀତି, ଗଣ ସମର୍ଥନ ଓ ଗଣଭିତ୍ତି ନଥିବା ଏକ 'ପ୍ରବନ୍ଧକ ଶ୍ରେଣୀ' ସବୁ ନିଷ୍ପତ୍ତିମୂଳକ ଅନୁଷ୍ଠାନ ଓ ଯୋଜନା ନିର୍ମାଣର ମୁଖ୍ୟ ହୋଇଯାଇଛନ୍ତି । ଏପରିକି ରାଜନୈତିକ ଦଳ ଭିତରେ ବି ସେମାନଙ୍କର ପ୍ରଭୁତ୍ୱ ବଢ଼ି ବଢ଼ି ଚାଲିଛି ।

ଆମର ଶାସକ ଓ ଅଭିଜାତ ବର୍ଗ ବିଶ୍ୱ ଆର୍ଥିକ ବଜାର, ସାମରିକ ବଜାର ଓ ବିଶ୍ୱ ପ୍ରଯୁକ୍ତି ସଂଘରେ ସାମିଲ ହେବାକୁ ଚାହାଁନ୍ତି । ଏହାକୁ ହିଁ, 'ବିକଶିତ' ଓ ରାଷ୍ଟ୍ରୀୟ ଅନ୍ତରାଷ୍ଟ୍ରୀୟସ୍ତରରେ ସ୍ଥାୟୀତ୍ୱ ଓ ସୁରକ୍ଷାର ଆଧାର ବୋଲି ମନେ କରାଯାଉଛି । ଏହାକୁ କୁହାଯାଉଛି ଉତ୍ତର ଆଧୁନିକ ଜୀବନ । ଏଠି ଆଧୁନିକତାର ଅର୍ଥ ସମାନତା, ସ୍ୱାଧୀନତା,

...ତ୍ରୀ କି ଗଣତନ୍ତ୍ର ନୁହେଁ କେବଳ ଅନ୍ୟଠୁ ଭିନ୍ନ, ଶ୍ରେଷ୍ଠ, ଇଷ୍ଟ ହୋଇଥିବାର ଅହଂର ତୃପ୍ତି ଏବଂ କ୍ଷମତା ଓ ପ୍ରଯୁକ୍ତିର ସୁଖ । ଏହାର ପୂର୍ତ୍ତି ପାଇଁ ଅନ୍ୟ ପ୍ରତି ଉପନିବେଶିକ ଘୃଣା ଓ ସମ୍ବେଦନହୀନତା । ଆଧୁନିକତା ଏଠି ଇଚ୍ଛାର ସୀମାହୀନତା । ସେଥିରେ କୌଣସି ସୀମା, ସଂଯମ, ନିରୀକ୍ଷଣ, ପୁନଃମୂଲ୍ୟାଙ୍କନ ବା ସମୀକ୍ଷା ଚାହେଁନା । ଉପରବର୍ଣ୍ଣିତ ଅତ୍ୟାଧୁନିକ ଗତିଶୀଳ ଦୁନିଆଁ ସହ ସମସ୍ତ ଭାରତୀୟଙ୍କୁ ଯୋଡ଼ିବା ସମ୍ଭବ ନୁହେଁ, ଏକଥା ଶାସକ ଓ ଅଭିଜାତବର୍ଗ ଜାଣିଛି ବୁଝିଛି ।

ଏଇ ଗତିଶୀଳ ଦୁନିଆଁରୁ ବିଚ୍ଛିନ୍ନ କରି ରଖାଯାଉଥିବା ଏତେ ବଡ଼ ସମୂହର ଅସନ୍ତୋଷକୁ ତ ପୁଣି ଏକ ସୀମା ଭିତରେ ରଖିବାକୁ ପଡ଼ିବ । ସେମାନଙ୍କୁ ଭ୍ରମିତ, ସନ୍ତୁଷ୍ଟ ଓ ନିୟନ୍ତ୍ରଣରେ ରଖିବାର ଅନେକ ଫନ୍ଦିଫିକର ରହିଛି । ପ୍ରଥମଟି ହେଲା, ସରକାରୀ ଯୋଜନା, ଘୋଷଣା ଓ କିଛି ଭୂଆଁଭୁଲା ପ୍ରକ୍ରିୟା ପ୍ରତି ମୋହ ନିର୍ମାଣ, ଯେମିତି କି ଶସ୍ତା ଚାଉଳ, ରିଲିଫ, ଖାଦ୍ୟ ବଦଳରେ କାମ, ପାଇଖାନା ନିର୍ମାଣ, ନିଶ୍ଚିତ କର୍ମ ନିଯୁକ୍ତି ଭଳି ଯୋଜନା । ଭ୍ରମିତ କଲା ପରି ପ୍ରକ୍ରିୟା ଯେମିତିକି ଠିକା ବଣ୍ଟା ପଞ୍ଚାୟତିରାଜ, ଗ୍ରାମସଭା, ସୂଚନାର ଅଧିକାର, ସ୍ୱୟଂସହାୟକ ମହିଳା ଗୋଷ୍ଠୀ ନିର୍ମାଣ ଓ ଲଘୁଋଣ ବ୍ୟବସ୍ଥା । ଅବଶ୍ୟ ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ ଯେଉଁଠି ଆଉ ସମ୍ଭବ ନୁହେଁ ବୋଲି ଧରି ନିଆଯାଇଛି ସେଠି ଏଭଳି ନିଷ୍ପତ୍ତି ଓ ଯୋଜନା ଯେଉଁ ଆଶ୍ୱାସନା ଦେଉଛି ସେତକ ବି କେବଳ ଏଇଥି ପାଇଁ ଯେ ପାଞ୍ଚ ବର୍ଷରେ ଥରେ ଭୋଟ ହେଉଛି । ଭୋଟ ନଥିଲେ ଏ ରିହାତି ବି ମିଳନ୍ତା ନାହିଁ । ଏଥିରେ ଲୋକଙ୍କୁ ଝୁଲେଇ ରଖିବା ଲାଗି 'ଏନ୍.ଜି.ଓ'ଙ୍କ ଏକ ବଡ଼ ସମୂହ ସରକାର ଓ 'ସରକାରୀ ସଞ୍ଚାର ମାଧ୍ୟମ' ସହ ହାତ ମିଳେଇଛନ୍ତି । ତା' ସହ ଇକୋନୋମିକ୍ ଗ୍ରୋଥ୍ ରେଟ୍/ ସେନ୍‌ସେକ୍ସର ସାପ ସିଡ଼ି ମ୍ୟାଜିକ୍ ତଥା ଗଣତନ୍ତ୍ରର ପରିମାପକରେ ଏପଟ ସେପଟ କରି ଦରିଦ୍ରଙ୍କ ପ୍ରତିଶତ କମୁଛିର ପରିସଂଖ୍ୟାନର ପ୍ରଚାର । କେବେ 'ଫିଲ୍ ଗୁଡ୍' ତ କେବେ 'ସାଇନିଂ ଇଣ୍ଡିଆ' ଓ ଆଉ କେବେ 'ଭିଜନ୍ ୨୦୨୦' । ଦ୍ୱିତୀୟଟି ହେଲା, ନିର୍ବାଚନକୁ ଆକର୍ଷକ କରି ରଖିବା । ଭୋଟର ସାମୟିକ ଭାବେ ହେଉ ପଛେ ଏବେ ବି ତାର ମୂଲ୍ୟ ଓ ଗୁରୁତ୍ୱ ରହିଛି ତାକୁ ସେକଥା ଅନୁଭବ କରେଇବା । ତୃତୀୟଟି ହେଲା, ଶୋଷିତସମୂହ ଭିତରୁ ଏକ ଗୋଷ୍ଠୀକୁ ପ୍ରଲୋଭନ ଦେଖେଇ ସେମାନଙ୍କ ଲମ୍ପଟୀକରଣ କରିବା ଓ ନିଜ ଲୋକଙ୍କ ବିରୋଧରେ ଲଗେଇବା । ଚତୁର୍ଥଟି ହେଲା, ସିନେମା ଖେଳ, ଦୂରଦର୍ଶନ ଧାରାବାହିକ, କୌନ ବନେଗା କରୋଡ଼ପତି - ଲାଖପତି, ଏସ୍.ଏମ୍.ଏସ୍. ଆନ୍ଦୋଳନ, ଜନମତ ସର୍ଭେ, ବିଗ୍ ଫାଇଟ୍ ଭଳି ଚର୍ଚ୍ଚା, ବିଜ୍ଞାପନ ଶିଳ୍ପ, ବଜାରୀ ସ୍କିମ୍, ମାର୍କେଟ ନେଟୱାର୍କିଂ ଜନିତ ସ୍ୱପ୍ନରେ ମତେଇ ରଖିବା । ତଥାକଥିତ ଆଧ୍ୟାତ୍ମିକତା ନାଁରେ ବିସ୍ମିତ ପ୍ରଚାର କୌଶଳ ସହ ବାବା ମାତା ଓ ପ୍ରବଚନ ଶିଳ୍ପର

ଅଫିମ । ଏସବୁ ପରେ ବି ଯେଉଁମାନେ ଏସବୁ ଫନ୍ଦିଫିକର, ପ୍ରଲୋଭନକୁ ଏଡ଼େଇ ସଙ୍ଗଠିତ ହେବେ, ସ୍ୱର ଉତ୍ତୋଳନ କରିବେ ସେମାନଙ୍କୁ ଦମନ । ସେମାନେ ନାମିତ ହେବେ ନକ୍ସଲ ବା ଆତଙ୍କବାଦୀ ଭାବେ । ତାଙ୍କ ନାଁରେ କେସ୍‌ରେ ନାମ ହେଲା - ରାଷ୍ଟ୍ର ବିରୋଧରେ ବିଦ୍ରୋହ ବା ଷଡ଼ଯନ୍ତ୍ର । ସେମାନେ ଜୀବିକା ଲାଗି ସଂଘର୍ଷରତ ମଣିଷ ହୁଅନ୍ତୁ କି ମାନବ ଅଧିକାର ଲାଗି କର୍ମରତ ବୁଦ୍ଧିଜୀବୀ ଅବା ମଣିଷର କଥା କହୁଥିବା କବି କିମ୍ୱା ସଂସ୍କୃତିକର୍ମୀ । ସେ ଛତିଶଗଡ଼ ପି.ୟୁ.ସି. ଏଲ୍.ର ବିନାୟକ ସେନ୍ ହୁଅନ୍ତୁ କି ଓଡ଼ିଶାର କବି ଦାସୁରାମ ମାଲେକା ଅବା ଆନ୍ଧ୍ରର ଯରଯର ରାଓ ଅବା ଶ୍ରମିକ ଅଦିବାସୀ ସଂଗଠନର ସମିମ୍ ଓ ଅନୁରାଗ ଅବା ଉତ୍ତର ପ୍ରଦେଶର ମିର୍ଜାପୁରର ରୋମା । ସମସ୍ତଙ୍କୁ ଆଇନ୍‌ର ଠେଙ୍ଗା ବାଜିବ । ଦମନ ପାଇଁ ଆହୁରି ଶକ୍ତିଶାଳୀ ରାଷ୍ଟ୍ରତନ୍ତ୍ର ତା'ମାନେ ବେଶୀ ପୁଲିସ୍, ଘରୋଇ ପୁଞ୍ଜିପତିଙ୍କୁ ପ୍ରାଇଭେଟ ଗୁଣ୍ଡା ରଖିବାର ଅନୁମତି ଓ ଆଧୁନିକ ପ୍ରଯୁକ୍ତି ଓ ଅସ୍ତ୍ରଶସ୍ତ୍ରରେ ସେମାନଙ୍କୁ ସଜ୍ଜିତ କରିବା । ସେଥିରେ ପୁଣି ଜୁଡିସିଆଲ୍ ଏକ୍ଟିଭିଜମ୍ ନାଁରେ ଜାତି ଓ ଶ୍ରେଣୀ ପୂର୍ବାଗ୍ରହଗ୍ରସ୍ତ ଓ ସଂପ୍ରତି ଦୁର୍ନୀତିଗ୍ରସ୍ତ ବିଚାର ବିଭାଗ ।

ଆଜିର ଏଇ ନବ ଅଭିଜାତ ବର୍ଗ ନେହେରୁ ଓ ଇନ୍ଦିରା ଗାନ୍ଧିଙ୍କ ଭଳି ସମାଜବାଦ ବା ଗରୀବି ହଟାଓ ଓ ଫମ୍ପା ସ୍ଲୋଗାନ ଦେବାକୁ ମଧ୍ୟ ପ୍ରସ୍ତୁତ ନୁହେଁ । ସେ କହୁଛି ପଛରେ ପଡ଼ିରହିଥିବା କୋଟି କୋଟି ଲୋକ ତାଙ୍କ ପାଦ ପାଇଁ ବେଡ଼ି । ସେମାନେ କହୁଛନ୍ତି - ଆମ ଉପରେ ଯଦି ଏ ଲୋକମାନଙ୍କର ବୋଝ ନଥାନ୍ତା ତେବେ ଆମେ କେତେ ଆଗକୁ ବଢ଼ି ସାରିଥାନ୍ତୁ । ଏଥିଲାଗି ଆଗକୁ ବଢ଼ି ସାରିଥିବା ୨୦ ଶତକଡ଼ା ଲୋକଙ୍କ ବିକାଶ ଓ ଲାଭକୁ ବହୁଗୁଣିତ କରିବାକୁ ହେବ । ଆମ ଦେଶରେ ଏ ଲୋକସଂଖ୍ୟା ୨୦ - ୨୫ କୋଟି ହେବ । ଏ ସଂଖ୍ୟା କିଛି କମ୍ ନୁହେଁ , ବଜାର ଓ ବଜାରୀ ଶକ୍ତି ପାଇଁ । ତା' ଛଡ଼ା ଏ ଶ୍ରେଣୀଟି ଖୁବ୍ ପ୍ରଭାବଶାଳୀ । ସେ ଦେଶର ନୀତିକୁ ପ୍ରଭାବିତ କରିବାକୁ ସକ୍ଷମ । ଏ ଶ୍ରେଣୀର ପ୍ରଭୁତ୍ୱ ରାଜନୈତିକ ଦଳରେ, ସଂସଦରେ, ଅମଲାତନ୍ତ୍ରରେ, ବିଚାର ବିଭାଗରେ, ଏନ୍.ଜି.ଓ., ଗଣମାଧ୍ୟମରେ ସବୁଠି । ତେଣୁ ରାଷ୍ଟ୍ରତନ୍ତ୍ରକୁ ଅନ୍ତଃରାଷ୍ଟ୍ରୀୟ କର୍ପୋରେଟ୍ ଢାଞ୍ଚାରେ ଅନୁରୂପ କାମ କରେଇବା ଲାଗି ଏମାନେ ବାଧ୍ୟ କରିପାରିବେ । ସେ କହିବ ଓ କହୁଛି ଏକ ଶକ୍ତିଶାଳୀ ରାଷ୍ଟ୍ର ଜରୁରୀ, ବିକାଶ ଦୃଷ୍ଟିରୁ/ ସାମରିକ ଦୃଷ୍ଟିରୁ ଏବଂ ଦକ୍ଷିଣ ଏସିଆର ମହାଶକ୍ତି ରୂପରେ/ ବିଶ୍ୱର ଅନ୍ୟତମ ସୁପର ପାଓ୍ୱାର ଭାବରେ । ଏ ପ୍ରଚାରରେ ଉଚ୍ଚଶିକ୍ଷିତ ମଧ୍ୟବିତ୍ତ ଏପରିକି ନିମ୍ନ ମଧ୍ୟବିତ୍ତ ଓ ଅସଚେତନ ଗରିବ ଶ୍ରେଣୀ ମଧ୍ୟ ଉଲ୍ଲସିତ ଓ ଉଚ୍ଚକିତ ।

ଆମ ଅଭିଜାତଙ୍କ ଆଖିରେ ଚମକୁଥିବା, ଏ ସ୍ୱପ୍ନର ନିର୍ମାଣ ପଛରେ ରହିଛି ବିଶ୍ୱ ପୁଞ୍ଜିପତି ଶ୍ରେଣୀ ଓ ପାଶ୍ଚାତ୍ୟର ବଜାରୀ ଶକ୍ତି । ଇଉରୋପକେନ୍ଦ୍ରୀକ ବିଚାର ଓ ଜୀବନକୁ

ସର୍ବଶ୍ରେଷ୍ଠ ଓ ଅନ୍ତିମ ଲକ୍ଷ୍ୟ ମନେ କରୁଥିବା ଉଚ୍ଚଶିକ୍ଷିତ ଓ ମୁଖ୍ୟତଃ ମଧ୍ୟବିତ୍ତ ଶ୍ରେଣୀର ତଥାକଥିତ ପ୍ରଗତିଶୀଳ ବର୍ଗଙ୍କ ଆଧୁନିକତା, ବିଜ୍ଞାନ ଓ ପ୍ରଯୁକ୍ତି ପ୍ରତି ପ୍ରତିବଦ୍ଧତା ଏବେ ଧର୍ମ ଭଳି ଏକ ବିଶ୍ୱାସ ସ୍ତରରେ ପହଞ୍ଚିଛି । ତାହା ତାଙ୍କ ଭିତରେ ଏକ ଅଜବ ରକମର ଗର୍ବ-ଅହଂକାରକୁ ଜନ୍ମ ଦେଇଛି । ଭାରତର ସମସ୍ତ ପାରମ୍ପରିକ ଜ୍ଞାନ, କୌଶଳ, ଜୀବନ, ସଂସ୍କୃତି, ସାହିତ୍ୟ, ବିଚାର ଓ ଦର୍ଶନକୁ ତୁଚ୍ଛ ମନେ କରିବାର ମେକ୍‌ଓ୍ୱେଲେବାଦୀ ମନୋବୃତ୍ତିର ଶିକାର ଏହି ବର୍ଗ । ଏ ମନୋବୃତ୍ତି ଜନତା ସହ ସମ୍ପର୍କ ଓ ସମ୍ବାଦ ନ ରଖିବାର କୁଣ୍ଠା ରୂପରେ ପ୍ରକାଶ ପାଉଛି । ସେ ସ୍ୱପ୍ନରେ ଆବିଷ୍ଟ ହୋଇ ସେ ଉପର ଶକ୍ତିର ଷଡ଼ଯନ୍ତ୍ରକୁ ନିଜ ସ୍ୱାର୍ଥ ଅନୁରୂପ ମନେ କରୁଛି । ସେଥିପାଇଁ ଭାରତରେ ଦ୍ୱିତୀୟ ସବୁଜ ବିପ୍ଳବର ସ୍ଲୋଗାନ ଆରମ୍ଭ ହେଇଛି । ପାରମ୍ପରିକ କୃଷି, ଖାଦ୍ୟ ନିରାପତ୍ତା, ବିହନ ବ୍ୟବସ୍ଥାକୁ ଖତମ କରି ଜେନେଟିକ୍ ଇଞ୍ଜିନିୟରିଂର ମୋଡ଼େଲ ଲାଗି ଆମ ଦେଶକୁ ପରୀକ୍ଷା ଭୂମି କରିବାକୁ ସେ ପ୍ରସ୍ତୁତ । ନିଜ ସ୍ୱାର୍ଥର ସାକାର ରୂପ ଲାଗି କ୍ରଣ୍ଟାକ୍ଟ ଫାର୍ମିଂ, ଜେଟ୍ରୋପା ଚାଷର କଥାକୁ ସେ ସମର୍ଥନ କରୁଛି । ଅନ୍ଧାଧୂନ ଶିଳ୍ପାୟନ, ରିହାତି ଶିଳ୍ପନୀତି ଓ ତଦ୍‌ଜନିତ ସଂସାଧନ ଲୁଟର ସପକ୍ଷରେ ସେ । ତେଣୁ ସପିଂ ମଲସ୍ ଓ ସେଜ୍ ସପକ୍ଷରେ ତାର ଯୁକ୍ତି । ହୋଟେଲ ଓ ପର୍ଯ୍ୟଟନ ଶିଳ୍ପ ସପକ୍ଷରେ ସେ । ଶିକ୍ଷା ଓ ସ୍ୱାସ୍ଥ୍ୟର ଘରୋଇକରଣ ସପକ୍ଷରେ ସେ । କର୍ପୋରେଟ୍ ସ୍ୱାର୍ଥ ପାଇଁ ଜରୁରୀ ଏକ ନିର୍ଦ୍ଦିଷ୍ଟ ରକମର ଶିକ୍ଷିତ ଶ୍ରେଣୀର ନିର୍ମାଣ ଲାଗି ଛତୁଫୁଟା ଶିକ୍ଷାର ଦୋକାନରେ ଚଢ଼ାଦରରେ ବଜାରୀ ଶିକ୍ଷାର ବିକ୍ରୀ ହେଉଛି । ମେନେଜମେଣ୍ଟ, ସୂଚନା ପ୍ରଯୁକ୍ତି, ଫେସନ ଡିଜାଇନିଂ, ବାୟୋଟେକ୍‌ନୋଲୋଜି ଏମିତି କେତେ କ'ଣ ? ଘରୋଇ ଅନୁଷ୍ଠାନରେ ସଂରକ୍ଷଣର ବିରୋଧରେ ସେ ମେଧା ଓ ମେରିଟ୍‌ର କଥା ଉଠାଏ । 'ଏମସ୍' ଭଳି ଶିକ୍ଷାନୁଷ୍ଠାନରେ ଦଳିତ ଓ ପଛୁଆଙ୍କୁ ଅପମାନିତ କରିବାକୁ ଉଚିତ ମନେକରେ । ଏ ସବୁର ଅର୍ଥ ଚାଷୀ, ଆଦିବାସୀ, ମତ୍ସ୍ୟଜୀବୀ, ଦଳିତ, ଶ୍ରମିକ, ଛୋଟ ବ୍ୟବସାୟୀ ଓ ସହରୀ ଝୁମ୍ପୁଡ଼ି ବସ୍ତିର ଏକ ବଡ଼ ସମୂହଙ୍କ ଜୀବନ ଜୀବିକାର ସ୍ରୋତ ଓ ସାଧନରୁ ବିସ୍ଥାପନ ଓ ଦେଶର ଆର୍ଥିକ ଓ ରାଜନୈତିକ ପ୍ରକ୍ରିୟାରୁ ପ୍ରତାଡ଼ନ । ଅନ୍ୟ ଅର୍ଥରେ ଏମାନେ ଅଭିଜାତଙ୍କ ସ୍ୱପ୍ନର 'ଭାରତ ନିର୍ମାଣ' ରେ ବାଧା । ଗୋଟିଏ ଦିଗରେ ଏତେ ବଡ଼ ସମୂହର ଅସ୍ତିତ୍ୱ ଓ ଅସ୍ମିତାର ପ୍ରଶ୍ନ । ଅନ୍ୟ ଦିଗରେ ଅଭିଜାତଙ୍କ ଇନ୍ଦ୍ରିୟଗୁଡ଼ିକ ଅଚେତ ହେଲାପରି ଭୋଗ । ସେ ଭୋଗ ଆମ ସମାଜକୁ ହିଂସ୍ର କରୁଛି ଓ ପରିବେଶର ସନ୍ତୁଳନକୁ ବିଗାଡ଼ି ଦେଉଛି । ସମାଜର ଏକ ବଡ଼ ଭାଗ ହୀନମନ୍ୟତାର ରୋଗର ପୀଡ଼ିତ ହେଉଛି ।

**ସଂଘର୍ଷ ଚାଲିଛି ଅଥଚ -**

ଏ ହେଲା ଆଜିର ବିକାଶଧାରାର ସଂକଟ ଓ ଭୟଙ୍କର ସୀମିତତା । ଏହାକୁ ଆମ ଆଧୁନିକ ସଭ୍ୟତାର ସଂକଟ ବୋଲି କହିପାରିବା । କହିପାରିବା ମଣିଷପଣିଆର

ସଂକଟ । ଏଠି ବିକାଶର ଲକ୍ଷ୍ୟ ସମୃଦ୍ଧି ନହେଇ ସମ୍ପତ୍ତି, ସମ୍ପଦ, କ୍ଷମତା ଉପରେ ଏକ ନିର୍ଦ୍ଦିଷ୍ଟ ବର୍ଗର ସ୍ଥାୟୀ ଓ ସୁରକ୍ଷିତ କର୍ତ୍ତୃତ୍ୱ । ଆଜି ଆଉ କୁହାଯାଉନି ଯେ ବିକାଶର ଲାଭ ସମାଜର ପ୍ରତି ବ୍ୟକ୍ତିକୁ ପହଞ୍ଚେଇ ହେବ । କୁହାଯାଉଛି ଦୁନିଆଁଯାକର ଲୋକଙ୍କ ଆବଶ୍ୟକତା ପୂରଣ କରିବା ସମ୍ଭବ ନୁହେଁ । ତାମାନେ ସମସ୍ତଙ୍କୁ ମାନବୋଚିତ ଜୀବନ ଉପଲବ୍ଧ କରାଯାଇପାରିବ ନାହିଁ । ତାମାନେ ଦାରିଦ୍ର୍ୟ ଓ ବେକାର ଦୂର ହେବା ସମ୍ଭବ ନୁହେଁ । ସମସ୍ତଙ୍କୁ ଶିକ୍ଷା ଓ ସ୍ୱାସ୍ଥ୍ୟ ସେବା ପହଞ୍ଚେଇ ହେବ ନାହିଁ । ଅସଲ ଅର୍ଥରେ ରାଜନୈତିକ - ଆର୍ଥିକ ପ୍ରକ୍ରିୟାରେ ସମସ୍ତଙ୍କୁ ସାମିଲ କରାଯାଇପାରିବ ନାହିଁ । ବିଶିଷ୍ଟ ବୁଦ୍ଧିଜୀବୀ ରଜନୀ କୋଠାରୀଙ୍କ ଶ୍ଳେଷାତ୍ମକ ଭାଷାରେ-"ଆମକୁ ଏକ ଭୂମଣ୍ଡଳୀୟ ମଧ୍ୟବର୍ଗ ନିର୍ମାଣ କରିବାକୁ ହେବ ଯିଏ ଆଧୁନିକ ସଂଚାର ବ୍ୟବସ୍ଥାକୁ ମାଧ୍ୟମ କରି ଏକ ଅନ୍ତଃରାଷ୍ଟ୍ରୀୟ ବ୍ୟବସ୍ଥା ଓ ଏକ ବିଶ୍ୱ ସଂସ୍କୃତି ଆଦିର ନିର୍ମାଣ ଲାଗି ଆଧାର ପ୍ରଦାନ କରିବ । ଏଇ ନୂଆଁ ଢାଞ୍ଚାରେ ସବୁଲୋକ, ସବୁ ଅଞ୍ଚଳ ଏପରିକି ସବୁ ଦେଶକୁ ସ୍ଥାନ ମିଳିବାର ଗ୍ୟାରେଣ୍ଟି ନାହିଁ ।"

ଏ ପରିସ୍ଥିତିରେ ସଂଘର୍ଷ ଅନିର୍ବାର୍ଯ୍ୟ । ସଂଘର୍ଷ ଚାଲିଛି କିନ୍ତୁ କର୍ପୋରେଟ୍ ସ୍ୱାର୍ଥକୁ ପ୍ରତିନିଧିତ୍ୱ କରୁଥିବା ଶକ୍ତି ଓ ତାର ସମର୍ଥନକାରୀ ସମୂହଗୁଡ଼ିକ ଭିତରେ ବିବାଦ ଥିବା ସତ୍ତ୍ୱେ ଶୋଷଣ ଓ ଭୋଗର ତୀବ୍ର କାମନା ଯୋଗୁଁ ସେମାନଙ୍କ ଭିତରେ ଯେତିକି ରଣନୀତିଗତ ଏକତା ଦେଖିବାକୁ ମିଳୁଛି ଠିକ୍ ତାର ଓଲଟା ବହୁବିଭାଜନ ଦେଖିବାକୁ ମିଳୁଛି କର୍ପୋରେଟ୍ ସ୍ୱାର୍ଥରେ ବଳି ପଡୁଥିବା ସମୂହଗୁଡ଼ିକ ଭିତରେ । ସେମାନଙ୍କୁ ଏକ କରିବାରେ ପୂର୍ବର ପାରମ୍ପରିକ ଶ୍ରେଣୀ ରାଜନୀତି ଏକା ସକ୍ଷମ ବୋଲି କହିବାକୁ ସାହସ ହେଉନାହିଁ । ଦଳିତ ରାଜନୀତି, ଲିଙ୍ଗ ରାଜନୀତି, ପରିବେଶ ରାଜନୀତି, ପ୍ରକଳ୍ପ ବିରୋଧୀ ଆନ୍ଦୋଳନ, ଚାଷୀ ଆନ୍ଦୋଳନ, ସ୍ୱାୟତ୍ତତା ପାଇଁ ପଛୁଆ ଅଞ୍ଚଳର ବିକାଶ ପାଇଁ ଆନ୍ଦୋଳନ ଓ ଅତିବାଦୀ ବାମପନ୍ଥୀ ଆନ୍ଦୋଳନ । ଏମିତି କେତେ ରକମର ଆନ୍ଦୋଳନ ଚାଲିଛି । ଯଦିଓ ସଭିଏଁ 'ଅଭିଜାତ ବର୍ଗୀୟ କର୍ପୋରେଟ୍ ରାଜନୀତି'ର ଶିକାର କିନ୍ତୁ ସମସ୍ତଙ୍କୁ ଗୋଟିଏ ମଞ୍ଚରେ ଆଣିପାରିବାର ରାଜନୀତିର ନିର୍ମାଣ ହେଇପାରିନି । ଏ ପରିପ୍ରେକ୍ଷୀରେ ଲାଟିନ୍ ଆମେରିକାର କିଛି ଦେଶରେ ଆସିଥିବା ପରିବର୍ତ୍ତନ ଓ ଚାଲିଥିବା ଆନ୍ଦୋଳନଗୁଡ଼ିକର ତର୍ଜମା ଜରୁରୀ । ଠିକ୍ ସେମିତି ଆନ୍ଦୋଳନର ରଣନୀତିକୁ ନେଇ ଆଲୋଚନା ଆବଶ୍ୟକ ।

**ଆଲୋଚନା ପାଇଁ ଆହ୍ୱାନ -**

ହିଂସା, ଅହିଂସା, ସିମୀତ ହିଂସା, ଗଣ ହିଂସା ନା ସ୍ମାର୍ଟ ହିଂସା । ହିଂସା ବା ଅହିଂସା ଏକ ଶାଶ୍ୱତ ମୂଲ୍ୟ ଭାବରେ ନା ରଣନୀତି ଭାବରେ ବ୍ୟବହାର କରାଯିବ । ଏ ରକମ ନିଷ୍ପତ୍ତି ଏକ ରାଜନୈତିକ ନିଷ୍ପତ୍ତି ହେବ ନା ନିଛକ ଭାବେ ଦାର୍ଶନିକ । ତାକୁ ଆନ୍ଦୋଳନକାରୀ ସଂଗଠନ ଆନ୍ଦୋଳନର ଆରମ୍ଭରୁ ଠିକ୍ କରିବେ ନା ସମୟ ପରିସ୍ଥିତି

ଦେଖି ଠିକ୍ କରିବ । ସେ ନିଷ୍ପତ୍ତି ଗଣତାନ୍ତ୍ରିକ ହେବ ନା ନେତୃତ୍ୱ ସ୍ତରରେ ହେବ କିମ୍ବା ଦଳ ସଂଗଠନର ଉର୍ଦ୍ଧ୍ୱରେ କୌଣସି ବ୍ୟକ୍ତି କରିବ । ଏସବୁ ତର୍କ ଓ ବିଚାରବେଳେ ଇତିହାସ ଓ ଐତିହାସିକ ସଂଘର୍ଷ ଓ ସଂଘର୍ଷର ଅନୁଭବକୁ ଦେଖିବାକୁ ହେବ । ସେ ସଂଘର୍ଷର ତୁଙ୍ଗ ମଣିଷଙ୍କ ବିଚାରକୁ ଆଲୋଚନାକୁ ଆଣିବା । ପ୍ୟାରିସ୍ କମ୍ୟୁନ୍, ଫ୍ରାନସ ବିପ୍ଳବ, ରୁଷ ବିପ୍ଳବ, ଚୀନବିପ୍ଳବଠୁ ଆରମ୍ଭ କରି କ୍ୟୁବା ଓ ଆଜିର ଜାପାତିସ୍ତା ଆନ୍ଦୋଳନ ତଥା ଆଫ୍ରିକା, ଭାରତ, ନେପାଳ ଓ ଲାଟିନ୍ ଆମେରିକାରେ ଚାଲିଥିବା ଆନ୍ଦୋଳନ । ଠିକ୍ ସେମିତି ଅତୀତରେ ହେଇଥିବା କଳା ଲୋକଙ୍କ ଆନ୍ଦୋଳନ(ଆମେରିକା, ଆଫ୍ରିକା) ଭାରତର ସ୍ୱାଧୀନତା ସଂଗ୍ରାମ ଓ ସେସବୁର ବିଭିନ୍ନ ଧାରା ଓ ଗୋଷ୍ଠୀର ବିଚାର । ସ୍ୱାଭାବିକ ଭାବେ ବୁଦ୍ଧ, ମାର୍କ୍ସ, ଗାନ୍ଧି, ଲେନିନ୍, ମାଓ, ମାଣ୍ଡେଲା, ଆମ୍ବେଦକର, ଚେ ଗୁଏଭରା, ଫିଡ଼େଲ କାଷ୍ଟ୍ରୋ, ସାଭେଜ୍, ମାର୍କୋସ, ପ୍ରଚଣ୍ଡ ଇଭା ମୋରାଲେସ୍ ଏମିତି ଅନେକ ଲୋକଙ୍କ କଥା ଆସିବ । ଅବଶ୍ୟ ମନେ ରଖିବାକୁ ହେବ ଯେ ଆମେ ଏକ 'ଜାତି ରାଷ୍ଟ୍ର' ବ୍ୟବସ୍ଥାରେ ଅଛୁ । ଏ ବ୍ୟବସ୍ଥା ଉପରେ କର୍ତ୍ତୃତ୍ୱ ଥିବା ଶ୍ରେଣୀକୁ ଏକ ଆଜ୍ଞା ପାଳନକାରୀ ନାଗରିକ ସମୂହ ଆବଶ୍ୟକ । ସେ ମୁକ୍ତ ଓ ସର୍ଜନଶୀଳ ମଣିଷକୁ ଭୟ କରେ । ଏପରିକି ନାଗରିକତାର ପରିଭାଷାକୁ ସଂକୁଚିତ କରିବାକୁ ସଚେତନ ଓ ଯୋଜନାବଦ୍ଧ ପ୍ରଚେଷ୍ଟା କରୁଥାଏ । ଅନ୍ୟ ଦିଗରେ ଅଛି ଅପରାଜେୟ ମନେ ହେଉଥିବା ସାମ୍ରାଜ୍ୟବାଦୀ ବିଶ୍ୱ ବ୍ୟବସ୍ଥା ଯିଏ ଏକ ବଡ଼ ଅନୁଗତ ଉପଭୋକ୍ତା ସମୂହ ଚାହେଁ । ସେଥିପାଇଁ ତ ଆର୍ଥିକ ଜଗତୀକରଣ ସହ ସଂସ୍କୃତିର ଜଗତୀକରଣ ଚାଲିଛି । କହିପାର ସାଂସ୍କୃତିକ ସାମ୍ରାଜ୍ୟବାଦ । ସାମରିକ ସମ୍ରାଜ୍ୟବାଦର ବଡ଼ ଉଦାହରଣ ହେଲା ଆଫଗାନିସ୍ଥାନ, ଇରାକ ଆକ୍ରମଣ ଓ ଦୁର୍ଭାଗ୍ୟର କଥା ଯେ ସେତକ ହେଇଛି ବିଶ୍ୱ ଶାନ୍ତି ଓ ଗଣତନ୍ତ୍ର ପ୍ରତିଷ୍ଠା ନାଁରେ । ପରିବର୍ତ୍ତନକାମୀ ଆନ୍ଦୋଳନକାରୀ, ଦଳ, ଗୋଷ୍ଠୀ ସଂଗଠନ, ରାଜନୈତିକ ଦଳ ଓ ବୁଦ୍ଧିଜୀବୀ, ଐତିହାସିକ ଆନ୍ଦୋଳନ ଓ ସଂପ୍ରତି ଚାଲିଥିବା ଆନ୍ଦୋଳନର ଅନୁଭବକୁ ଆଖିରେ ରଖି ରାଜନୀତି, ସଂଗଠନ ଓ ରଣନୀତି ଭଳି ପ୍ରସଙ୍ଗରେ ଆଲୋଚନା ତ ନିଶ୍ଚୟ କରୁଥିବେ ।

ଏ ସମ୍ବନ୍ଧିତ ଆଲୋଚନା, ତର୍କ-ବିତର୍କ ଓ ଅନୁଭବ ଲିଖିତ ରୂପେ ପ୍ରକାଶିତ ହେଲେ ବ୍ୟାପକ ଚର୍ଚ୍ଚାର ଅବସର ସୃଷ୍ଟି ହୁଅନ୍ତା ।



# ଭାରତୀୟ ନାରୀ : ଆଦର୍ଶ ହିନ୍ଦୁ ନାରୀ ବନାମ ନାରୀ

**ଭାରତୀୟ ନାରୀ :**

ଆଖି ବନ୍ଦ କରି ହୃଦୟ ଭିତରେ ଏକ ଭାରତୀୟ ନାରୀର ଚିତ୍ର ଆଙ୍କନ୍ତୁ। ଯେତେ ଚେଷ୍ଟା କଲେବି କଣ ତାର କୌଣସି ନିର୍ଦ୍ଦିଷ୍ଟ ରୂପ ଆଙ୍କି ହେବ ? ଭାରତୀୟ ନାରୀ ବୋଲି ସତରେ କଣ କିଛି ଅଛି ? କାହାକୁ ଆମେ ଭାରତୀୟ ନାରୀ କହିବା ? ସୀତା, ସାବିତ୍ରୀ, ପାର୍ବତୀଙ୍କୁ ଆଦର୍ଶ ମନେ କରୁଥିବା ପରମ୍ପରାବାଦୀ ହିନ୍ଦୁ ନାରୀଙ୍କୁ ନା ଓ୍ୱିମେନ ଲିବର୍ଟି କଥା କହୁଥିବା ଆଧୁନିକ ନାରୀଙ୍କୁ। ତ୍ରିବାର ତଲାକ୍, ଫତଓ୍ୱା ଓ ବୁର୍ଖା ଭିତରେ ବାନ୍ଧି ହୋଇ ରହିଥିବା ନାରୀ ନା ଏ ବ୍ୟବସ୍ଥାରେ ସଂସ୍କାର ପାଇଁ ଦାବି କରୁଥିବା ଆଙ୍ଗୁଠି ଗଣା ମୁସଲିମ ମହିଳାଙ୍କୁ। ଯୌତୁକ, ସତୀ, ସମ୍ମାନ ପାଇଁ ହତ୍ୟା, ବିଧବା ପ୍ରଥା ଓ କନ୍ୟାଭ୍ରୁଣ ହତ୍ୟା ପରି ଅମାନବୀୟ ପ୍ରକ୍ରିୟାର ଶିକାର ହେଉଥିବା ବା ସେଥିରେ ସହଯୋଗୀ ଭୂମିକା ନେଉଥିବା ନାରୀଙ୍କୁ ନା କନ୍ୟାସୁନା ନେଇ ବିବାହରେ ନାରୀର ଇଚ୍ଛାକୁ ସମ୍ମାନ ଦେଉଥିବା, ନାରୀପୁରୁଷ ସମ୍ପର୍କରେ ଅପେକ୍ଷାକୃତ ସମାନତା ଥିବା ଓ ଆର୍ଥିକ ଗତିବିଧିରେ ପୁରୁଷର ସହଯୋଗୀ ସାଜିଥିବା ଆଦିବାସୀ ନାରୀଙ୍କୁ। କାହାକୁ ଆମେ ଭାରତୀୟ ନାରୀ କହିବା ?

ଜାତି ଓ ଶ୍ରେଣୀ ବିଭକ୍ତ ସମାଜର ଉଚ୍ଚଜାତି ଓ ଧନୀକ ବର୍ଗ ମହିଳା ବା ତଥାକଥିତ ନୀଚଜାତି, ଦଳିତ ସମୁଦାୟ ଓ ଆର୍ଥିକ ଦୃଷ୍ଟିରୁ ଗରିବ, ପଛୁଆ ଓ ଅନଗ୍ରସର ମହିଳାଙ୍କୁ, କାହାକୁ ଭାରତୀୟ ନାରୀ କହିବା ? ନିରୁତା ଗୃହିଣୀ, ବିଭିନ୍ନ ପେସା ଓ ଚାକିରୀରେ ଥିବା ମହିଳା ନା ବ୍ୟବସାୟ, କ୍ରୀଡ଼ା ଏବଂ ଅଭିନୟରେ ଥିବା ମହିଳା। ଝାଡୁଦାର, ବିଷ୍ଠା ସଫା ଓ ବହନ ଦାୟିତ୍ୱରେ ଥିବା ମହିଳା ନା ବାରର ନୃତ୍ୟାଙ୍ଗନା, ରେଡ଼ଲାଇଟ ଅଞ୍ଚଳର ଯୌନକର୍ମୀ। ବିବାହିତା ମହିଳା ନା ଏକକ ଭାବେ ବଞ୍ଚୁଥିବା ମହିଳା (Single Women)। ଉତ୍ତର ଭାରତର ମହିଳା କୁଡ଼ିମାର ପ୍ରଥା ଚଳୁଥିବା ପଞ୍ଜାବ, ହରିଆନା ଅଞ୍ଚଳର ମହିଳା ନା ଦକ୍ଷିଣ ଭାରତୀୟ ମହିଳା ନା ପାହାଡ଼ୀ ଅଞ୍ଚଳର ନାରୀ। ଦାଦନ ଖଟି ଯାଉଥିବା ମହିଳା ନା ଚା ବାଗାନର ମହିଳା। ମାଟି, କାଠ, ବାଉଁଶର କଳାତ୍ମକ କାମରେ ପାରଦର୍ଶୀ ଥିବା ଘୁମକ୍କଡ଼ ପରିବାରର ମହିଳା ନା ଜରି ପଲିଥିନ୍ ଗୋଟାଉଥିବା ମହିଳା।

ଆତଙ୍କବାଦୀ ଓ ଦଙ୍ଗାରେ ଶିକାର ଓ ସାମିଲ ମହିଳା ନା ନିଜ ପରିବାରର କୌଣସି ତଥାକଥିତ ହଜିଯାଉଥିବା ସଦସ୍ୟ (ପୁଲିସ ଓ ସୁରକ୍ଷା ବଳର ଗୁଳିରେ ମରିସାରିଥିବା)ର ଅପେକ୍ଷା କରୁଥିବା ମହିଳା। ବିକାଶଜନିତ ବିସ୍ଥାପନରେ ପୀଡିତା ମହିଳା ନା ସଲଓ୍ବା ଜୁଡୁମର ଶିକାର ଓ ତଦ୍‌ଜନିତ ରିଲିଫ କେମ୍ପରେ ସଦାସର୍ବଦା ଆତଙ୍କିତ ରହୁଥିବା ମହିଳା। ସୁରକ୍ଷାବଳରେ କାମ କରୁଥିବା ମହିଳା, ନକ୍ସଲଙ୍କ ସ୍କ୍ୱାଡ଼ରେ ଥିବା ମହିଳା। ଧର୍ଷଣର ଶିକାର ହେଉଥିବା ମହିଳା ନା ପୁଲିସ ଅତ୍ୟାଚାରରେ ଜର୍ଜରିତା ମହିଳା। ଅର୍ଥ ଯଶ ପାଇଁ ନଗ୍ନତାକୁ ଅପେଣେଇ ନେଇଥିବା ମହିଳା ନା ସ୍ପେସିଆଲ୍ ଆର୍ମି ଏକ୍ଟ ଓ ଭାରତୀୟ ଆର୍ମି ଅତ୍ୟାଚାରରେ ଲଙ୍ଗଳା ହୋଇ ପ୍ରତିବାଦ କରୁଥିବା ମହିଳା। ରାଜନୀତି, ବ୍ୟବସାୟ, କଳା, ଅଭିନୟ, କ୍ରୀଡ଼ା, ବିଭିନ୍ନ ପେସା ସହ ଜଡ଼ିତ ଆଙ୍ଗୁଠି ଗଣା ସେଲିବ୍ରିଟି ମହିଳା ନା ସାଧାରଣ ମହିଳା। କ୍ଷେତରେ କାରଖାନାର କର୍ମରତ ମହିଳା ନା ଆତ୍ମନିଯୁକ୍ତି ଜନିତ ବିଡ଼ିବନ୍ଧା, ସିଲେଇ କରୁଥିବା ମହିଳା ନା କେନ୍ଦୁପତ୍ର, ଝାଡ୍ରୁ, ମହୁଲ, ଶାଳ ମଞ୍ଜି, ଲାଖ, ଶିଆଳି ଓ ଶାଳପତ୍ର ସଂଗ୍ରହ କରୁଥିବା ମହିଳା। ବାସନ ମାଜୁଥିବା, ଆୟା ହେଇଥିବା ମହିଳା ନା କ୍ଲବ୍‌ରେ / ଡିସ୍କୋରେ ସଙ୍ଗୀତ ସହ ଥିରକୁ ଥିବା ତଥାକଥିତ ସୋସାଇଟି ମହିଳା। ପ୍ରେମ ଓ ବିବାହ ପାଇଁ ରାଜି ନ ହେଲେ ଧର୍ଷଣ, ଏସିଡ୍ ମାଡ଼ରେ ଚେହେରା ଜଳି ଯାଇଥିବା ଝିଅ କାହାକୁ କହିବା ଭାରତୀୟ ନାରୀ। ଏମାନେ ସଭିଏଁ ଭାରତୀୟ ନାରୀ କିନ୍ତୁ ଏମାନଙ୍କ ଚିତ୍ର ସ୍ୱରୂପ, ଚରିତ୍ର ଓ ସ୍ଥିତି ସମାନ ନୁହେଁ। ଏମାନଙ୍କ ସୁଖ-ଦୁଃଖ ସମାନ ନୁହେଁ। ସମାନ ନୁହେଁ ସେମାନଙ୍କ ସ୍ୱପ୍ନ ଓ ଆକାଂକ୍ଷା। ସମାନ ନୁହେଁ ସେମାନଙ୍କର ଦାବି, ପ୍ରତିବାଦ ସମାନ ନୁହେଁ। ସ୍ୱପ୍ନ ଓ ସ୍ୱପ୍ନ ଭଙ୍ଗର ଯନ୍ତ୍ରଣା ସମାନ ନୁହେଁ। ସେମାନଙ୍କ ପ୍ରତି ପୁରୁଷ, ସାମାଜିକ, ରାଜନୀତି, ବ୍ୟବସ୍ଥା, ରାଷ୍ଟ୍ର ବା ପ୍ରଶାସନର ଦୃଷ୍ଟିଭଙ୍ଗୀ ସମାନ ନୁହେଁ। ଜାତି, ଧର୍ମ, ବର୍ଗ, ବର୍ଣ୍ଣ, ଭୂଗୋଳ, ପେସା, ସଂସ୍କୃତି ଓ ସମୁଦାୟର ଭିତ୍ତିରେ ଥିବା ଭିନ୍ନତା ଓ ବିବିଧତା ପରିପ୍ରେକ୍ଷୀରେ ଭାରତୀୟ ନାରୀକୁ ଦେଖିବାର ଦୃଷ୍ଟିଭଙ୍ଗୀ କଣ ଆମର ଅଛି ? ଲେଖକ, ବୁଦ୍ଧିଜୀବୀ, କଳାକାର, ମାନବାଧିକାର ସଂଗଠନ, ଗଣମାଧ୍ୟମ, ଏପରିକି ମହିଳା ସଂଗଠନ ପାଖରେ ଭାରତୀୟ ନାରୀକୁ ଦେଖିବା / ବୁଝିବା ଲାଗି ଆବଶ୍ୟକ ହେଉଥିବା ଏକ ସାମଗ୍ରିକ ଦୃଷ୍ଟିଭଙ୍ଗୀ ଅଛି କି ?

## ନାରୀ ମଣିଷ - ମଣିଷ ନାରୀ :

ସତ କହିଲେ ଯୁଗଯୁଗର ପୁରୁଷ ପ୍ରାଧାନ୍ୟ ସମାଜ ବ୍ୟବସ୍ଥାର ଅନବରତା ଯୋଗୁଁ ଆମ ଭିତରେ ଏମିତି ଏକ 'ପୁରୁଷ ଦୃଷ୍ଟି' ତିଆରି ହୋଇଛି ଯାର ଶିକାର କେବଳ ପୁରୁଷ ନୁହେଁ, ନାରୀ ବି। ତା ସହ ଯୋଡ଼ି ହୋଇଛି ଜାତି, ଧର୍ମ, ବର୍ଣ୍ଣ, ବର୍ଗ, ପେସା, ସମୁଦାୟ, ଗୋତ୍ର, ବଂଶ ଓ ଭୂଗୋଳଜନିତ ପୂର୍ବାଗ୍ରହ। ଭାରତୀୟ ନାରୀକୁ ତାର

ସମଗ୍ରତାରେ, ବିବିଧତାରେ ଦେଖିବା ଲାଗି ଆବଶ୍ୟକ ବ୍ୟାପକ ଦୃଷ୍ଟି ଓ ବୁଝିବା ଲାଗି ଯେତେ ବଡ଼ କଲିଜା ଦରକାର, ସେ କଲିଜା ନା ପୁରୁଷର ଅଛି ନା ବ୍ୟବସ୍ଥାର ଅବା ଦେଶର। ଏପରିକି ଖୋଦ୍ ନାରୀର ବି ନାହିଁ। ଅନ୍ଧଜନେ ହାତୀ ଦେଖିବା ବୁଝିବା ଭଳି ଆମେ ବି ନାରୀକୁ ଦେଖୁଛୁ, ବୁଝୁଛୁ। ଏ ବିବିଧତାକୁ/ ବିଭିନ୍ନତାକୁ ବୁଝିବା ପ୍ରକ୍ରିୟାଟି ନିଶ୍ଚିତ ରୂପେ ଜଟିଳ ଓ ଆହ୍ୱାନମୟ କର୍ମ। କିନ୍ତୁ ଏ ଆହ୍ୱାନକୁ ଗ୍ରହଣ କରିବାର ସବୁଠୁ ସହଜ ଅଥଚ ଦୁଃସାହସିକ କାମଟି ହେଲା ଉଭୟ ନାରୀ ଓ ପୁରୁଷକୁ ରକ୍ତ, ଚର୍ମ, ହୃଦୟ ଓ ମସ୍ତିଷ୍କ (ଚେତନା ଓ ବିବେକ) ଥିବା ମଣିଷ ରୂପେ ଦେଖିବା। ଆମେ ନାରୀକୁ ସତରେ କଣ ମଣିଷ ବୋଲି ବିଚାର କରୁ? ଖୋଦ୍ ନାରୀ ନିଜକୁ କେତେଦୂର ମଣିଷ ବୋଲି ଭାବେ। (ଆମେ ପୁରୁଷ ମାନେ ବି ନିଜକୁ ଯେଉଁ ମାତ୍ରାରେ ପୁରୁଷ ବୋଲି ମନେ କରୁ ସେଇ ସମାନ ଭାଗମାପରେ କଣ ମଣିଷ ବୋଲି ଚିନ୍ତା କରୁ?) ଜାତି, ଧର୍ମ, ବର୍ଣ୍ଣ, ବର୍ଗ ଓ ଦେଶ ନିର୍ବିଶେଷରେ ଲିଙ୍ଗଗତ ବିଭେଦ ଅଳ୍ପେ ବହୁତେ ସବୁଠି ରହିଛି। ତେଣୁ ନାରୀ ନିଜେ ନାରୀର ବୈଶିଷ୍ଟ୍ୟକୁ ତାର ଶକ୍ତି ସାମର୍ଥ୍ୟକୁ ବି ଦେଖିପାରୁନାହିଁ। ନାରୀକୁ ଦେଖିବାର 'ନାରୀ ଦୃଷ୍ଟି' ପ୍ରଥମେ ଏବଂ ପରେ ନାରୀକୁ ମଣିଷ ରୂପେ ଦେଖିବାର 'ମଣିଷ ଦୃଷ୍ଟି' କଥା ଆସିବ। ନାରୀଟିଏ ନିଜେ ନିଜକୁ ଓ ଅନ୍ୟ ନାରୀଙ୍କୁ ଯେଉଁ ଆଖିରେ ବା ଯେଉଁ ମୂଲ୍ୟବୋଧରେ ନିର୍ମିତ ଚଷମା ପିନ୍ଧି ଦେଖେ ସେ ଯେ ପୁରୁଷ ତିଆରି ସେ କଥା ବହୁନାରୀ ଏ ଯାଏଁ ହୃଦୟଙ୍ଗମ କରିପାରି ନାହାନ୍ତି। ଏ ଦିଗରେ କେତୋଟି ଉଦାହରଣ ଯଥେଷ୍ଟ ହେବ। କନ୍ୟାଭ୍ରୁଣ ହତ୍ୟା, ଯୌତୁକ ପ୍ରଥା, ବିଧବା ପ୍ରଥା, ତଲାକ୍ ଓ ବୁର୍ଖା ଆଦି ପରମ୍ପରାକୁ ବଞ୍ଚେଇ ରଖିବାରେ ନାରୀର ସକ୍ରିୟ ଭୂମିକା। ଗୁଜରାଟ ଓ କନ୍ଧମାଳ ଦଙ୍ଗା ପରିପ୍ରେକ୍ଷୀରେ ମୁସଲିମ ଓ ଖ୍ରୀଷ୍ଟ ଧର୍ମର ନାରୀଙ୍କୁ ଧର୍ଷଣ ଓ ନିର୍ଯ୍ୟାତନାରେ ପୁରୁଷଙ୍କୁ ହିନ୍ଦୁନାରୀଙ୍କ ସକ୍ରିୟ ସହଯୋଗ ଥିଲା। ନାରୀ ହେଇ ନାରୀର ପୀଡ଼ା ଓ ଯନ୍ତ୍ରଣା ଏଥିପାଇଁ ନାରୀକୁ ଦେଖା ଗଲାନାହିଁ କାରଣ ନିର୍ଯ୍ୟାତନା ଓ ଧର୍ଷଣଜନିତ ପୀଡ଼ାକୁ ସେ ଜାତି ଓ ଧର୍ମନିରପେକ୍ଷ ହେଇ ଦେଖିବାର ଦୃଷ୍ଟି ଆହରଣ କରିପାରିନାହିଁ। କନ୍ଧମାଳ ନନ୍ ଗଣଧର୍ଷଣ ଓ ନଗ୍ନ ଗଣପ୍ୟାରେଡ଼ ପରିପ୍ରେକ୍ଷୀରେ ଓଡ଼ିଶାର ନାରୀ ଓ ମହଲା ସଂଗଠନଙ୍କ ନୀରବତା (କାଁ-ଭାଁ ପ୍ରତିବାଦ ସତ୍ତ୍ୱେ) ରୁ ଏହା ପ୍ରମାଣିତ। ଅଞ୍ଜନା ମିଶ୍ରଙ୍କ ଘଟଣାରେ ଓଡ଼ିଶାର ନାରୀମାନେ କିଛିଟା ପ୍ରତିବାଦ କରିଥିଲେ କିନ୍ତୁ ଏଠି ନୀରବ ରହିବାର କାରଣ ହେଲା ନନ୍‌କୁ ସେ ନାରୀ ଭାବରେ ନୁହେଁ ଜଣେ ଖ୍ରୀଷ୍ଟିଆନ ଭାବେ ଦେଖୁଛି। ଠିକ୍ ସେମିତି ଜାତି ପରିପ୍ରେକ୍ଷୀରେ ଯେଉଁଠି ତଳ ଜାତିର ନାରୀକୁ ନିର୍ଯ୍ୟାତନା ଦିଆଯାଉଛି ସେଠି ଉଚ୍ଚ ଜାତିର ମହିଳା ମାନେ ନିଜର ଜାତିଗତ ସଂକୀର୍ଣ୍ଣତା କାରଣରୁ ନୀରବ ରହୁଥିବାର ଦେଖିବାକୁ ମିଳେ।

ନାରୀଟିଏ ପୁରୁଷ ନିର୍ମିତ ଦୃଷ୍ଟିରେ ଥିବା ଦୃଷ୍ଟିକୋଣକୁ ବୁଝିଲା ପରେ ଯାଇ ପ୍ରଥମେ ନିଜକୁ ଜଣେ ନାରୀ ଓ ପରେ ଲିଙ୍ଗ ନିର୍ବିଶେଷରେ ନାରୀ ମଣିଷ ବା ମଣିଷ-ନାରୀ ମଣିଷ ରୂପେ ଦେଖିବାର ସାମର୍ଥ୍ୟ ହାସଲ କରିପାରିବ । ଆମର ପୌରୁଷ / ପୁରୁଷତ୍ୱ ହେଉକି ନାରୀତ୍ୱ ଜାତି/ଧର୍ମ/ବର୍ଗ ନିର୍ବିଶେଷରେ ନିଜକୁ ମଣିଷ ରୂପେ ଦେଖିବାର ବା ତାର ଊର୍ଦ୍ଧ୍ୱକୁ ଯାଇ ମାନବିକତାର ଏକ ପରିଭାଷା ତିଆରିରେ ଏଯାଏଁ ସଫଳ ହୋଇନାହିଁ । ଏ କଟୁ ସତ୍ୟକୁ ସ୍ୱୀକାର କରିବାକୁ ପଡ଼ିବ । ଏ କଟୁ ସତ୍ୟ ବା ସୀମିତ / ପାକ୍ଷିକ / ଆଂଶିକ ଦୃଷ୍ଟିର ପଛରେ କାରଣ ଅନେକ । ସେ ଆଲୋଚନା ଛାଡ଼ି ଆଉ ଏକ ପ୍ରଶ୍ନ ଉଠେଇବା । 'ନିରୁତା ମଣିଷ' ବୋଲି ସତରେ କଣ କିଛି ଅଛି ? ନିରୁତା ନାରୀ ବୋଲି କଣ କିଛି ଅଛି ? ନିରୁତା ମଣିଷ / ନାରୀ / ପୁରୁଷ ବୋଲି କିଛି ନାହିଁ । ନିରୁତା, ସୁଦ୍ଧୁ ମଣିଷ ବା ନାରୀ / ପୁରୁଷ ବେଶି ହେଲେ ଏକ ଆଦର୍ଶବାଦୀ ପରିକଳ୍ପନା ମାତ୍ର । ଏ ପରିକଳ୍ପନା ଆମକୁ ଏକ ରୋମାଣ୍ଟିକ ଦୃଷ୍ଟି ଦିଏ । ଆମେ କହି ପକଉ ମୋ ଦୃଷ୍ଟିରେ ସମସ୍ତେ ସମାନ । ମୁଁ ଜାତି, ଧର୍ମ ମାନେନା । ଧନୀ, ଗରିବ ମାନେନା । ମୁଁ ସମସ୍ତଙ୍କ କଥା କହିବି, କହୁଛି । ଏଭଳି ବକ୍ତବ୍ୟ ପଛରେ ସଦ୍ଭାବ ମନ ଥାଉ କି ନିଜ ସଂବଂଧରେ ଥିବା ମିଛ ଧାରଣା ହେଉ କି ଅଜ୍ଞାନତା ହେଉ ଏ ହେଲା ସତ୍ୟକୁ ଏଡ଼ାଇ ଯିବାର ସଚେତନ ଅସଚେତନ କଳା । ଆମେ କେତେଜଣ ଚାହୁଁ କି ନ ଚାହୁଁ ଜାତି, ଧର୍ମ, ଲିଙ୍ଗ, ବର୍ଗ ଓ ବର୍ଣ୍ଣ ଭିତିରେ ବିଷମତା ଓ ବିଭେଦ ରହିଛି । ତାକୁ ସ୍ୱୀକାର କରି ହିଁ ଏକ ସମତାମୂଳକ ସୁନ୍ଦର ସମାଜର ପରିକଳ୍ପନା ପରିପ୍ରେକ୍ଷୀରେ ସ୍ଥିତାବସ୍ଥାର ବିରୋଧ ଓ ଅସ୍ୱୀକାର ତଥା ଏକ ବିକଳ୍ପ ନିର୍ମାଣ ଓ ପ୍ରତିଷ୍ଠାର ଆହ୍ୱାନକୁ ଗ୍ରହଣ କରିବାକୁ ହେବ । ବ୍ୟକ୍ତିଗତ ଭାବେ ବିଷମତା ଓ ବିଭେଦର ଏ ସ୍ଥିତାବସ୍ଥାକୁ ହୁଏତ ଜଣେ ନ ମାନୁ ଥାଇପାରେ କିନ୍ତୁ ସମାଜରେ ଏହା ଅଛି ଓ ତାର ପରିବର୍ତ୍ତନ ପାଇଁ ଉଭୟ ବ୍ୟକ୍ତି ଓ ସାମୂହିକ ସ୍ତରରେ ଉଦ୍ୟମ ଲୋଡ଼ା । ପରିବର୍ତ୍ତନର ଏ ପ୍ରକ୍ରିୟାରେ ସହଭାଗିତା ସେତେବେଳେ ସମ୍ଭବ ଯେବେ ଆମେ ସ୍ଥିତାବସ୍ଥାକୁ ନେଇ ଅସନ୍ତୁଷ୍ଟ ଥିବା ଓ ସେଥିରେ ପରିବର୍ତ୍ତନ ବିନା ଉଭୟ ବ୍ୟକ୍ତି ଓ ସମୂହ ସ୍ତରର ଜୀବନ ସୁନ୍ଦର ହେବ ନାହିଁ ବୋଲି ମନେ କରୁଥିବେ ।

## ଆଦର୍ଶ ନାରୀ ବନାମ ହିନ୍ଦୁ ନାରୀର ଆଦର୍ଶ :

ନାରୀ ଏକ ସାମାଜିକ - ସାଂସ୍କୃତିକ ନିର୍ମାଣ । ସେ ନିର୍ମାଣରେ ଆମ ଧର୍ମ, ଶାସ୍ତ୍ର, ପୁରାଣ, ସଂହିତା ଓ ମିଥ୍‌ମାନଙ୍କୁ ଏକ ବଡ଼ ଭୂମିକା ରହିଛି । ସବୁ ଧର୍ମରେ ଆଦର୍ଶ (ପବିତ୍ର / ପାକ)-ନାରୀର ଏକ ପରିକଳ୍ପନା ରହିଛି । ହିନ୍ଦୁ ଧର୍ମ, ଧର୍ମଶାସ୍ତ୍ର, ପୁରାଣ ଓ ଅଧିକାଂଶ ହିନ୍ଦୁ ମାନସରେ ରହିଥିବା ଆଦର୍ଶ ନାରୀର ସ୍ୱରୂପ ସଂପର୍କରେ ସ୍ୱଳ୍ପ ଚର୍ଚ୍ଚା ପ୍ରଥମେ ।

ଭାରତୀୟ ସମାଜରେ ସୁ ଓ କୁ ସ୍ତ୍ରୀ / ନାରୀକୁ ନେଇ ବହୁ ପୂର୍ବରୁ ଜୀବନ୍ତଚର୍ଚ୍ଚା ମାନ ହୋଇଆସିଛି । ନାରୀର ସମର୍ଥନ ଓ ବିରୋଧରେ ମଜବୁତ ତର୍କ ଦେଇ ଆସୁଥିବା ଗୋଷ୍ଠୀ ରହିଆସିଛନ୍ତି । ସବୁ ରକମର ପତନ ସହ ନାରୀକୁ ଯୋଡ଼ିଛନ୍ତି ଅନେକେ । ଏପରିକି ଖୁବ୍ ସରଳ, ଭଦ୍ର, ନ୍ୟାୟ ଓ ନିରପେକ୍ଷତାର ପ୍ରତୀକ ମନେକରାଯାଉଥିବା ଯୁଧିଷ୍ଠିର ଓ ଭୀଷ୍ମ ମଧ୍ୟ ନାରୀକୁ ପୃଥିବୀର ସବୁଠୁ ମନ୍ଦ ପ୍ରାଣୀ ଓ ଯାବତୀୟ ମନ୍ଦର ମୂଳ ବୋଲି ମନେ କରନ୍ତି । ଭୀଷ୍ମ ନାରୀର ଚରିତ୍ର ବର୍ଣ୍ଣିବାକୁ ଯାଇ ନାରଦ ଓ ପଂଚକୁଦ ଭିତରେ ହେଉଥିବା କଥୋପକଥନର ଅବତାରଣା କରିନ୍ତି । ପଂଚକୁଦ ନାରଦକୁ କୁହନ୍ତି - "ଭଗବାନ ନାରୀକୁ ସମସ୍ତ ମନ୍ଦଗୁଣ ସହ ସୃଷ୍ଟି କରିଛନ୍ତି ଏବଂ ସେ ଅତି ଭୟଙ୍କର ଭାବେ ପାପୀ । ଏତେ ବିପଦଜନକ ଯେ ମୃତ୍ୟୁ, ସର୍ପ, ନର୍କ ମିଳିତ ଭାବେ ଗୋଟିଏ ପଟେ ହେଲେ ନାରୀ ଗୋଟିଏ ପଟେ । ସେମାନେ ମିଥ୍ୟାର ମୂର୍ତ୍ତି, ଶାସ୍ତ୍ରଜ୍ଞାନ ବିରହିତ ନିୟନ୍ତ୍ରଣହୀନ ଇନ୍ଦ୍ରିୟର ପ୍ରତୀକ । ସବୁବେଳେ ଗହଣା, ବସ୍ତ୍ର, ଖାଦ୍ୟ ଓ ପାନୀୟକୁ ନେଇ ସେମାନେ ମତ୍ତ।"

ରାମାୟଣରେ ଅଗସ୍ତ୍ୟଙ୍କ ମତରେ ନାରୀ ସ୍ୱାମୀର ପ୍ରାଚୁର୍ଯ୍ୟରେ ସାଙ୍ଗରେ ଥାଏ, ଦୁର୍ଦ୍ଦିନରେ ଛାଡ଼ି ପଳାଏ । ସେମାନେ ବିଜୁଳି ପରି ଅସ୍ଥିର, ପବନ ଭଳି ଚଞ୍ଚଳ, ଅସ୍ତ୍ର ପରି ଶାଣିତ ଓ ଭୟଙ୍କର । ମାରିଚ ପ୍ରକରଣ ପରିପ୍ରେକ୍ଷୀରେ ସୀତାଙ୍କ ଆଚରଣକୁ ଉଦାହରଣ ମନେ କରି କୁହାଯାଇଛି ନାରୀ ନିଷ୍ଠୁର ଏବଂ ତାର ସ୍ୱାଭାବିକ ଚରିତ୍ର ଏମିତି ଯେ ତାହା ଲୋକଙ୍କୁ ବିଚ୍ଛିନ୍ନ କରାଏ" ।

ମହାଭାରତରେ କୁହାଯାଉଛି - ନାରୀର ଦୋଷ ଦୁର୍ବଳତାକୁ ଗଣିବା, ବଖାଣିବା ଲାଗି ପୁରୁଷର ଶତଜିହ୍ୱା ଓ ଶତ ବର୍ଷର ଜୀବନ ବି କମ୍ ପଡ଼ିବ । ମନୁ ନାରୀର ଏ ପତନ ପାଇଁ ଛଅଟି କାରଣ ଦିଅନ୍ତି । ସୁରାପାନର ଅଭ୍ୟାସ, ମନ୍ଦ ଲୋକଙ୍କ ସହ ବନ୍ଧୁତା, ସ୍ୱାମୀଠୁ ବିଚ୍ଛେଦ, ବିଦେଶ ଗମନ, ଦିବା ଶୟନ, ଅନ୍ୟ ଗୃହେ ବାସ । ମିଥ୍ୟାବାଦିନୀ, ଚିନ୍ତାହୀନ ଗତିବିଧି, ଧୂର୍ତ୍ତ, ମାତ୍ରାଧିକ ଲୋଭ, ଅପବିତ୍ରତା ଏବଂ ନିଷ୍ଠୁରତା ଆଦି ନାରୀର ଦୋଷ । ପଂଚକୁଦଙ୍କ ମତରେ ନାରୀ ସବୁବେଳେ ପର ପୁରୁଷରେ ମନ ଦିଏ, ଭଲ ସଙ୍ଗୀତ, ନୃତ୍ୟ କରୁଥିବା ସୌମ୍ୟ ପୁରୁଷ ପ୍ରତି ଆକର୍ଷିତ ହୋଇଥାଏ । ଅବିଶ୍ୱସ୍ତତା ତାର ସ୍ୱାଭାବିକ ଲକ୍ଷଣ । ସେ ଅସୁନ୍ଦରୀ ହେଉ କି ନୀଚ ନାରୀ ମାତ୍ରେ ହିଁ ସତର୍କତା ଲୋଡ଼ା । ସେ ପୁଣି କୁହନ୍ତି ନାରୀ ସବୁଦିନ ଏମିତି ନଥିଲା । ଦିନ ଥିଲା ତାର ଉଚ୍ଚାଙ୍ଗ ଗତିବିଧି ଓ କର୍ମ ପାଇଁ ଦେବତ୍ୱ ଲଭିଥିଲା ଯାହା ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରତି ଏକ ଚ୍ୟାଲେଞ୍ଜ ସୃଷ୍ଟି କରିଥିଲା । ଏଇଥିପାଇଁ ବ୍ରହ୍ମା ବିଚଳିତ ହୋଇ ନାରୀ ଦେହରେ ଯାବତୀୟ ମନ୍ଦ ପୁରେଇଲେ । ସ୍ୱର୍ଗକୁ କେବଳ ଦେବତାଙ୍କ ପାଇଁ ସୁରକ୍ଷିତ କରି ରଖିଲେ । ତା'ର ଫଳଶ୍ରୁତି ହେଲା ନାରୀ 'ମନ୍ଦ' ସହିତ ଜନ୍ମ ନେଲା

ଏବଂ ପୁରୁଷଙ୍କୁ ପଥଚ୍ୟୁତ କଲା। ଋକ୍ ବେଦରେ କୁହାଯାଇଛି ନାରୀ ସ୍ୱାଭାବିକ ଭାବେ ଅସ୍ଥିରଚିତ୍ତା, ଅନିୟନ୍ତ୍ରିତା, ନର୍କର ଦ୍ୱାର ଓ ପୁରୁଷକୁ ବିପଥଗାମୀ କରାଉଥିବା ଏକ ପ୍ରାଣୀ।

ମୋଟାମୋଟି କଥାଟି ହେଲା ନାରୀ ସ୍ୱଭାବତଃ ଗୋଟିଏ ମନ୍ଦ ପ୍ରାଣୀ କିମ୍ବା ଦେବତ୍ୱ ତଥା ସୃଷ୍ଟିକର୍ତ୍ତାଙ୍କୁ ଏକ ଚ୍ୟାଲେଞ୍ଜ। କାରଣ ନାରୀ ନିଜେ ଅନ୍ୟତମ ସୃଷ୍ଟିକର୍ତ୍ତ୍ରୀ। ଗୋଟିଏ ମନ୍ଦ ପ୍ରାଣୀ ବା ଅସ୍ଥିର, ଅନିୟନ୍ତ୍ରିତା, ପୁରୁଷକୁ ବିପଥଗାମୀ କରେଇବାର କ୍ଷମତା ରଖିଥିବା ନାରୀକୁ ନିୟନ୍ତ୍ରିତ, ଶୃଙ୍ଖଳିତ କରିବା ଜରୁରୀ। ଅନ୍ୟ ଦିଗରେ ନାରୀ ବିନା ସୃଷ୍ଟି ସମ୍ଭବ ନୁହେଁ। ସୃଷ୍ଟିରେ ନାରୀ ଅପରିହାର୍ଯ୍ୟ ତେଣୁ ସେ ରହିବ ମାତ୍ର ତାକୁ ସୃଷ୍ଟିର ଶ୍ରେୟ ନଦେଇ ନିୟନ୍ତ୍ରିତ ଓ ଶୃଙ୍ଖଳିତ କରି ରଖିବାକୁ ହେବ। ନିୟନ୍ତ୍ରିତ ଓ ଶୃଙ୍ଖଳିତ କରି ରଖିବାରେ ତିନିଟା ରାସ୍ତା। (୧) ହୀନମନ୍ୟତା ନିର୍ମାଣ କରି ତାର ଅସଲ ଶକ୍ତି, ସାମର୍ଥ୍ୟ, ସୃଷ୍ଟିଶୀଳତା ପ୍ରତି ତା ଭିତରେ ଥିବା ବିଶ୍ୱାସକୁ ନଷ୍ଟ କରିବା (୨) ବିଶ୍ୱାସ ନଷ୍ଟ ପରେ ତାକୁ ଆଦର୍ଶ ନାଁରେ ଏକ ଛାଞ୍ଚରେ ପକେଇବା। (୩) ଛାଞ୍ଚଟି ପ୍ରତି ତା ଭିତରେ ଗ୍ରହଣୀୟତା ପାଇଁ ବୌଦ୍ଧିକ ଷଡ଼ଯନ୍ତ୍ର କରିବା ଓ ଆବଶ୍ୟକ ସ୍ଥଳେ ସେ ଆଦର୍ଶକୁ ମନେଇବା ପାଇଁ ଯାବତୀୟ ଛଳବଳର ଆଶ୍ରୟ ନେବା। ସେ ଛଳ ବଳର ଗୋଟିଏ ପକ୍ଷ ହେଲା ଆଦର୍ଶ ନାରୀର ନିର୍ମାଣ। ସେ ଆଦର୍ଶ ପଛରେ ଧର୍ମର ସ୍ୱୀକୃତି, ଶାସ୍ତ୍ରର ସ୍ୱୀକୃତି। ସେ ସ୍ୱୀକୃତି ନିର୍ମାଣରେ ଖୋଦ୍ ନାରୀ ଚରିତ୍ରର ଚତୁର ବ୍ୟବହାର।

ଏକଦା ପାର୍ବତୀଙ୍କୁ ସ୍ୱାମୀ ଶିବ ପଚାରିଲେ ଆଦର୍ଶନାରୀ କାହାକୁ କହିବା ଏବଂ ଏକ ବିଶ୍ୱସ୍ତ ସ୍ତ୍ରୀର ଦାୟିତ୍ୱ କଣ କୁହ ? ପାର୍ବତୀଙ୍କ ମୁହଁରେ 'ସ୍ତ୍ରୀ ଧର୍ମ'ର ବ୍ୟାଖ୍ୟା ସର୍ବସ୍ୱୀକୃତ ହେବ ଏ ହେଲା ଶଙ୍କରଙ୍କ ଉଦ୍ଦେଶ୍ୟ। ପାର୍ବତୀଙ୍କ ମତରେ ସ୍ତ୍ରୀ ପାଇଁ ସ୍ୱାମୀ ହେଲା ଅସଲ ଦେବତା ଏବଂ ସ୍ୱାମୀ ସେବାରେ ହିଁ ସ୍ୱର୍ଗ ପ୍ରାପ୍ତି ସମ୍ଭବ। ସ୍ୱାମୀ ଯେତେ ଖରାପ ହେଉନା କାହିଁକି ସ୍ତ୍ରୀ ତାକୁ ମାନିବ। ଏପରିକି ସ୍ୱାମୀ ନାଁ ସହ ସମାନ ବୃକ୍ଷକୁ ବି ଆଖି ଉଠେଇ ଦେଖିବ ନାହିଁ। ଶାଶୁ ଶଶୁରଙ୍କ ସେବା କରିବ। ଜଣେ ଉତ୍ତମ ସ୍ତ୍ରୀ, ଘର ସଫେଇ କରିବ, ରନ୍ଧନ ଦେଖିବ, ପରିବାରର ସମସ୍ତ ସଦସ୍ୟ, ଅତିଥି ଓ ସେବକଙ୍କୁ ଖୁଏଇବ। ଘର ଚଳେଇବ, ପରିବାରର ମଙ୍ଗଳ ଚିନ୍ତା କରିବ ଓ ସମସ୍ତଙ୍କର ଯତ୍ନ ନେବ। ବ୍ରାହ୍ମଣ ସେବା କରିବ ଓ ତା ପ୍ରତି ସଦା ସଦୟ ରହିବ। ଶାନ୍ତ, ସନ୍ତୁଷ୍ଟ, ତୃପ୍ତ, ଉତ୍ତମ ବ୍ୟବହାର, ଦେଖିବାକୁ ସୁନ୍ଦର, ଆକର୍ଷକ, ମିଷ୍ଟଭାଷୀ, ସଦା ହସହସ, ଅଭ୍ୟାସରେ ଶୃଙ୍ଖଳିତ ଏବଂ ସ୍ୱାମୀ ପ୍ରତି ବିଶ୍ୱସ୍ତ ରହିବା ହେଲା ଆଦର୍ଶ ସ୍ତ୍ରୀତ୍ୱ। ତା ସହ ସ୍ୱାମୀର ମଙ୍ଗଳ ପାଇଁ ବ୍ରତ ଉପବାସ କରିବ। ଯୁଧିଷ୍ଠିର ବି ଏକଦା ମାର୍କେଣ୍ଡୟଙ୍କୁ ଏକ ବିଶ୍ୱସ୍ତ ପତ୍ନୀର ଦାୟିତ୍ୱ ସଂପର୍କରେ ନିଜ ମତ ରଖିବାକୁ କହିଥିଲେ। ମାର୍କେଣ୍ଡୟ କହିଲେ "ନିରନ୍ତର ସ୍ୱାମୀ ସେବା ସହ ସ୍ୱାମୀ ପ୍ରତି ସଂପୂର୍ଣ୍ଣ ସମର୍ପିତ ରହିଲେ ନାରୀ ମୃତ୍ୟୁ ପରେ ସ୍ୱର୍ଗ ପ୍ରାପ୍ତି କରିପାରିବ।

ଏକ କାହାଣୀର ଅବତାରଣା କରି କହିଲେ - "କୌଶିକ ନାମକ ଏକ ବ୍ରାହ୍ମଣ ଭିକ୍ଷା ପାଇଁ ଯାଇଥାନ୍ତି। ଗୃହସ୍ୱାମୀ ବି ଠିକ୍ ସେଇ ସମୟରେ ଆସି ପହଞ୍ଚିଛନ୍ତି। ସ୍ତ୍ରୀ ପ୍ରଥମେ ସ୍ୱାମୀଙ୍କୁ ପାଣି ଦେଲେ, ଆସନ ଦେଲେ, ସୁସ୍ୱାଦୁ ଖାଦ୍ୟ ପାନୀୟ ପରଷିଲେ, ସ୍ୱାମୀଙ୍କୁ ସଂପୂର୍ଣ୍ଣ ତୁଷ୍ଟ କଲାପରେ ବ୍ରାହ୍ମଣଙ୍କ ପାଖକୁ ଯାଇ ବିଳମ୍ବ କାରଣରୁ କ୍ଷମା ଯାଚନା କରି ତା ସେବାରେ ଲାଗିଲେ। ସ୍ୱାମୀ ହେଲେ ସର୍ବାଗ୍ରେ। ସ୍ୱାମୀ ସେବା ପ୍ରଥମେ।"

ମୃତ୍ୟୁ ଶଯ୍ୟାରେ ଭୀଷ୍ମ, ଯୁଧିଷ୍ଠିରଙ୍କୁ 'ଆଦର୍ଶ ନାରୀ' ସଂପର୍କରେ କହିବାକୁ ଯାଇ ଲକ୍ଷ୍ମୀ ଓ ରୁକ୍‌ମଣୀଙ୍କ ଭିତରେ ତୁଳନା କରି ଲକ୍ଷ୍ମୀଙ୍କୁ ଉଚ୍ଚ ସ୍ଥାନ ଦେଇଛନ୍ତି। ଠିକ୍ ସେମିତି ସାଣ୍ଡିଲିଙ୍କ ଦେବତ୍ୱ ଓ ସ୍ୱର୍ଗପ୍ରାପ୍ତିର କାରଣ ଜାଣିବାକୁ ଚାହିଁଥିଲେ ସୁମନା। ସାଣ୍ଡିଲିଙ୍କ ଉତ୍ତର ଥିଲା - "ସ୍ୱାମୀଙ୍କ ପ୍ରତି ଚରମ ଆନୁଗତ୍ୟ, ସଂପୂର୍ଣ୍ଣ ସମର୍ପଣ ଓ ବିଶ୍ୱସ୍ତତା ଲାଗି ଏ ପ୍ରାପ୍ତି। ଏପରିକି ମୁଁ ଏଭଳି କିଛି ଖାଏ ପିଏ ନାହିଁ, ପିନ୍ଧେ ନାହିଁ ଯାହା ମୋର ସ୍ୱାମୀଙ୍କୁ ନାପସନ୍ଦ ଥିବ। ସ୍ୱାମୀ ନଥିବା ବେଳେ ପ୍ରସାଧନ ବ୍ୟବହାର କରେ ନାହିଁ। ଦାଣ୍ଡରେ ଛିଡ଼ା ହୁଏ ନାହିଁ କି ଆଉ କାହା ସହିତ କଥାବାର୍ତ୍ତା ହୁଏନି। ଘରେ ଥିବା ବେଳେ ମୋର ସାରା ଧ୍ୟାନ ସ୍ୱାମୀ କେନ୍ଦ୍ରିକ। ବ୍ରାହ୍ମଣ ଓ ଶାଶୁ ଶଶୁର ସେବା ତଥା ଦାମ୍ପତ୍ୟ ଓ ପାରିବାରିକ ଜୀବନର ସବୁ ଦାୟିତ୍ୱ ନିଷ୍ଠାର ସହ ନିର୍ବାହ କରି ମୁଁ ଏସବୁ ପାଇଛି।"

ଯୁଧିଷ୍ଠିର କୁହନ୍ତି - "ସ୍ତ୍ରୀ ବିନା ଘର, ଘର ନୁହଁ ଜଙ୍ଗଲ। ସେ ତା ସ୍ୱାମୀକୁ ଧର୍ମ ଅର୍ଥ କାମ ପାଳନରେ ସାହାଯ୍ୟ କରେ। ସେଇ ଲୋକ ଭାଗ୍ୟବାନ ଯା'ର ସ୍ତ୍ରୀ ଅନ୍ୟ କୌଣସି ପୁରୁଷକୁ ଜାଣେନା ଏବଂ ତାର ପ୍ରତିଟି ମୂହୁର୍ତ୍ତ ସ୍ୱାମୀର ଭଲ ପାଇଁ ଓ ତାକୁ ଭଲ ଲାଗୁଥିବା କାମରେ ବିତୁଥାଏ।" ପାର୍ବତୀ, ମାର୍କେଣ୍ଡୟ ଏବଂ ଭୀଷ୍ମଙ୍କ ମତରେ ବିବାହ ବା ସ୍ୱାମୀ ସହ ସଂପର୍କ ହେଲା ନାରୀ ଜୀବନର ସବୁକିଛି। ସେଥିପାଇଁ ଭୀଷ୍ମ ସୁବ୍ରୁ ଓ ଗାଲ୍‌ଭିଙ୍କ କାହାଣୀର ଅବତାରଣା କରିଛନ୍ତି। ଘୋର ତପସ୍ୟା ଯୋଗୁଁ ସୁବ୍ରୁ ବୃଦ୍ଧା ଏବଂ ଦୁର୍ବଳ ହୋଇଯାଇଥିଲେ ଏବଂ ତପସ୍ୟାରେ ଜୀବନ ତ୍ୟାଗ ପାଇଁ ନିଷ୍ପତ୍ତି ନେଇଥିଲେ। ତପ ବଳରେ ସ୍ୱର୍ଗପ୍ରାପ୍ତିକୁ ନେଇ ସେ ନିଶ୍ଚିତ ଥିଲେ। କିନ୍ତୁ ନାରଦ ତାଙ୍କୁ କହିଲେ ଅବିବାହିତ ନାରୀ ସ୍ୱର୍ଗକୁ ଯାଇପାରିବନି। ଏ କଥା ଶୁଣି ସୁବ୍ରୁ ନିଜ ତପସ୍ୟାର ଅଧାଫଳ ବିନିମୟରେ ବିବାହ କରିବାକୁ ଚାହିଁଲେ। ଗାଲ୍‌ଭି ତାଙ୍କୁ ଗୋଟିଏ ରାତି ପାଇଁ ବିବାହ କରି ତାଙ୍କ ସ୍ୱର୍ଗଯାତ୍ରା ନିଶ୍ଚିତ କରିଥିଲେ।

### ଆଦର୍ଶ ହିନ୍ଦୁ ନାରୀର ଅର୍ଥ ଆଦର୍ଶ ହିନ୍ଦୁ ସ୍ତ୍ରୀ :

ଏ ସବୁ କାହାଣୀରେ ଏକ ବିବାହିତ ନାରୀର ମହିମା, ସତୀତ୍ୱ (ଦୈହିକ ଶୁଦ୍ଧତା) ପତିବ୍ରତା, ପବିତ୍ରତା ଆଦି କଥାର ଗୁରୁତ୍ୱ ପ୍ରତିଭାତ। ସ୍ୱାମୀ ଭକ୍ତି, ବୟୋଜ୍ୟେଷ୍ଠଙ୍କ ପ୍ରତି ସମ୍ମାନ, ଘର ପରିବାରର ଯତ୍ନ ଓ ଦେଖାଶୁଣାରେ ସମୟଯାପନ, ଧାର୍ମିକ କର୍ମ ପାଳନ

(ଅଗ୍ନିହୋତ୍ର, ବ୍ରତ)ରେ ବ୍ରତୀ ତଥା ସ୍ୱାମୀର ଧର୍ମ/ ଅର୍ଥ/କାମର ପାଳନରେ ସହଯୋଗୀ ସାଜୁଥିବା ନାରୀ ହିଁ ଜଣେ ଆଦର୍ଶ ବା ସୁନାରୀ। ତା ଅର୍ଥ ଏକ ଆଦର୍ଶ ନାରୀ ବା ସ୍ତ୍ରୀର ଜୀବନ ସରଳ ନୁହେଁ କି ସହଜ ନୁହେଁ। ଏତେ ଦାୟିତ୍ୱ ଗୋଟିଏ ପଟେ, ଅନ୍ୟ ପଟେ ଦାୟିତ୍ୱ ନିର୍ବାହ କରି ଖୁସି ରହିବା, ହସ ହସ ରହିବା ଏବଂ ନିଜ ସୌନ୍ଦର୍ଯ୍ୟ ତଥା ପରିଚ୍ଛନ୍ନତାକୁ ବଜାୟ ରଖିବାର ସର୍ତ୍ତ। ଏତେ ସବୁ ଦାୟିତ୍ୱ ଓ ସର୍ତ୍ତକୁ ଅକ୍ଷରେ ଅକ୍ଷରେ ପାଳନ କଲେ ଯାଇ ଜଣେ ଆସନ୍ତା ଜନ୍ମରେ ସୁଖ ପାଇପାରିବ ଓ ସ୍ୱର୍ଗରେ ସ୍ଥାନ ପାଇପାରିବ। ଆଦର୍ଶ ହିନ୍ଦୁ ନାରୀର ଅର୍ଥ ଏଠି ଜଣେ ଆଦର୍ଶ ସ୍ତ୍ରୀ। ଆଦର୍ଶ ନାରୀତ୍ୱ, ନାରୀପକ୍ଷର ଅର୍ଥ ଏଠି ଆଦର୍ଶ ସ୍ତ୍ରୀତ୍ୱ ଯାର ପାଳନର ଅର୍ଥ ଘର ପରିବାର ସଂସାର, ସ୍ୱାମୀ ସେବା ଓ ଧାର୍ମିକ କର୍ମକାଣ୍ଡ ପ୍ରତି ନିଷ୍ଠାରେ ଘାଣ୍ଟି ହେଉଥିବା, ବ୍ୟତିବ୍ୟସ୍ତ ରହୁଥିବା ନାରୀ ଦେହ ବା ଲିଙ୍ଗଧାରୀ ଏକ ମଣିଷ। ଏଠି ନାରୀ ଏକ ସ୍ୱତନ୍ତ୍ର ମଣିଷ ନୁହେଁ। ଏକ ସ୍ୱତନ୍ତ୍ର ସ୍ୱାଧୀନ ମଣିଷ ଅସ୍ତିତ୍ୱର ମାନ୍ୟତା ଯେଉଠି ନାହିଁ ସେଠି ଭଲ ମଣିଷ ହେବା, ସାମାଜିକ ମଣିଷ ହେବା, ରାଜନୈତିକ ମଣିଷ ହେବା, ବା ସାମାଜିକ ରାଜନୈତିକ ଚେତନା ଥାଇ ସେ ଜନିତ ଗତିବିଧିରେ ସାମିଲ ରହି ଆଦର୍ଶ ସ୍ତ୍ରୀ/ନାରୀ ହେବା କେତେ କଷ୍ଟସାଧ ସତରେ। କଳା, ସାହିତ୍ୟ ଓ ସାମାଜିକ ରାଜନୈତିକ ଗତିବିଧିରେ ରୁଚି ରଖୁଥିବା ମାତା/ ଜାୟା / ଭଗ୍ନି / ଝିଅ ଭାବରେ ଜଣେ ସାମ୍ନା କରୁଥିବା ସମସ୍ୟା କଥା ଚିନ୍ତା କଲେ ଆଜିର ଜାତିରାଷ୍ଟ୍ର ବ୍ୟବସ୍ଥାରେ ନାରୀଟିଏ ଚେତନାଯୁକ୍ତ ନାଗରିକ ହେବା କେତେ ଚ୍ୟାଲେଂଜିଙ୍ଗ ବୁଝାପଡ଼େ। ଆମ ସମାଜରରେ ଆଦର୍ଶ ନାରୀର ନିର୍ମାଣ ତାର ସ୍ୱତନ୍ତ୍ର ରୁଚିକୁ ଖୁସିର ସହ ପରିସର ଦେବାକୁ କୁଣ୍ଠିତ। ସେ ପରିସର ଲାଗି ନାରୀକୁ ସଂଘର୍ଷ କରିବାକୁ ପଡ଼େ। ସଂଘର୍ଷ ଏଇଥିପାଇଁ କରିବାକୁ ପଡ଼େ ଯେ ଏ ଆଦର୍ଶ ନିର୍ମାଣ ପଛରେ ରହିଥିବା ଧାର୍ମିକ ମାନ୍ୟତା ପ୍ରତି ଆମ ଭିତରୁ ଅଧିକାଂଶଙ୍କ ଆସ୍ଥା ଏଯାଏଁ ଅକ୍ଷୁଣ୍ଣ ରହିଛି । ନାରୀର ଏ ନିର୍ମାଣକୁ ଅଧିକାଂଶ ପୁରୁଷ ଏପରିକି ନାରୀମାନେ ଆଜିବି ଉଚିତ ମଣନ୍ତି। ତାର ବଡ଼ ପ୍ରମାଣ ହେଲା ସନ୍ତାନ ଗଢ଼ିବାର ପ୍ରକ୍ରିୟା ବା କଳାରେ ପୁଅଝିଅ ଭିତରେ ଆରମ୍ଭରୁ କରାଯାଉଥିବା ଭେଦ। ବାପ ମା ମିଳିତ ଭାବେ ଛୁଆଟି ବେଳୁ ଆଦର୍ଶ ପୁରୁଷ ଓ ନାରୀ ନିର୍ମାଣରେ ଲାଗିପଡ଼ନ୍ତି। ନାରୀ-ପୁରୁଷ କର୍ମରେ ବିଭାଜନର ମାନସିକତା ତିଆରନ୍ତି। ଏପରିକି ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଉଥିବା ଅନେକ ନାରୀ, ଅନେକ କବି ଲେଖିକା ଘର ଓ ଛୁଆପିଲାଙ୍କ ସମସ୍ତ ଦାୟିତ୍ୱ ନିର୍ବାହ ଅତି ନିଷ୍ଠାର ପାଳନ କରି ସାରି ତା ପରେ ଯାଇ ନିଜ ରୁଚିର କାମ କରୁଥିଲେ ଏବଂ ସେଭଳି ଏକ ନିଷ୍ଠାପର ନାରୀକୁ ଆଦର୍ଶ ନାରୀର ମାନ୍ୟତା ଦେଉଥିଲେ। ସେ ରମାଦେବୀ, କସ୍ତୁରବା ହୁଅନ୍ତୁ କି ଲେଖିକା କମଳା ଦାସ ହୁଅନ୍ତୁ। କମଳା ଦାସ ଘରର ସବୁକାମ ସାରିବା ପରେ ବିଳମ୍ବିତ ରାତ୍ରିରେ ଲେଖା ଆରମ୍ଭ କରୁଥିଲେ।

ସକାଳୁ କ୍ଷୀର ବାଲା ଆସି ଡ଼ାକୁଥିଲେ ସେ କଲମ ଛାଡ଼ି ଟେବୁଲ୍‌ରୁ ଉଠୁଥିଲେ । ଓଡ଼ିଶା ତଥା ଭାରତରୁ ଅନେକ ଲେଖିକା ତାଙ୍କ ଲିଖନ କର୍ମକୁ ପରିବାରର ଲୋକ କେମିତି ଏକ ଅଯଥା କାମ ମନେ କରନ୍ତି ସେ କଥା ଅନେକ ସାକ୍ଷାତକାରରୁ ଆମେ ସଭିଏଁ ପଢ଼ିଛେ । ଆଉ କିଛି ପରିବାରରେ କଳାତ୍ମକ କାମରେ ଯଦି ଅର୍ଥ ଉପାର୍ଜନ ହେଉଥାଏ ତେବେ କିଛିଟା ପ୍ରୋତ୍ସାହନ ମିଳେ । ନଚେତ ତା ହୁଏ ବାଜେ କାମ । ଏଇ କାରଣରୁ କମଳା ଦାସ ଭଳି ଲେଖିକାଙ୍କୁ କବିତା ଲେଖିବା ବନ୍ଦ କରି ଗଳ୍ପ ଓ ଉପନ୍ୟାସରେ ଧ୍ୟାନ କେନ୍ଦ୍ରିତ କରିବାକୁ ପଡ଼ିଥିଲା । ପାରିବାରିକ ଦାୟିତ୍ୱ ଦୃଷ୍ଟିରୁ ଯେବେ ବି ଚାକିରି ବା ରୁଚିଗତ ଗତିବିଧି ଛାଡ଼ିବା କଥା ଉଠିଛି, ସେଠି ନାରୀକୁ ହିଁ ପ୍ରଥମେ ତ୍ୟାଗ ଓ ବଳିଦାନ ଦେବାକୁ ପଡ଼ିଛି । ଏପରିକି ତାକୁ ତ୍ୟାଗ ବୋଲି ମନେ କରାଯାଇ ନାହିଁ । ବରଂ ଧରି ନିଆଯାଏ ସ୍ୱାଭାବିକ । ଯେଉଁ ନାରୀ ଅମଙ୍ଗ ହୁଏ, ପରିବାର ପ୍ରତି ତାର ନିଷ୍ଠା, ଭଲ ପାଇବା ଏପରିକି ତାର ସନ୍ତାନ ପ୍ରୀତି ଉପରେ ପ୍ରଶ୍ନ ଚିହ୍ନ ଲାଗିଯାଏ । ଏଭଳି ପରିବେଶ ତିଆରି ହୁଏ, ଯେଉଁଠି ଅନେକ ଲେଖିକା, କବି ସର୍ଜନାତ୍ମକ କାର୍ଯ୍ୟ କରୁଥିବା ବେଳେ ବି ଗୋଟିଏ ରକମର ଅପରାଧବୋଧର ପୀଡ଼ା ଅନୁଭବ କରୁଥାନ୍ତି । ଲେଖୁଥିବା, ଗାଉଥିବା, ନାଚୁଥିବା ଓ ଆଙ୍କୁଥିବା ବେଳେ ତାଙ୍କୁ ଲାଗୁଥାଏ ସତେ ଯେମିତି ସେମାନେ ପରିବାର ଓ ନିଜର ସନ୍ତାନ ସନ୍ତତିଙ୍କୁ ସେମାନଙ୍କ ପ୍ରାପ୍ୟରୁ ବଞ୍ଚିତ କରୁଛନ୍ତି । ଅବହେଳା କରୁଛନ୍ତି । ଏଭଳି ଅପରାଧବୋଧର କଥା ଅନେକ ଲେଖିକାଙ୍କ ଆତ୍ମଜୀବନୀରୁ ଦେଖିବାକୁ ମିଳେ । ଅନ୍ୟ ଦିଗରେ ଆଜି ବି ଅନେକ ପୁରୁଷ, ନାରୀର ଉପାର୍ଜିତ ଅର୍ଥରେ ପରିବାର ପୋଷଣକୁ ନିଜ ପାଇଁ ଅପମାନର ପ୍ରଶ୍ନ ମନେକରନ୍ତି । ଆମ ସମାଜ ସେ ପୁରୁଷକୁ ଘୃଣାର ସହ ଦେଖେ । ଘର, ପରିବାର, ସଂସାର ଓ ସନ୍ତାନର ଯତ୍ନ, ନାରୀ ପୁରୁଷର ମିଳିତ ଦାୟିତ୍ୱ । ଇଏ ହେଲା ଅସଲ କଥା । ସନ୍ତାନ ଜନ୍ମ ଓ ସ୍ତନ୍ୟପାନକୁ ଛାଡ଼ିଦେଲେ ଏମିତି କର୍ମ ନାହିଁ ଯାହା ନାରୀ ଓ ପୁରୁଷ ଉଭୟେ କରି ପାରିବେ ନାହିଁ । ଏ କଥା ଆଜିର ଦିନରେ ପ୍ରମାଣିତ ହେବାକୁ ଆଉ ବାକି ନାହିଁ । କିଛି ଆଫ୍ରିକୀୟ କବି ଓ କବୟିତ୍ରୀଙ୍କ କବିତା ପଢ଼ିଥିଲି, ଯା'ର ମର୍ମ ଥିଲା ଘର ସଂସାର, ଚାଷ ଓ ଜଙ୍ଗଲର କାମର ଭାଗ ବଣ୍ଟାକୁ ନେଇ ଆମର ବିବାଦ ନାଇଁ । ମିଳିମିଶି ଏସବୁ କରିବା ସହ ନିଜ ଜମି, ଜଙ୍ଗଲ, ନଦୀ ଓ ଦେଶ ପାଇଁ ଲଢ଼େଇ କରୁଛୁ । ଆଉ ଦଳେ ମହିଳା ଅଛନ୍ତି, ଯେଉଁମାନଙ୍କର 'ନାରୀବାଦ' ତାଙ୍କୁ ଘର ଦାୟିତ୍ୱରୁ ବିମୁଖ କରିଛି ଅଥଚ ସେମାନଙ୍କ ସାମାଜିକ-ରାଜନୈତିକ ଗତିବିଧି ଜନିତ ସ୍ୱାଧୀନତା ନିର୍ଭର କରେ ଆୟା / ବାଈମାନଙ୍କ ଉପରେ ଯେଉଁମାନଙ୍କୁ ନେଇ ଏମାନେ ସଂପୂର୍ଣ୍ଣ ଉଦାସୀନ । ଆଦର୍ଶ ହିନ୍ଦୁ ନାରୀ ବା ସ୍ତ୍ରୀର ପରିକଳ୍ପନା ବା ନିର୍ମାଣ ଓ ତାକୁ ଯଥାର୍ଥତା ଦେଉଥିବା ତତ୍ତ୍ୱଟି ହେଲା ପୁରୁଷବାଦ । ପୁରୁଷବାଦୀ ପୁରୁଷ ଓ ନାରୀଙ୍କ ମିଳିତ ପ୍ରୟାସରେ

ଏହା ଆଜିବି ସମାଜର ମୁଖ୍ୟ ଧାରା ହୋଇରହିଛି। କେବଳ ହିନ୍ଦୁ ଧର୍ମରେ ନୁହେଁ ସବୁ ଧର୍ମରେ ନାରୀର ଏ ଅବସ୍ଥା ଦେଖିବାକୁ ମିଳେ।

## ଆଦର୍ଶ ନାରୀ ବନାମ ଆଦର୍ଶ ସ୍ତ୍ରୀତ୍ୱ :

ତଥାକଥିତ ଆଦଶ କଣ ପ୍ରଥମରୁ ଥିଲା ନା ଏଭଳି ଆଦର୍ଶକୁ ଭାରତୀୟ ନାରୀ ସହଜରେ ମାନି ନେଇଥିଲା ? ଏହାରି ପଛରେ ଏକ ଲମ୍ବା ଐତିହାସିକ ଯୋଜନାବଦ୍ଧ ପ୍ରକ୍ରିୟା ରହିଛି। ଏ ଆଦର୍ଶକୁ ସ୍ଥାପିତ କରିବା ଲାଗି ସାମାଜିକ ରାଜନୈତିକ ବ୍ୟବସ୍ଥାରେ ବ୍ୟାପକ ପରିବର୍ତ୍ତନ ଆଣିବାକୁ ପଡ଼ିଛି ଏ ପୁରୁଷବାଦୀମାନଙ୍କୁ। ଉପରବର୍ଣ୍ଣିତ ସ୍ଥିତିର ବିପରୀତରେ ଏଭଳି କିଛି ନାରୀ ଚରିତ୍ର ଭାରତୀୟ ସାହିତ୍ୟ, ଶାସ୍ତ୍ର, ପୁରାଣ, ସଂହିତାରେ ମିଳନ୍ତି ସେ ଭିତରୁ କିଛିଙ୍କୁ ଅର୍ଦ୍ଧଐତିହାସିକ କୁହାଯାଇପାରେ। ବେଦବତୀ, ସୁଲଭା ଭଳି ଚରିତ୍ର ଅବିବାହିତ ହେଲେ ବି ନିଜ ବିଦ୍ୟା ବୁଦ୍ଧି ବଳରେ ସମାଜରେ ନାଁ କରିଥିଲେ। ଜଣେ ବିଷ୍ଣୁଙ୍କ ବିନା ଆଉ କାହାକୁ ବିବାହ ନ ହେବାର ନିଷ୍ପତ୍ତି ନେଇଥିବା ବେଳେ ଆଉ ଜଣେ ନିଜ ଯୋଗ୍ୟତା ଅନୁରୂପ ସ୍ୱାମୀର ଅଭାବରେ ରହିଥିଲେ ଅବିବାହିତ। ହୁଏତ ଏଭଳି ଏକ ପରମ୍ପରା ଥିଲା ଯେତେବେଳେ ଶିକ୍ଷିତା ନାରୀ ଥିଲେ, ବୌଦ୍ଧିକ ଉଚ୍ଚତାକୁ ଛୁଉଁଥିଲେ ମଧ୍ୟ। ପାଣିନୀଙ୍କ ଛାତ୍ରାଧାୟ ସାଳମରୁ ଜଣାପଡ଼େ ନାରୀ ଶିକ୍ଷା ପ୍ରଚଳିତ ଥିଲା, ତାଙ୍କ ପାଇଁ ଛାତ୍ରୀନିବାସ ବି ରହିଥିଲା। ବ୍ରହ୍ମବାଦିନୀ ମାନେ ଥିଲେ ଯେଉଁମାନେ ଦର୍ଶନ ଓ ଧର୍ମଶାସ୍ତ୍ର ଅଧ୍ୟୟନରେ ଜୀବନ ବିତେଇ ଦେଉଥିଲେ। ସଦ୍ୟୋବଧୂମାନେ ଥିଲେ ଯେଉଁମାନେ ବିବାହ ହେବା ଯାଏଁ ପଢୁଥିଲେ। 'ଅପିସାଲା' ଥିଲେ ବ୍ୟାକରଣବିଦ୍ ଏବଂ ଯେଉଁ ବ୍ରାହ୍ମଣ ମହିଳା ସେ ଜ୍ଞାନ ହାସଲ କରୁଥିଲେ ତାଙ୍କୁ କୁହାଯାଉଥିଲା ଅପିସାଲ ବ୍ରାହ୍ମଣୀ। ଠିକ୍ ସେମିତି ଯେଉଁ ବ୍ରାହ୍ମଣୀ ମହିଳାମାନେ କାଷାକ୍ରୃଷାଙ୍କ ମୀମାଂସା ପଢୁଥିଲେ ତାଙ୍କୁ କାଷାକ୍ରାଷ୍ଟା ବ୍ରାହ୍ମଣୀ କୁହାଯାଉଥିଲା। ସେମାନଙ୍କ ଭିତରୁ ଅନେକେ ଅଧ୍ୟାପନାକୁ ବୃତ୍ତି ରୂପେ ଗ୍ରହଣ କରୁଥିଲେ। ପତଞ୍ଜଳି, ଶିକ୍ଷୟତ୍ରୀ ଓ ଶିକ୍ଷକଙ୍କ ସ୍ତ୍ରୀଙ୍କୁ ଯଥାକ୍ରମେ ଆଚାର୍ଯ୍ୟା, ଆଚାର୍ଯ୍ୟାୟିନୀ, ଉପାଧ୍ୟାୟା ଓ ଉପଧାୟିନୀ ଆଦି ଉପାଧିରେ ଭୂଷିତ କରୁଥିଲେ। ଜ୍ଞାନୀ ମହିଳାଙ୍କ ଭିତରୁ ଜଣେ ହେଲେ ଅତ୍ରେୟୀ ଯିଏ ବାଲ୍ମିକୀ ଓ ଅଗସ୍ତ୍ୟଙ୍କ ସହ ବେଦାନ୍ତ ଅଧ୍ୟୟନ କରିଥିଲେ। ସୁଲଭା ବେଦଜ୍ଞ ଥିଲେ। ଜନକ ଓ ଶିବଙ୍କ ସହ ଆଲୋଚନାରେ ଭାଗ ନେଉଥିଲେ। ଗାର୍ଗିଥିଲେ ଜନକଙ୍କ ଦରବାରରେ ଏବଂ ନିଜ ଅନନ୍ୟ ପ୍ରତିଭା ଓ ଜ୍ଞାନର ପରାକାଷ୍ଠାରେ ଯାଜ୍ଞବଲକ୍ୟ ଭଳି ଜ୍ଞାନୀକୁ ନିଜ ତର୍କରେ ଏତେ ବ୍ୟତିବ୍ୟସ୍ତ କରିଦେଇଥିଲେ ଯାଜ୍ଞବଲକ୍ୟ ମୁର୍ଦ୍ଧନାପାତର ଧମକ ଦେବାକୁ ପଛେଇ ନଥିଲେ। ଘୋଷ, ଲୋପାମୁଦ୍ରା ଅପାଲା ଆଦି ନାରୀ ବେଦର ଅନେକ ମନ୍ତ୍ର ରଚନା କରିଥିଲେ। ଗାର୍ଗି, ସୁଲଭା, ଭକାନ୍ନଭୀ ଏତ୍ରେପି, ଭାଦବା, ପ୍ରତିଥେଇ ଆଦି ବେଶ ଜଣାଶୁଣା ନାରୀ ଋଷି ବି

ଥିଲେ ଯେଉଁମାନଙ୍କ ନାମ ବିଶ୍ୱାମିତ୍ର ଓ ବଶିଷ୍ଠଙ୍କ ସହ ନିଆଯାଇପାରେ। ଅବଶ୍ୟ ଏମାନେ ସମ୍ଭିଏଁ ଥିଲେ ଉଚ୍ଚ ବର୍ଣ୍ଣର। ବ୍ୟାକରଣ, ଦର୍ଶନ ଓ ଧର୍ମଶାସ୍ତ୍ରର ଅଧ୍ୟୟନର ଏକାଧିକାର ଥିଲା ବ୍ରାହ୍ମଣ ସ୍ତ୍ରୀ / ନାରୀର। ଦ୍ରୌପଦୀ, ତାରା, ମନ୍ଦୋଦରୀ ଭଳି ପୌରାଣିକ ଚରିତ୍ର ମାନେ ତାଙ୍କ ଜ୍ଞାନର ପରାକାଷ୍ଠା ଦେଖେଇଛନ୍ତି। ମହାଭାରତରେ ଶକୁନ୍ତଳା ଜଣେ ସାହସୀ ଓ ଶିକ୍ଷିତ ମହିଳାର ସ୍ଥାନ ପାଇଛନ୍ତି। ଏମାନେ ଥିଲେ ତାଙ୍କ ସମୟର ସମାଜ ପାଇଁବି ବ୍ୟତିକ୍ରମ। ଅଧିକାଂଶ ମହିଳାଙ୍କ କ୍ଷେତ୍ରରେ ଏ ଅବସର ଜୁଟି ନଥିଲା। ଅଧ୍ୟାପନା ତପସ୍ୟା ଆଦି କ୍ଷେତ୍ରରେ ଏଇ ଅଳ୍ପସଂଖ୍ୟକ ନାରୀମାନଙ୍କ ଏ କିଂଚିତ ଭୂମିକା ବି ସମୟକ୍ରମେ ନଷ୍ଟ ହେଇଗଲା। ଜ୍ଞାନ, ତର୍କ, ଅଧ୍ୟୟନ ଓ ବୌଦ୍ଧିକତା ସହ ନାରୀର ସଂପର୍କକୁ ଊଣା କରି ଏକ 'ଆଦର୍ଶ ସ୍ତ୍ରୀ' ରୂପେ ପ୍ରତିଷ୍ଠାକୁ ଗୁରୁତ୍ୱ ଦିଆଗଲା। ବେଦରୁ ବଞ୍ଚିତ କରାଗଲା ନାରୀକୁ। ପତିବ୍ରତା, ସ୍ୱାମୀ ପ୍ରତି ବିଶ୍ୱସ୍ତତା ଓ ସଂପୂର୍ଣ୍ଣ ଆନୁଗତ୍ୟ, ଅନୁରକ୍ତି ଏବଂ ନିଜର ସୁରକ୍ଷା ପାଇଁ ପୁରୁଷର ସାନ୍ନିଧ୍ୟକୁ ଅପରିହାର୍ଯ୍ୟ ମାନିବା ହେଲା ନାରୀ ପାଇଁ ଗର୍ବ, ଗୌରବ ଓ ମହିମା। ସମୟକ୍ରମେ ବିଦ୍ୟା, ବୁଦ୍ଧି ଦୃଷ୍ଟିରୁ ନାରୀର ମହତ୍ତ୍ୱ କମିଯାଇଥିବାର ପ୍ରମାଣ ଆମେ ରାମାୟଣ ଓ ମହାବୀର ଚରିତ (Composed in CAD 8) ର ସୀତା ଏବଂ ମହାଭାରତ ଓ କାଳିଦାସଙ୍କ ରଚିତ 'ଅଭିଜ୍ଞାନମ୍ ଶକୁନ୍ତଳମ୍'ର ଶକୁନ୍ତଳା ଚରିତ୍ରର ତୁଳନାତ୍ମକ ଅଧ୍ୟୟନରୁ ପାଇପାରିବା। 'ମହାବୀର ଚରିତ'ର ସୀତା ଜଣେ ଦୁର୍ବଳା ଓ ନାକକାନ୍ଦୁରୀ ନାରୀ ଯିଏ ରାମଙ୍କ ଯୁଦ୍ଧ ଭୂଇଁ ଯିବାଟାକୁ ବିରୋଧ କରୁଥିଲେ। ଏପରିକି ଧନୁ ଉପରେ ଝୁଲି ପଡ଼ି ତାଙ୍କୁ ଯୁଦ୍ଧ ଭୂଇଁକୁ ଯିବାକୁ ଦେଉନଥିଲେ। ଅଭିଜ୍ଞାନ ଶକୁନ୍ତଳନମ୍‌ରେ ଶକୁନ୍ତଳା କେବଳ ଏକ ଦୁର୍ବଳ ନାରୀ ଚରିତ୍ର, ଯିଏ ଦୁଷ୍ମନ୍ତଙ୍କ ଉପେକ୍ଷା ପରେ କ୍ଷୋଭର ସହ ଦୁଷ୍ମନ୍ତଙ୍କ ଦରବାର ଛାଡ଼ି ଚାଲିଯାଇଥିଲେ। ପ୍ରତ୍ୟାଖ୍ୟାତ ଏକ ନିରୀହ ପ୍ରେମିକା ଛଡ଼ା ତାଙ୍କ ବ୍ୟକ୍ତିତ୍ୱରେ ଆଉ କୌଣସି ବୈଶିଷ୍ଟ୍ୟ ନାହିଁ। ମହାଭାରତର ଶକୁନ୍ତଳା ଏକ ବୁଦ୍ଧିମତୀ ଚରିତ୍ର ହୋଇଥିଲା ବେଳେ ଏଠି ସେ ଏକ ପ୍ରତାରିତା ପ୍ରେମିକା କେବଳ। ସୀତାଙ୍କ ନୀରବ ବିଦ୍ରୋହର ଯେଉଁ ପରାକାଷ୍ଠା ଟିକକ ରାମାୟଣରେ ଥିଲା ତାହା 'ମହାବୀର ଚରିତ୍ର'ରେ ସଂପୂର୍ଣ୍ଣ ଅନୁପସ୍ଥିତ। ନାରୀର ଚରିତ୍ର ଚିତ୍ରଣ ପରିପ୍ରେକ୍ଷୀରେ ଏ ଯେଉଁ ପରିବର୍ତ୍ତନ ଘଟିଲା ତାହା ଆହୁରି ସ୍ପଷ୍ଟ ହୁଏ ଅର୍ଥଶାସ୍ତ୍ର ଓ ମନୁସ୍ମୃତିରେ। ଯେଉଁଠି ନାରୀର ସ୍ୱାଧୀନତାକୁ ସମୟକ୍ରମେ ପୂର୍ଣ୍ଣଚ୍ଛେଦ ଦେଇ ତାକୁ ପୁରୁଷ ଉପରେ ସଂପୂର୍ଣ୍ଣ ନିର୍ଭରଶୀଳା କରିବା ପାଇଁ ଯାବତୀୟ କସରତ କରାଯାଇଛି। ମହାଭାରତ ବେଳର ନାରୀ ସ୍ୱାଧୀନତା ଖୁବ୍ ମାତ୍ରାରେ ସଂକୁଚିତ ହୋଇ ଆସିଛି ଅର୍ଥଶାସ୍ତ୍ରରେ। ନାରୀ ତାର ଅନେକ ସାମାଜିକ ଆର୍ଥିକ ଅଧିକାର ହରାଇ ବସିଛି। ପୂର୍ବରୁ ହାସଲ ଅଧିକାର ଗୁଡ଼ିକରୁ ତାକୁ ବଞ୍ଚିତ କରିବାର ପ୍ରକ୍ରିୟା ଆରମ୍ଭ ହୋଇଯାଇଛି ଏବଂ ତାହା ଚରମ ବିନ୍ଦୁରେ ପହଞ୍ଚିଛି ମନୁସ୍ମୃତିରେ। ଏ ପ୍ରକ୍ରିୟାର ଚର୍ଚ୍ଚା ଆମେ ଟିକିଏ ପରେ କରିବା।

ସତୀ ପଞ୍ଚକନ୍ୟା :

ଅହଲ୍ୟା, ଦ୍ରୌପଦୀ, ତାରା, କୁନ୍ତୀ, ମନ୍ଦୋଦରୀ ଏହି ପାଞ୍ଚ ଜଣ ହେଲେ ପଞ୍ଚକନ୍ୟା ବା ପଞ୍ଚସତୀ ଭାବରେ ପ୍ରାତଃ ସ୍ମରଣୀୟା । ମାତ୍ର ଏମାନେ ଆଦର୍ଶ ନାରୀ ରୂପେ ସେତେଟା ପ୍ରତିଷ୍ଠା ପାଇନାହାନ୍ତି ଯେତେଟା ସୀତା ସାବିତ୍ରୀ ଓ ପାର୍ବତୀ । ଦମୟନ୍ତୀ, ଶକୁନ୍ତଳା ଓ ମୈତ୍ରେୟୀଙ୍କର ବିଦ୍ୟା, ବୁଦ୍ଧି, ଅଧ୍ୟୟନ, ତପସ୍ୟା ଅପେକ୍ଷା ନାରୀର ସତୀତ୍ୱ, ପ୍ରଭୁଭକ୍ତି, ସ୍ୱାମୀଭକ୍ତି, ପବିତ୍ରତା, ବିଶ୍ୱସ୍ତତା, ଘର, ପରିବାର ସଂସାର, ସନ୍ତାନ ଓ ସ୍ୱାମୀର ବାହାରେ ଥିବା ପୃଥିବୀ ପ୍ରତି ବିମୁଖତା, ପ୍ରଶ୍ନହୀନ ତ୍ୟାଗ ଓ ସହନଶୀଳତା ହେଲା ନାରୀର ଭୂଷଣ ଏବଂ ଏସବୁର ଅଧିକାରୀ ସୀତା, ସାବିତ୍ରୀ ଓ ପାର୍ବତୀଙ୍କୁ ଆଦର୍ଶ ନାରୀ ଭାବରେ ପ୍ରତିଷ୍ଠା କରିବାର ଯୋଜନାବଦ୍ଧ ପ୍ରୟାସ ହୋଇଛି । ନିଜ ଅଜାଣତରେ ଅହଲ୍ୟାଙ୍କ ନୈତିକ ସ୍ଖଳନ, ଦ୍ରୌପଦୀଙ୍କ ପଞ୍ଚପତିବରଣ, ବାଲୀଙ୍କ ନିଧନ ପରେ ତାରାଙ୍କ ଦ୍ୱିତୀୟଦାର ଗ୍ରହଣ, କୁନ୍ତୀଙ୍କ ପ୍ରାକ୍ ବିବାହ ସଂପର୍କ ଓ କର୍ଣ୍ଣ ପ୍ରକରଣ, ଦମୟନ୍ତୀଙ୍କ ଦ୍ୱିତୀୟ ବିବାହ ଯୋଜନା ଓ ଶକୁନ୍ତଳାଙ୍କ ଗୁପ୍ତ ବିବାହ ଯୋଗୁଁ ସେମାନେ ସୀତା, ସାବିତ୍ରୀ ଓ ପାର୍ବତୀ ସ୍ତରୀୟ ସମ୍ମାନ ପାଆନ୍ତି ନାହିଁ । ମୈତ୍ରେୟୀଙ୍କର ଜ୍ଞାନ ପିପାସା ଏକ ଆଦର୍ଶ ନାରୀ ଚରିତ୍ରର ବିରୋଧାଭାସ ବୋଲି ଧରିନିଆଯାଏ । ସେ 'ସତ୍ୟ'କୁ ନିଜ ସ୍ୱାମୀଙ୍କଠୁ ଉଚ୍ଚାସନ ଦେଇଛନ୍ତି । ଜ୍ଞାନ, ସାହସ, ଦୃଢ଼ତା ସତ୍ତ୍ୱେ ଦ୍ରୌପଦୀ, ତାରା ଓ ଦମୟନ୍ତୀ ଏବଂ ଦାୟିତ୍ୱବାନ ତଥା ବିଶ୍ୱସ୍ତ କୁନ୍ତୀ, ମନ୍ଦୋଦରୀ ଏବଂ ଗଭୀର ପ୍ରେମ ଓ ପ୍ରେରଣାର ପ୍ରତୀକ ଶକୁନ୍ତଳା, ମୈତ୍ରେୟୀ ଜ୍ଞାନ ଓ ସତ୍ୟ ପିପାସୁ କେହି ଆଦର୍ଶ ହିନ୍ଦୁ ନାରୀ ହୋଇପାରିନାହାନ୍ତି । ଆମ ଦେଶରେ ରଚିତ ସାହିତ୍ୟ, ଲୋକ କଥା, ଲୋକ ଗୀତ, ଲୋକ କାବ୍ୟ ପରଂପରାରେ ସୀତା, ସାବିତ୍ରୀ ଓ ପାର୍ବତୀଙ୍କୁ ସବୁଠୁ ଅଧିକ ମହତ୍ତ୍ୱ ଦିଆଯାଇଛି । ବେତାଳ ପଂଚବିଂଶତି, ପଂଚତନ୍ତ୍ର, କଥାସରିତ ସାଗରରେ, ଅଭିଜ୍ଞାନ ଶାକୁନ୍ତଳମ୍, ତୁଳସୀ ଦାସଙ୍କ ରାମାୟଣ, ସ୍ଥାନୀୟ ଭାଷାରେ ଲିଖିତ ବିଭିନ୍ନ ରାମାୟଣଠୁ ଆରମ୍ଭ କରି ପାରଂପରିକ ସିନେମା, ଟେଲି ସିରିଏଲରେ ଅବସ୍ଥା ବଳବତ୍ତର ରହିଛି । ଏପରିକି ସ୍ୱାଧୀନତା ଆନ୍ଦୋଳନ ପୂର୍ବର ସଂସ୍କାର ଧର୍ମୀ ଆନ୍ଦୋଳନ ଓ ସ୍ୱାଧୀନତା ଆନ୍ଦୋଳନ ବେଳେ ବି ସମାଜର ନେତୃସ୍ଥାନୀୟ ଲୋକେ ସୀତା, ସାବିତ୍ରୀ ଓ ପାର୍ବତୀଙ୍କ ପରି ଆଦର୍ଶ ନାରୀ ହେବା ପାଇଁ ମହିଳାମାନଙ୍କୁ ଆହ୍ୱାନ ଦେଇଛନ୍ତି । ମହାତ୍ମା ଗାନ୍ଧି ମଧ୍ୟ ଭାରତୀୟ ନାରୀଙ୍କୁ ସୀତା, ସାବିତ୍ରୀ ଓ ପାର୍ବତୀଙ୍କ ପରି ହେବା ପାଇଁ ଆହ୍ୱାନ ଦେଇଛନ୍ତି । ଅବଶ୍ୟ ଅନେକ ସମୟରେ ସେ ଦୃଢ଼ ମନୋବଳ ପାଇଁ ଦ୍ରୌପଦୀ ଓ ଦମୟନ୍ତୀଙ୍କୁ ବି ପ୍ରଶଂସା କରିଛନ୍ତି । ସ୍ୱାମୀ ବିବେକାନନ୍ଦ ମଧ୍ୟ ସୀତା ଓ ସାବିତ୍ରୀଙ୍କୁ ଅନ୍ୟମାନଙ୍କ ତୁଳନାରେ ଉଚ୍ଚାସନ ଦେଇଛନ୍ତି । ଅରବିନ୍ଦଙ୍କ ସାବିତ୍ରୀ ମହାକାବ୍ୟ ତାର ଉତ୍କୃଷ୍ଟ ଉଦାହରଣ । ସୀତାଙ୍କ ସହନଶୀଳତା, ସ୍ୱାମୀଙ୍କ ଅପମାନ ସହି ନ ପାରି

ପାର୍ବତୀଙ୍କ ଆତ୍ମଦାହ, ସାବିତ୍ରୀଙ୍କ ନିଷ୍ଠା ଓ ସମର୍ପଣ ଭାବ ଆମର ପୁରୁଷପ୍ରାଧାନ୍ୟ ମାନସିକତାକୁ ବେଶ୍ ସୁହାଏ। ଆମ ଆଦର୍ଶ ନାରୀର ପରିକଳ୍ପନାରେ ଥିବା ଜଣେ ଦାସୀ ସୁଲଭ, ସୁନ୍ଦରୀ ନାରୀର ବେଶ୍ ପାଖାପାଖି ଲାଗନ୍ତି ଏଇ ଚରିତ୍ରମାନେ। ଏ ତିନି ଜଣ ଏଭଳି ନାରୀ, ଯିଏ କୌଣସି ଦୃଷ୍ଟିରୁ ବି ସମତା, ସ୍ୱାଧୀନତା, ବନ୍ଧୁତା ଭଳି ମୂଲ୍ୟବୋଧ ଆଧାରରେ ପୁରୁଷକୁ ପ୍ରଶ୍ନ କରେନା। ଅବଶ୍ୟ ଏ ପରିପ୍ରେକ୍ଷୀରେ ରବୀନ୍ଦ୍ରନାଥ ଠାକୁର ଓ ଲୋହିଆଙ୍କ ମତ ବେଶ୍ ଅଲଗା। ତାଙ୍କ ପାଇଁ ଆଦର୍ଶ ଭାରତୀୟ ନାରୀଙ୍କ ତାଲିକାରେ ପ୍ରଥମେ ମୈତ୍ରେୟୀ ଓ ଦ୍ରୌପଦୀ ଆସନ୍ତି। ଧନକୁ ତୁଚ୍ଛ ମନେ କରୁଥିବା ମୈତ୍ରେୟୀ ରବୀନ୍ଦ୍ରନାଥଙ୍କ ପ୍ରେରଣା ହୋଇଛନ୍ତି। ସୀତା ବନାମ ଦ୍ରୌପଦୀ ବିତର୍କ କରିବା ଥିଲା ଲୋହିଆଙ୍କ ଅନ୍ୟତମ ସାମାଜିକ- ରାଜନୀତିକ ଗତିବିଧି। ଦ୍ରୌପଦୀଙ୍କ ଜ୍ଞାନ, ତର୍କ, ଦୃଢ଼ତା ଓ ଅନ୍ୟାୟ ବିରୁଦ୍ଧରେ ସଂଘର୍ଷ ମାନସିକତା ପ୍ରତିଟି ଭାରତୀୟ ନାରୀ ପାଇଁ ଆଦର୍ଶ ହେଉ ବୋଲି ସେ ଇଚ୍ଛା କରୁଥିଲେ। ଠିକ୍ ସେଭଳି ଐତିହାସିକ ଚରିତ୍ର ଭାବେ ଝାନ୍ସୀ ରାଣୀ ଲକ୍ଷ୍ମୀ ବାଈ ଓ ରାଣୀ ପଦ୍ମିନୀକୁ ନେଇ କିଏ ଆଦର୍ଶ ନାରୀର ବିତର୍କ କରାଉଥିଲେ। ଜଣେ ସତୀତ୍ୱ ଓ ପବିତ୍ରତାର ସୁରକ୍ଷା ନାଆଁରେ ଆତ୍ମହତ୍ୟାକୁ ବାଛି ନେଇଥିବା ବେଳେ ଜଣେ ସ୍ୱାଧୀନତା ଲାଗି ସଂଘର୍ଷକୁ ବାଛି ନେଇ ଆତ୍ମବଳିଦାନ ଦେଇଛି।

### ନାରୀ ସ୍ୱାଧୀନତାର ସଙ୍କୋଚନରେ ବିବାହ ବ୍ୟବସ୍ଥା

ନାରୀର ସ୍ଥିତିରେ କ୍ରମାଗତ ପରିବର୍ତ୍ତନ ସହ ବିବାହ, ପୁନଃବିବାହ, ବିଧବା ବିବାହ, ସଂପତ୍ତିଗତ ଅଧିକାରର ଗଭୀର ସଂପର୍କ ରହିଛି। ଧର୍ମ ଓ ଆଦର୍ଶ ସ୍ତ୍ରୀତ୍ୱ, ଯାହା ପୁରୁଷର ଭିଆଣ ସେ ଭିଆଣକୁ ନାରୀ ଏତେଟା ସହଜରେ ମାନିନେଇ ନଥିଲା। ତାକୁ ମନେଇବାକୁ ପଡ଼ିଥିଲା। ତଥାକଥିତ ଆଦର୍ଶକୁ ନାରୀ ପାଇଁ କେମିତି ଗ୍ରହଣୀୟ ହେବ ଏବଂ ନାରୀ ତାକୁ ଗ୍ରହଣ କରିବାକୁ ବାଧ ହେବ, ତା ପାଇଁ ହୋଇଥିବା ଯୋଜନାବଦ୍ଧ ଷଡ଼ଯନ୍ତ୍ର ପରିପ୍ରେକ୍ଷୀରେ କ୍ରମପରିବର୍ତ୍ତିତ ବିବାହ ବ୍ୟବସ୍ଥାର ସ୍ୱଳ୍ପ ଚର୍ଚ୍ଚା ଏଠି ଜରୁରୀ ମନେ ହୁଏ। ବ୍ରହ୍ମ, ପ୍ରଜାପତୟେ, ଅରସ, ଦୈବ, ଗାନ୍ଧର୍ବ୍ୟ, ଅସୁର, ରାକ୍ଷସ ଓ ପୈଶାଚ ଆଦି ଏଭଳି ଆଠ ପ୍ରକାରର ବିବାହ ବ୍ୟବସ୍ଥା ହିନ୍ଦୁ ଧର୍ମରେ ଅଛି। କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ତାଙ୍କ ସମୟର ସାମାଜିକ ସ୍ଥିତିର ଏକ ସ୍ପଷ୍ଟ ଧାରଣା ଦିଏ। ପ୍ରଥମ ଚାରିଗୋଟି ବିବାହ ବ୍ୟବସ୍ଥା ନିର୍ଭର କରେ କନ୍ୟା ପିତାର ସମ୍ମତି ଉପରେ। ତେଣୁ ତାହା ଧର୍ମୀୟ ବିବାହ। ବାକି ଚାରିଟି ନିର୍ଭର କରେ ଉଭୟ ପକ୍ଷର ପିତାମାତା କିମ୍ବା କୌଣସି ଗୋଟିଏ ପକ୍ଷର ଅନୁପସ୍ଥିତିରେ ବି ସେ ବିବାହ ସମ୍ଭବ। ଏପରିକି ଉଭୟ ପକ୍ଷର ଅନୁପସ୍ଥିତି ଥାଇ ପୁଅ-ଝିଅର ସମ୍ମତିକ୍ରମେ ବିବାହ ସମ୍ଭବ। ପୁଅଝିଅର ଇଚ୍ଛାରେ ହୋଇଥିବା ବିବାହକୁ ପରବର୍ତ୍ତୀ ଅବସ୍ଥାରେ କେତୋଟି ସର୍ତ୍ତରେ ସାମାଜିକ ଭାବରେ ଗ୍ରହଣୀୟ କରାଇବାର ବ୍ୟବସ୍ଥା ରହିଛି। ପରେ କନ୍ୟାଶୁଳ୍କ

ବା କନ୍ୟାସୁନା ଦେଇ ଝିଅର ବା ତା' ମାଙ୍କ ସ୍ୱୀକୃତି ଅଣାଯାଇପାରିବ। ଗୋଟିଏ ସମୟ ଥିଲା ୮ ଟି ଯାକ ବିବାହ ବ୍ୟବସ୍ଥାର ସମାନ ମାନ୍ୟତା ଥିଲା। କିନ୍ତୁ କୌଟିଲ୍ୟଙ୍କ ସମୟ ଆସୁ ଆସୁ ନିର୍ଦ୍ଦିଷ୍ଟ ଭାବେ କୌଣସି ଧାର୍ମିକ ସ୍ୱୀକୃତି ନଥିବା ସତ୍ତ୍ୱେ ପ୍ରଥମ ଚାରିଟିକୁ ଧର୍ମ ସହ ଯୋଡ଼ାଗଲା।  ତା ପ୍ରତି ସାମାଜିକ ଗ୍ରହଣୀୟତା ଓ ମାନ୍ୟତା ବଢ଼ିଲା ଓ ଅନ୍ୟ ପଟେ ବାକି ଚାରିଟି ସହ ଅର୍ଧମ ଶବ୍ଦ ଯୋଡ଼ା ନ ଗଲେ ମଧ୍ୟ ତୁଳନାତ୍ମକ ଭାବରେ ସେଗୁଡ଼ିକ ଗୌଣସ୍ତରୀୟ ବିବାହ ବୋଲି ଧରିନେବାର ପ୍ରକ୍ରିୟା ଆରମ୍ଭ ହେଲା। ଏ ବିଭାଗୀକରଣ କୌଟିଲ୍ୟଙ୍କ ବେଳକୁ ଆରମ୍ଭ ହୋଇ ମନୁଙ୍କ ବେଳକୁ କଠୋର ପ୍ରଥାରେ ପରିଣତ ହେଲା। ଧର୍ମୀୟ ଓ ଅଧର୍ମୀୟ, ସ୍ୱୀକୃତି ଓ ଅସ୍ୱୀକୃତି ଏବଂ ପବିତ୍ର ଓ ସେକୁଲାର ଆଦି ଶବ୍ଦର ବ୍ୟବହାର ହେଲା। ସ୍ୱୀକୃତ ବିବାହ ବ୍ୟବସ୍ଥାରେ ଝିଅର ବାପାକୁ ସମସ୍ତ ଦାୟିତ୍ୱ ନେବାକୁ ପଡ଼େ ଏବଂ ପୁତ୍ର ପକ୍ଷ କେବଳ ଗ୍ରହଣ କରନ୍ତି। କନ୍ୟା ପକ୍ଷ ଏକ ଉପହାର ରୂପେ ଝିଅକୁ ଅର୍ପଣ କରେ। କନ୍ୟାର ଇଚ୍ଛା ବୟସ ବା ପରିପକ୍ୱତାକୁ ବିଶେଷ ଗୁରୁତ୍ୱ ଦିଆଯାଏ ନାହିଁ। ବିଶେଷତଃ ପ୍ରଜାପତୟେ ଓ ଦେବ ବିବାହ ବ୍ୟବସ୍ଥାକୁ ଏକ ରକମ ଧାର୍ମିକ ଗତିବିଧିର ମାନ୍ୟତା ଦିଆଯାଇଥିଲା ଯେଉଁଥିରେ ଛାଡ଼ପତ୍ର ପାଇଁ ମାନ୍ୟତା ନଥିଲା। ଆର୍ଥିକ ଦୃଷ୍ଟିରୁ ଦେଖିଲେ ଏଭଳି ବିବାହ କନ୍ୟାପକ୍ଷ ପାଇଁ ଥିଲା ଏକ ବୋଝ। ବିବାହର ସାରା ଖର୍ଚ୍ଚ ତାଙ୍କୁ ବହନ କରିବାକୁ ପଡୁଥିଲା। ବିବାହ ପରେ ସ୍ତ୍ରୀଧନ ଉପରେ ନାରୀର ଅଧିକାରକୁ ନେଇ ଯଦିଓ ସନ୍ଦେହ ନଥିଲା ମାତ୍ର ତା ସହ ଅନେକ ଅଲିଖିତ ସର୍ତ୍ତ ଯୋଡ଼ି ହୋଇ ରହିଥିଲା। କେବଳ କୌଣସି ବିଶେଷ ଘଟଣା ପରିପ୍ରେକ୍ଷୀରେ ସ୍ୱାମୀର ସମ୍ମତିକ୍ରମେ ସ୍ତ୍ରୀଟି ତା'ଉପରେ ହାତ ଦେଇ ପାରିବ। ଏ ବିବାହ ବ୍ୟବସ୍ଥା ପୁରୁଷ ପ୍ରାଧାନ୍ୟତାକୁ ଆହୁରି ମଜବୁତ୍ କଲା। ସବୁକିଛି ମିଳିଲା ପୁଅପକ୍ଷକୁ। କନ୍ୟା ଶୁଳ୍କ କଥା ବି ଉଠିଗଲା। ସ୍ତ୍ରୀ ଧନ ଭାବରେ ଯାହା ବି ରହିଲା ତା'ଉପରେ ଅଲିଖିତ କବ୍‌ଜା ରହିଲା ପୁରୁଷର।

ଗାନ୍ଧର୍ବ, ଅସୁର, ରାକ୍ଷସ ଓ ପୈଶାଚ ତଥାକଥିତ ଚାରିଟି ଅସ୍ୱୀକୃତ ବିବାହ ବ୍ୟବସ୍ଥାରେ ନାରୀର କିଛି ହେଲେ ଅଧିକାର ଥିଲା। କନ୍ୟା ନିଜର ଇଚ୍ଛା ପ୍ରକଟରେ କିଛିଟା ଅଧିକାର ପାଉଥିଲା। ପୁଅ-ଝିଅର ଇଚ୍ଛାକୁ ନେଇ କିଛିଟା ସ୍ୱୀକୃତି ଥିଲା। ଝିଅର ବୟସ ପରିପକ୍ୱତା ଓ ସମ୍ମତି ଆବଶ୍ୟକ ହେଉଥିଲା। ଗାନ୍ଧର୍ବ ବିବାହରେ ମଧ୍ୟ ଝିଅର ସମ୍ମତି ଓ ପରିପକ୍ୱତା ହେଲା ମୂଳକଥା। ଅବଶ୍ୟ ଏ ଚାରିଟି ରକମର ବିବାହରେ ମଧ୍ୟ କନ୍ୟାର ବାପାମାଆର ସ୍ୱୀକୃତି ଓ କନ୍ୟା ଶୁଳ୍କ ପ୍ରାପ୍ତିର ବ୍ୟବସ୍ଥା ରହିଛି। ଏଠି ଝିଅ ଆଉ ଉପହାର ନୁହେଁ ଏବଂ ଶୁଳ୍କ ତଥା ସ୍ତ୍ରୀଧନ ଦେବା ଏଠି ପୁଅ ପକ୍ଷ ପାଇଁ ବାଧ୍ୟବାଧକତା। ପୈଶାଚ, ଅସୁର ଓ ଗାନ୍ଧର୍ବ ବ୍ୟବସ୍ଥାରେ ବିବାହ ହୁଏତ ଆଗରୁ ହୋଇଯାଇପାରେ। କନ୍ୟା ଶୁଳ୍କ ଓ ସ୍ତ୍ରୀ ଧନ ଦେବା, ନେବା ପ୍ରକ୍ରିୟାର ଅର୍ଥ ହେଲା କନ୍ୟା ପିତାମାତାର

ସ୍ୱୀକୃତି ମିଳିବା। ଏଠି ବିବାହ ଏକ ଚୁକ୍ତି। ସେ ଚୁକ୍ତିର ଏକ ପ୍ରକ୍ରିୟା ଓ ସର୍ତ୍ତ ରହିଛି। ଏଠି ଆର୍ଥିକ ଦୃଷ୍ଟିରୁ କନ୍ୟା ପକ୍ଷ ସୁବିଧା ଜନକ ସ୍ଥିତିରେ। ନାରୀ ତାର ଶୁଳ୍କ ଓ ସ୍ତ୍ରୀ ଧନକୁ ନେଇ ଆର୍ଥିକ ଦୃଷ୍ଟିରୁ କିଛିଟା ସୁରକ୍ଷିତ ଥିଲା। ସ୍ତ୍ରୀର ବ୍ୟକ୍ତିଗତ ସଂପତ୍ତି ଥିଲା। ସ୍ୱାମୀର ମୃତ୍ୟୁପରେ ଏବଂ ଅସୁବିଧାଜନକ ପରିସ୍ଥିତିରେ ଏ ସଂପତ୍ତି ତାକୁ ସୁରକ୍ଷିତ ରଖୁଥିଲା। ଉଭୟ ସ୍ୱୀକୃତ ଓ ଅସ୍ୱୀକୃତ ବିବାହ ବ୍ୟବସ୍ଥା ଥିବା ହେତୁ ସମାଜରେ ମହିଳାଙ୍କ ସ୍ଥିତିରେ ମଧ୍ୟ ବିଭିନ୍ନତା ଥିଲା। ଗୋଟିଏରେ ମହିଳା ଜଣକ ପୁରୁଷ ପ୍ରାଧାନ୍ୟ ବ୍ୟବସ୍ଥା ଭିତରେ ଜୀଉଁଥିବା ବେଳେ ଅନ୍ୟଟିରେ ସଂପୂର୍ଣ୍ଣ ନ ହେଲେ ବି ମହିଳାର କିଛି ଗୁରୁତ୍ୱ ରହୁଥିଲା। କୌଟିଲ୍ୟ ବିବାହର ଏ ବିଭାଗୀକରଣ ଓ ତାଙ୍କ ସମୟର ସାମାଜିକ ସ୍ଥିତି ବର୍ଣ୍ଣନା କଲାବେଳେ କୌଣସି ନିର୍ଦ୍ଦିଷ୍ଟ ବ୍ୟବସ୍ଥାକୁ କାର୍ଯ୍ୟକାରୀ କରାଇବା ଭଳି କଠୋର ମାନସିକତା ପ୍ରତିପୋଷଣ କରିନଥିଲେ। ମନୁ ପୁରୁଷପ୍ରାଧାନ୍ୟ ବ୍ୟବସ୍ଥା ସପକ୍ଷରେ ଯାଇ ବ୍ରହ୍ମ, ଦୈବ, ଅରସ ଓ ପ୍ରଜାପତେୟ ବ୍ୟବସ୍ଥାକୁ ସମର୍ଥନ କଲେ। ତାକୁ ଧର୍ମସହ ଯୋଡ଼ିଲେ। ପବିତ୍ରତା ସହ ଯୋଡ଼ିଲେ। ଗାନ୍ଧର୍ବ ବିବାହକୁ ସେ ସ୍ୱୀକୃତି ଦେଇଥିଲେ ମଧ୍ୟ ସେଥିରେ ଅନେକ ସର୍ତ୍ତ ଯୋଡ଼ିଥିଲେ। ବ୍ରହ୍ମ ବ୍ୟବସ୍ଥାରେ ବିବାହ କରି ସନ୍ତାନ ଜନ୍ମ କଲେ ୨୧ଟି ପୀଢ଼ି ମୁକ୍ତି ପାଇବେ। ଅରସରେ ୬ଟି ପୀଢ଼ି, ଦୈବ ଓ ପ୍ରଜାପତେୟରେ ଯଥାକ୍ରମେ ୧୫ ଟି ଓ ୩୦ଟି ପୀଢ଼ିକୁ ମୁକ୍ତି ମିଳେ। ଏଭଳି ବ୍ୟବସ୍ଥାରେ ଯେଉଁ ପୁଅ ଜନ୍ମ ନେବ ସେ ବେଦଜ୍ଞ ହେବ, ଉନ୍ନତ ମଣିଷ ହେବ, ନ୍ୟାୟବାନ ହେବ, ସୁନ୍ଦର ହେବ, ଯଶଖ୍ୟାତି ଅର୍ଜିବ, ଶତାୟୁ ହେବ ଇତ୍ୟାଦି ଇତ୍ୟାଦି। ଏହାର ଅର୍ଥ ବାକି ଚାରିଟି ବିବାହ ବ୍ୟବସ୍ଥା ମନ୍ଦ, ଅଧର୍ମ। କୌଟିଲ୍ୟ ଓ ମନୁଙ୍କ ଆଦର୍ଶ ବିବାହରେ ଉପର ଚାରିଟି ବ୍ୟବସ୍ଥାକୁ ବିଶେଷ ମାନ୍ୟତା ମିଳିଥିବା ବେଳେ ଶେଷ ଚାରିଟି ସମୟକ୍ରମେ ନିନ୍ଦିତ ହେଲା। ମନୁ ଦ୍ୱିଜଙ୍କୁ ଶେଷ ୪ ପ୍ରକାର ବିବାହ ନକରିବା ପାଇଁ ପରାମର୍ଶ ଦେଇଥିଲେ ଏବଂ ବାକି ଲୋକଙ୍କୁ ମଧ୍ୟ କନ୍ୟା ଶୁଳ୍କ ଗ୍ରହଣ ନ କରିବା ପାଇଁ ପ୍ରବର୍ତ୍ତାଇଥିଲେ। କନ୍ୟା ଶୁଳ୍କ ନେବା କନ୍ୟାର ବିକ୍ରି ସହ ସମାନ ବୋଲି ଯୁକ୍ତି କରି ଲୋକଙ୍କୁ ପ୍ରଭାବିତ କରୁଥିଲେ। ବିବାହ ବ୍ୟବସ୍ଥା ସହ କୌଟିଲ୍ୟ ବର୍ଣ୍ଣକୁ ଯୋଡ଼ି ନଥିଲେ। କିନ୍ତୁ ମନୁ ବ୍ରାହ୍ମଣଙ୍କ ପାଇଁ ପ୍ରଥମ ଚାରି ପ୍ରକରେ ବିବାହ ବ୍ୟବସ୍ଥା ସଂରକ୍ଷିତ ବୋଲି କହିଲେ। କେବଳ ଗାନ୍ଧର୍ବ ବବାହ ସବୁ ବର୍ଣ୍ଣ ପାଇଁ ପ୍ରଯୁଜ୍ୟ ବୋଲି କହୁଥିଲେ।

## ବୈଧବ୍ୟ ଯେଉଁଠି ଆଦର୍ଶ

କୌଟିଲ୍ୟଙ୍କ ସମୟରେ ତଥା ଅର୍ଥଶାସ୍ତ୍ରରେ ବିଧବା ବିବାହର ପ୍ରଚଳନ ପ୍ରତି ସ୍ୱୀକୃତି ଥିଲା। କିନ୍ତୁ ସେଭଳି ବିବାହର ସଂଖ୍ୟା କମି ଆସୁଥିଲା। ସ୍ୱାମୀର ମୃତ୍ୟୁପରେ ବିଧବାଟିଏ ପାଇଁ ଦୁଇଟି ବାଟ। ପ୍ରଥମଟି ହେଲା ସେ ପୁନର୍ବିବାହ ନକରି ପାତିବ୍ରତ୍ୟ ଧର୍ମ

ପାଳନ କରିବ। ଏଭଳି ସ୍ଥିତିରେ ତାର ଗହଣା ଓ ବାକି ବଞ୍ଚିଥିବା କନ୍ୟା ଶୁଳ୍କ ଫେରିପାଇବ। ଦ୍ୱିତୀୟରେ ଯଦି ସେ ପୁର୍ନଃବିବାହ କରେ ତାକୁ ତାର ଗହଣା ଓ ସୁଧ ସହ ଶୁଳ୍କ ଅର୍ଥ ଫେରାଇବାକୁ ପଡ଼ିବ। ପୂର୍ବତନ ସ୍ୱାମୀର ସଂପତ୍ତି ରଖିପାରିବ ନାହିଁ ଏବଂ ସ୍ତ୍ରୀ ଧନକୁ ତାର ସନ୍ତାନ ପାଇଁ ଛାଡ଼ିଯିବାକୁ ପଡ଼ିବ। ଅବଶ୍ୟ ସର୍ତ୍ତମୂଳକ ପୁନର୍ବିବାହ କଲେ ଏ ସଂପତ୍ତି ଭୋଗର ବ୍ୟବସ୍ଥା ମଧ୍ୟ ରହିଛି।

ଅର୍ଥ ଶାସ୍ତ୍ରରେ ତିନି ପ୍ରକାର ପୁନର୍ବିବାହର ଆଲୋଚନା ହୋଇଛି। ବେଦକ, ନିବେଶ ଓ ଗମନ। ଏ ତିନି ପ୍ରକାର ପରମ୍ପରା ଅନୁରୂପ ବିବାହ କଲେ ନାରୀକୁ ତାର ସ୍ତ୍ରୀ ଧନ ହରାଇବାକୁ ପଡ଼ିବ ନାହିଁ ତଥା ନିଜ ସଂପତ୍ତିର ରକ୍ଷଣା ବେକ୍ଷଣ ଓ ତାର ବୃଦ୍ଧି ମଧ୍ୟ ସେ କରିପାରିବ। ଏଥିପାଇଁ ଅବଶ୍ୟ କେତୋଟି ନିୟମ ରହିଛି। ପୁନର୍ବିବାହ ନିଷ୍ପତ୍ତି, ଶ୍ୱଶୁରଙ୍କ ସ୍ୱୀକୃତ ଉପରେ ନିର୍ଭରଶୀଳ। ଦ୍ୱିତୀୟତଃ ସ୍ୱାମୀର ମୃତ୍ୟୁ କିମ୍ବା ସାତଟି ତୀର୍ଥ ସମୟ ଭିତରେ ସ୍ୱାମୀ ଯଦି ନ ଫେରେ (ଗୋଟିଏ ତୀର୍ଥର ଅର୍ଥ ଏଠି ଥରେ ଋତୁସ୍ରାବ ହେବା, ସାତଟି ତୀର୍ଥ ଅର୍ଥ ଦୀର୍ଘ ସାତମାସ) ଯଦି ସନ୍ତାନ ଜନ୍ମ କରିଥାଏ ତେବେ ଅନ୍ତତଃ ଗୋଟିଏ ବର୍ଷ ପରେ। କିନ୍ତୁ ସେ ତାର ଇଚ୍ଛାରେ ବିବାହ କରିପାରିବ ନାହିଁ। ସ୍ୱାମୀ ନିର୍ବାଚନ ତା' ହାତରେ ନାହିଁ। ମୃତସ୍ୱାମୀର ଭାଇଙ୍କ ମଧ୍ୟରୁ ଜଣକୁ ପ୍ରମୁଖତା ଦିଆଯାଏ। ଯିଏ ତାର ଦାୟିତ୍ୱ ନେଇପାରିବ କିମ୍ବା ଅବିବାହିତ କନିଷ୍ଠ ଭ୍ରାତା ହୋଇପାରେ। ସେଭଳି କିଛି ହୋଇ ନପାରିଲେ ନିଜ ପିଣ୍ଡ ବା କୁଳର ଅନ୍ୟ ପୁରୁଷକୁ ଯାଇପାରିବ। ଏଥିରେ ସାମାନ୍ୟ ବିଚ୍ୟୁତି ଘଟିଲେ ସେ ହେବ ଅପରାଧୀ। କୌମାର୍ଯ୍ୟ ନଷ୍ଟ ହୋଇ ନଥିବା ନାରୀ, ଦରିଦ୍ର ଓ ପରିତ୍ୟକ୍ତା ନାରୀଙ୍କ କ୍ଷେତ୍ରରେ ଏ ସର୍ତ୍ତ ଓ ନିୟମ ଲାଗୁ ହେବ ନାହିଁ। ମୋଟାମୋଟି ଅର୍ଥ ହେଲା ସ୍ତ୍ରୀଟି ନିଜ ପରିବାର ଭିତରେ ରହିବା ଦ୍ୱାରା ସଂପତ୍ତିତକ ନିଜ ପରିବାର ଭିତରେ ରହିଯିବ। ଏଥିରୁ ଜଣାପଡୁଛି ପୁନର୍ବିବାହ କୌଟିଲ୍ୟଙ୍କ ସମୟ ଏବଂ ଅର୍ଥଶାସ୍ତ୍ର ଅନୁସାରେ ପ୍ରାୟତଃ ଅସମ୍ଭବ। ଶ୍ୱଶୁରଙ୍କ ଇଚ୍ଛା, ସମୟ ଶୃଙ୍ଖଳ, ପତି ନିର୍ବାଚନରେ ନାରୀର ଅନଧିକାର ଆଦି କାରଣରୁ ବିଧବା ବିବାହ ଏପରିକି ପୁନର୍ବିବାହ ଅସମ୍ଭବ ହେବାକୁ ବସିଲା। ପୁନର୍ବିବାହ ସମୟରେ ନାରୀର ଇଚ୍ଛା ପ୍ରତି ସମ୍ମାନ ନ ଦେବାର ଅର୍ଥ, ଅଚଳନ୍ତି ସଂପତ୍ତି ପରି ଗୋଟିଏ ପୁରୁଷରୁ ଆଉ ଗୋଟିଏ ପୁରୁଷ ହାତକୁ ତାକୁ ଟେକିଦେବା। ଅନ୍ୟ ଦିଗରେ ବୈଧବ୍ୟକୁ ଗ୍ରହଣ କରି ନେଇଥିବା ସ୍ତ୍ରୀ ପ୍ରତି ସମାଜରେ ଆଦର ଓ ସମ୍ମାନ ମିଳୁଥିଲା। ବିଧବାମାନେ ସ୍ତ୍ରୀ ଧନ, ଶୁଳ୍କ ଓ ସ୍ୱାମୀର ସଂପତ୍ତି ନେଇ ସମ୍ମାନର ସହ ବଞ୍ଚିବା ବରଂ ଶ୍ରେୟସ୍କର ମନେ କରୁଥିଲେ। ବିଶେଷତଃ ଧନୀ ପରିବାରରେ ନାରୀମାନେ ଏତେ ସବୁ ସର୍ତ୍ତ ପରିପ୍ରେକ୍ଷୀରେ ପୁନଃବିବାହ ନ କରିବା ପାଇଁ ନିଷ୍ପତ୍ତି ନେଉଥିଲେ।

ମନୁ ଅନ୍ୟ ଦିଗରେ ଲାଗି ପଡ଼ିଲେ କିପରି ପୁନର୍ବିବାହ ବ୍ୟବସ୍ଥା ହିଁ ରହିବ ନାହିଁ। ବୈଧବ୍ୟକୁ ହିଁ ସେ ଏତେ ଗୌରବାନ୍ୱିତ ଓ ମହିମାମଣ୍ଡିତ କରିଛନ୍ତି ଯେ, ଜଣେ ପୁନର୍ବିବାହକୁ ନିନ୍ଦିତ ଦୃଷ୍ଟିରେ ଦେଖିବ। ତାଙ୍କ ମତରେ ବିଧବା ଜଣକ ସ୍ୱାମୀର ସ୍ମୃତିକୁ ପାଥେୟ କରି ଫଳମୂଳ ଖାଇ ଏକ ନିରାଡ଼ମ୍ବର ଜୀବନ ବିତାଇବ ଯଦ୍ୱାରା ଅମର ଯଶ ସହ ସ୍ୱର୍ଗରେ ନିଜର ସ୍ଥାନ ସୁରକ୍ଷିତ କରିପାରିବ। ସ୍ୱର୍ଗରେ ନିଜର ସ୍ୱାମୀସହ ସୁଖରେ ଜୀବନ ଯାପନ କରିବ। ଯେଉଁ ନାରୀ ସ୍ୱାମୀର ମୃତ୍ୟୁପରେ ଅନ୍ୟ ପୁରୁଷ ଗ୍ରହଣ କରିବ ସେ ତାର ପର ଜନ୍ମରେ ଭୟଙ୍କର ପରିଣତି ଭୋଗିବ। ଯେଉଁମାନଙ୍କ ସ୍ୱାମୀର କୌଣସି ଖୋଜଖବର ମିଳୁନାହିଁ ସେ ଅନିର୍ଦ୍ଦିଷ୍ଟ କାଳ ଯାଏ ଅପେକ୍ଷା କରିବା ଉଚିତ। ମନୁଙ୍କ ଅସ୍ୱୀକୃତି ସତ୍ତ୍ୱେ ଯେହେତୁ ଅନେକ ନାରୀ ସେତେବେଳେ ପୁନର୍ବିବାହ କରୁଥିଲେ ତେଣୁ ତାଙ୍କ ନୀତିନିୟମରେ କିଛି କୋହଳ କରି କିଛି ସର୍ତ୍ତମୂଳକ ପୁନର୍ବିବାହକୁ ସ୍ୱୀକୃତି ଦେଇଥିଲେ। କିନ୍ତୁ ଏଭଳି ସର୍ତ୍ତ ରଖିଛନ୍ତି ଯେମିତି କି ପୁନର୍ବିବାହ ହୋଇପାରିବ ନାହିଁ।

ମନୁଙ୍କ ମତରେ ନାରୀ ହେଉଛି କ୍ଷେତ ଏବଂ ସ୍ୱାମୀ ସେ କ୍ଷେତର ମାଲିକ। ମନୁ 'ନିୟୋଗ' ନାମକ ଏକ ପରଂପରା ଆରମ୍ଭ କରିଥିଲେ। ସ୍ୱାମୀର ମୃତ୍ୟୁ ବା ସନ୍ତାନ ଜନ୍ମରେ ଅକ୍ଷମ ସ୍ୱାମୀ ପରିପ୍ରେକ୍ଷୀରେ ସନ୍ତାନହୀନା ନାରୀ କେବଳ ପୁତ୍ର ଜନ୍ମ ପାଇଁ ନିଯୁକ୍ତ ଏକ ପୁରୁଷକୁ ସ୍ୱଳ୍ପ ସମୟ ପାଇଁ ଗ୍ରହଣ କରି ପାରିବ। ଏଭଳି କ୍ଷେତ୍ରରେ ସ୍ୱାମୀର କନିଷ୍ଠ ଭ୍ରାତା କିମ୍ବା ସ୍ୱଗୋତ୍ରର ପରୁଷକୁ ନିଯୁକ୍ତି ଦିଆଯାଇପାରିବ। ବିଧବା ହେବା ପରେ ଏ କଥା ନିର୍ଦ୍ଦିଷ୍ଟ କରାଯାଇଛି ଯେ ନିଯୁକ୍ତ ବ୍ୟକ୍ତିଟି ସହ ସ୍ତ୍ରୀଟି କେବଳ ଗୋଟିଏ ମାତ୍ର ପୁତ୍ର ଜନ୍ମ ପାଇଁ ଆବଶ୍ୟକ ଦୈହିକ ସଂପର୍କ ରଖିପାରିବ। ସେ ସଂପର୍କରେ ଦୈହିକ ସଂସର୍ଗ ଜନିତ ଉତ୍ତେଜନା ବି ଗ୍ରହଣୀୟ ନୁହେଁ। ପୁତ୍ର ସନ୍ତାନ ଜନ୍ମପରେ ସେ ପୁରୁଷ ସହ ସେ ଆଉ ସଂପର୍କ ରଖିପାରିବ ନାହିଁ। ଏତେସବୁପରେ ସେ ପୁଣି କହିଛନ୍ତି, ଏ କ୍ଷେତ୍ରରେ ଏକ ଉନ୍ନତ କିସମର ସନ୍ତାନ ପ୍ରାପ୍ତିର ସମ୍ଭାବନା କମ। କାରଣ ଉନ୍ନତ ସନ୍ତାନ ପ୍ରାପ୍ତି ନିର୍ଭର କରେ ଉତ୍ତମ ବୀଜ ବିକ୍ଷେପକାରୀ ପୁରୁଷ ଉପରେ। ତା'ଛଡ଼ା ଏଭଳି ସଂପର୍କ ରଖୁଥିବା ପୁରୁଷ ସେଥିରୁ କିଛି ପାଏନାହିଁ। କାରଣ ଜନ୍ମିତ ଛୁଆଟି କ୍ଷେତ ମାଲିକର। ଦ୍ୱିତୀୟତଃ ମାତା ଓ ପୁତ୍ର ସଂପର୍କ କ୍ଷେତ୍ରରେ ଏ ବ୍ୟବସ୍ଥା ବେଶ୍ ଅଡୁଆ ପରିସ୍ଥିତି ସୃଷ୍ଟିକରେ। ମନୁ ଏ ପରମ୍ପରାର ସମସ୍ୟା କଥା କହି ଏହାକୁ ନିରୁତ୍ସାହିତ କରିଛନ୍ତି। ନିରୁତ୍ସାହିତ କରିବା ପାଇଁ ସେ ଲେଖିଛନ୍ତି - ବ୍ରାହ୍ମଣୀ ସ୍ତ୍ରୀ ଯଦି ଏ ପ୍ରଥା ପାଳିବ ତାହା ଧର୍ମ ଦୃଷ୍ଟିରୁ ପବିତ୍ର ନୀତିର ବିରୁଦ୍ଧାଚରଣ ବୋଲି ଧରାଯିବ। ସେ ଏ ପ୍ରଥା ଏବଂ ପରଂପରାକୁ କେବଳ ଶୂଦ୍ର ସ୍ତ୍ରୀ ପାଇଁ ସ୍ୱୀକୃତ ବୋଲି ଲେଖିଛନ୍ତି। ମନୁଙ୍କ ନିୟୋଗ ଓ କୌଟିଲ୍ୟଙ୍କ ନିବେଶ ପ୍ରାୟ ସମାନ। ସାରା ବ୍ୟବସ୍ଥାର ଉଦ୍ଦେଶ୍ୟ ହେଲା ବିଧବା ବିବାହ ବା ପୁନଃବିବାହ ହେବାକୁ ନ ଦେବା।

ଏବଂ ନାରୀର ସଂପତ୍ତିକୁ ପରିବାର ଭିତରେ ସୁରକ୍ଷିତ କରି ରଖିବା। ମନୁଙ୍କ ନିଯୋଗର ଅନ୍ୟ ଉଦ୍ଦେଶ୍ୟ ହେଲା ପରିବାର ଭିତରେ ବିବାହକୁ ବାଧତାମୂଳକ କରି ପୁନଃବିବାହ ସଂଖ୍ୟାକୁ ସର୍ବନିମ୍ନ ସ୍ତରରେ ରଖିବା ଓ ସମୟକ୍ରମେ ତାର ବିଲୋପ ସାଧନା । କୌଟିଲ୍ୟଙ୍କ ନିର୍ଦ୍ଦେଶକୁ ହିଁ ଅକାମୀ କରିବାର ଏକ କୌଶଳ ହେଲା ନିଯୋଗ। ସାରା ବ୍ୟବସ୍ଥାର ମୋଟାମୋଟି କଥା ହେଲା- ନାରୀର ସ୍ୱାଧୀନତା, ସଂପତ୍ତି ଅଧିକାରରେ ପୂର୍ଣ୍ଣଚ୍ଛେଦ ଏବଂ ସଂପତ୍ତିକୁ ପରିବାରରେ ସଂରକ୍ଷିତକରଣ। ଦ୍ୱିତୀୟତଃ ବିବାହ ବା ନାରୀ ଜୀବନର ଏକମାତ୍ର ଉଦ୍ଦେଶ୍ୟ ହେଲା ପୁତ୍ରସନ୍ତାନ ଜନ୍ମ। ଧୀରେଧୀରେ ଭାରତୀୟ ସମାଜରେ ମନୁସ୍ମୃତିର ଗୁରୁତ୍ୱ ବଢ଼ିଲା। ଧନୀକ ତଥା ଉଚ୍ଚଜାତିରେ ବିଧବା ବିବାହ ଆଉ କାର୍ଯ୍ୟକାରୀ ହେଲା ନାହିଁ। ଏ ପରିପ୍ରେକ୍ଷୀରେ ମନେପଡୁଛି ସାବିତ୍ରୀ ବାଈ ଫୁଲେଙ୍କ କଥା। ଉଚ୍ଚଜାତି ବିଧବାମାନେ ତାଙ୍କ ସଂପର୍କୀୟମାନଙ୍କ ଦ୍ୱାରା ଯେତେବେଳେ ଗର୍ଭବତୀ ହେଉଥିଲେ ତାଙ୍କୁ ବ୍ୟଭିଚାରୀ କହି ଘରୁ ତଡ଼ି ଦିଆଯାଉଥିଲା। ଏଭଳି ଉପେକ୍ଷିତ ଅତ୍ୟାଚାରିତ ସ୍ତ୍ରୀ ଓ ତାଙ୍କ ଛୁଆଙ୍କ ପାଇଁ ସେ ଏକ ଆଶ୍ରମ ଖୋଲିଥିଲେ। ଭାରତର ତୀର୍ଥସ୍ଥଳୀରେ ଥିବା ଆଶ୍ରମଗୁଡ଼ିକରେ ଏମାନେ ସେମାନଙ୍କର ଦୁଃଖୀ ଜୀବନ ବିତାଉଥିବା ଆମେ ସଭିଏଁ ଜାଣୁ।

### ସଂପତ୍ତିଗତ ଅଧିକାର ଓ ହିନ୍ଦୁ ନାରୀ :

ନାରୀର ସଂପତ୍ତି କହିଲେ, ପୈତୃକ ସଂପତ୍ତି, ସ୍ୱାମୀର ସଂପତ୍ତି, ବିବାହ ସହ ଜଡ଼ିତ ଥିବା ସ୍ତ୍ରୀ ଧନ, ଉପହାର ଓ ଗହଣା ଇତ୍ୟାଦି। କିନ୍ତୁ ଏସବୁ ସଂପତ୍ତି ଉପରେ ତାର ଅଧିକାରକୁ ନେଇ ବହୁ ରକମର ସର୍ତ୍ତ, ଆକଟ ଆଉ ଜଟିଳତା। ମୋଟାମୋଟି କଥାଟି ହେଲା ଯେ, ପୈତୃକ ସଂପତ୍ତି ଉପରେ ତାର ଅଧିକାର କେବଳ ପୁଅ (ଭାଇ) ନଥିଲେ। ମା'ର ସଂପତ୍ତି ଉପରେ ଉଭୟେ ପୁଅ ଓ ଝିଅ ଅଧିକାର ରହିଥିବା ବେଳେ ତା'ର ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ଉପରେ ହିଁ କେବଳ ଝିଅର ଅଧିକାର ଥାଏ। ଏକଥା ବି ନିର୍ଭର କରେ ଝିଅର ଚରିତ୍ର, ବ୍ୟବହାର ଓ ସେ କେଉଁ ପ୍ରଥାରେ ବିବାହ କରିଛି। ତା' ଇଛା ଅନୁରୂପ ବିବାହ ବା ଚରିତ୍ର ତଥା ବ୍ୟବହାର ସ୍ଥିରୀକୃତ ଆଦର୍ଶ ଅନୁରୂପ ନ ହେଲେ ଏ ସଂପତ୍ତିରୁ ସେ ହେବ ବଞ୍ଚିତ। ସ୍ୱାମୀର ସଂପତ୍ତି ଭୋଗିବ, ଯଦି ସେ ଆଦର୍ଶ ବୈଧବ୍ୟକୁ ବରିନେବ କିମ୍ବା ମୃତ ସ୍ୱାମୀର ଭାଇ କିମ୍ବା କୁଳ ଭିତରୁ କାହାକୁ ପତିରୂପେ ବରଣ କରିବ ଏବଂ ସେ ବି ଶ୍ୱଶୁରଙ୍କ ଅନୁମତି କ୍ରମେ। ଅସଲରେ ପୈତୃକ ସଂପତ୍ତି ଓ ସ୍ୱାମୀ ସଂପତ୍ତିର ମାଲିକ ସେ ନୁହେଁ। ତାର ସନ୍ତାନର ଓ ସେ କେବଳ ତାର ସଂରକ୍ଷକ ମାତ୍ର। ଏପରିକି ସ୍ତ୍ରୀ ଧନ, ସ୍ୱାମୀ ପିତୃପକ୍ଷ ଓ ବନ୍ଧୁବାନ୍ଧବଙ୍କ ତରଫରୁ ମିଳିଥିବା ଉପହାର ଉପରେ ତାର ଅଧିକାର ମଧ ସର୍ତ୍ତମୂଳକ। ମନୁ ଦୁଇପାଦ ଆଗକୁ ଯାଇ କହିଛନ୍ତି - ନାରୀ ଓ ଦାସ ସଂପତ୍ତି ରଖିପାରିବେ ନାହିଁ। ସେ ସଂପତ୍ତି ତାହାର ଯିଏ ଏମାନଙ୍କୁ ରଖିଥାଏ। ଅର୍ଥଶାସ୍ତ୍ର ବେଳର ସର୍ତ୍ତମୂଳକ

ସଂପତ୍ତି ଅଧିକାର ମନୁସ୍ମୃତିରେ ଗୋଟିଏ ରକମ ଶେଷ ହୋଇଯାଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅନ୍ତତଃ ଉଚ୍ଚଜାତି, ବର୍ଗ ଓ ଧନୀକ ଶ୍ରେଣୀର ମହିଳାମାନେ ଯେଉଁମାନେ ପ୍ରଥମ ଚାରିପ୍ରକାରେ ପ୍ରଥା ଅନୁରୂପ ବିବାହ କରୁଥିଲେ, ସେ ମହିଳାଙ୍କ ସଂପତ୍ତିଗତ ଅଧିକାର ପ୍ରାୟତଃ ଶେଷ ହୋଇଗଲା । ଅର୍ଥଶାସ୍ତ୍ରରେ ସ୍ତ୍ରୀଧନକୁ ନେଇ ଯେତିକି ବି ଅଧିକାର ଥିଲା ତାକୁ ବି ମନୁ ଅସ୍ୱୀକାର କରିଦେଲେ । ସ୍ତ୍ରୀଧନର ଖର୍ଚ୍ଚରେ ମଧ ସ୍ୱାମୀର ସମ୍ମତି ଆବଶ୍ୟକ ହେଲା । ମୃତ ସ୍ୱାମୀ କ୍ଷେତ୍ରରେ ସେ ସଂପତ୍ତି ଆଦର୍ଶ ବୈଧବ୍ୟ ନାଁରେ ପରିବାର (ଶ୍ୱଶୁର, ସ୍ୱାମୀର ଭାଇ) ହାତରେ ରହିଲା ନହେଲେ ନିଜ ସନ୍ତାନ ସମ୍ପତ୍ତିର ସଂରକ୍ଷକର ଭୂମିକାରେ ରହିଲା ନାରୀ । ପିତୃପକ୍ଷର ପୁଅ ନଥିଲେ ପୈତୃକ ସଂପତ୍ତିର ଅଧିକାର ନାରୀକୁ ଏଇଥିପାଇଁ ମିଳୁଥିଲା ଯଦି ତାର ପୁତ୍ର ସନ୍ତାନ ଥିବ ଯିଏ କି ତାର ଅଜାକୁ ମୁଖାଗ୍ନି ଦେବ । ଯଦି ସ୍ତ୍ରୀ ଲୋକଟି (ବିଧବାର) ପୁତ୍ର ନଥିବ ସେ ସଂପତ୍ତି ବାପର ଭାଇ ସହ ଭାଗ ହେବ । ବିଧବାଟି ତଥାକଥିତ ଆଦର୍ଶ ଅନୁରୂପ ବିବାହ କରିଥିବା ଜରୁରୀ ।

ମନୁଙ୍କ ବିଚାର ଅନୁରୂପ ଗୌଣ ମନେ କରାଯାଉଥିବା ଚାରିଟି ପ୍ରକାର ବିବାହ ବିଶେଷତଃ ଅସୁର, ରାକ୍ଷସ, ପୈଶାଚ ବିବାହର ଅର୍ଥ ନାରୀ ଆର୍ଥିକ ଅଧିକାରରୁ ବଞ୍ଚିତ ହେବ । ଏସବୁ ସତ୍ତ୍ୱେ ତଥାକଥିତ ତଳ ଜାତି ବା ବର୍ଗରେ ଏ ପରିବାର ବ୍ୟବସ୍ଥା ସବୁ ଜାରି ରହିଲା । ଆଜି ବି ଜାରି ରହିଛି । ବିଶେଷତଃ ଆଦିବାସୀ ଓ ଦଳିତଙ୍କ ମଧ୍ୟରେ । ଆଦର୍ଶ ବିବାହ ଆଦର୍ଶ ନାରୀତ୍ୱ ଓ ଆଦର୍ଶ ବୈଧବ୍ୟ ନାଆଁରେ ଉଚ୍ଚ ଜାତିର ନାରୀମାନଙ୍କଠୁ ଅପହରଣ କରିନିଆଗଲା ସ୍ୱାଧୀନତା ଓ ଆର୍ଥିକ ଅଧିକାର । ଏ ତଥାକଥିତ ଆଦର୍ଶର ପ୍ରଚାର ଓ ପ୍ରସାର ଏତେ ବେଶି ଯେ, ତାର ପ୍ରଭାବ ଧୀରେ ଧୀରେ ଆଦିବାସୀ, ଦଳିତମାନଙ୍କ ଉପରେ ବି ପଡ଼ିବାକୁ ଲାଗିଲା । ନାରୀର ସମ୍ପତ୍ତିଗତ ଅଧିକାରକୁ ଆଜି ଆଇନଗତ ମାନ୍ୟତା ମିଳିସାରିଛି ହେଲେ ତାକୁ ଆମର ସମାଜ ଏଯାଏଁ ଗ୍ରହଣ କରିବାର ମାନସିକତା ପୋଷଣ କରିପାରିନାହିଁ ।

## ସଂପତ୍ତିର ଉତ୍ତରାଧିକାର

ଭାରତୀୟ ସମାଜରେ ଏକଦା ୧ ୨ ପ୍ରକାର ପୁତ୍ର ପ୍ରାପ୍ତିର ପ୍ରଥା ରହିଛି । ଅର୍ଥଶାସ୍ତ୍ର ଓ ମନୁ ଶ୍ରୁତିରେ ୧ ୨ ଟି ପ୍ରଥା ମଧ୍ୟରୁ ନିଜ ଔରସ ଜାତ ସନ୍ତାନକୁ ଉଚ୍ଚସମ୍ମାନ ଓ ମାନ୍ୟତା ଦିଆଯାଇଛି । ପରିବାରର ସଂପତ୍ତି କେମିତି ପୁରୁଷ ହାତରେ ରହିବ ଓ ପୀଢ଼ିପୀଢ଼ି ଧରି ପୁରୁଷରୁ ପୁରୁଷ ହାତକୁ ଯିବ ଏବଂ ସେଥିରେ ଏକ ମାଧ୍ୟମ ଭାବରେ ନାରୀର କାମ ହେଲା ପୁତ୍ର ଜନ୍ମ ଓ ପାଳନ । ସେ ପୁତ୍ର ହୋଇପାରେ ଔରସଜାତ ଅବା ପାଳିତ । ନାରୀଟି ସ୍ୱତନ୍ତ୍ର ରୂପେ ଜଣେ ମଣିଷ ଭାବରେ ସବୁ ରକମର ଧାର୍ମିକ ଓ ସାମାଜିକ ଗତିବିଧି ପାଳନ କରିପାରିବ ନାହିଁ । ଯେମିତିକି ମୁଖାଗ୍ନି, ଶ୍ରାଦ୍ଧ ଓ ପିଣ୍ଡଦାନ । ତା ବାଦ୍ ଯାହା ଧାର୍ମିକ

ଗତିବିଧି ରହିଛି ସେସବୁ ମଧ୍ୟ ସ୍ୱାମୀ, ଭ୍ରାତା, ସନ୍ତାନ ଏବଂ ସାମଗ୍ରିକ ଭାବରେ ପରିବାରର ମଙ୍ଗଳକାମନା ପାଇଁ ନିବେଦିତ। ଯାବତୀୟ ବ୍ରତ ଓ ଉପବାସ ପୁରୁଷ ପାଇଁ। ଏ ସାରା ପ୍ରକ୍ରିୟା ପିତୃସତ୍ତାତ୍ମକ ବ୍ୟବସ୍ଥାକୁ ମାନ୍ୟତା ପ୍ରଦାନ କରି ତାକୁ ଆହୁରି ସୁଦୃଢ଼ କରିଛି। ନାରୀ ନିଜେ ପୁରୁଷର ସଂପତ୍ତି ଏବଂ ପୁରୁଷର ସଂପତ୍ତି ସୁରକ୍ଷାରେ ତାର ଜୀବନ ବିତାଏ ଯେଉଁ ସଂପତ୍ତି ଉପରେ ତାର ଅଧିକାର ସର୍ତ୍ତମୂଳକ। ସଂପତ୍ତି ଉପରେ ପୁରୁଷର ଏକାଧିକାରକୁ ଏତେ ବଳ ଦିଆଗଲା ଯେ ନାରୀର ସୁରକ୍ଷା ଓ ସତୀତ୍ୱ ନାଆଁରେ ବାଲ୍ୟ ବିବାହ ପ୍ରଥା ଗୁରୁତ୍ୱ ପାଇଲା। ନାରୀର ସତୀତ୍ୱକୁ ଜଗିବା ପାଇଁ, ଔରସରୁ ଜାତ ସନ୍ତାନ ପ୍ରାପ୍ତି ପାଇଁ ତାକୁ ପିତା, ଭାଇ ଓ ସ୍ୱାମୀର ଛତ୍ରଛାୟାରେ ରହିବାକୁ ବାଧ୍ୟ କରାଗଲା। ସତୀତ୍ୱ, ସ୍ୱର୍ଗପ୍ରାପ୍ତି, ଭାଗ୍ୟ, ପୁର୍ନଜନ୍ମ ଉପରେ ଗୁରୁତ୍ୱ ଦିଆଗଲା । ବିବାହ ନାରୀ ପୁରୁଷର ଇଚ୍ଛାରେ ନୁହେଁ, ବରଂ ପୂର୍ବଜନ୍ମରେ ଫଳଶ୍ରୁତି ବୋଲି ଏକ ଧାର୍ମିକ ପ୍ରତିଷ୍ଠା ନିର୍ମିତ ହେଲା। 'ଅର୍ଥଶାସ୍ତ୍ର' ବେଳେ ବର୍ଣ୍ଣ ବ୍ୟବସ୍ଥା କଠୋର ନଥିଲା, କିନ୍ତୁ ମନୁଙ୍କ ସମୟ ଓ ମନୁସ୍ମୃତିରେ ବର୍ଣ୍ଣଶୁଦ୍ଧି ଓ ବ୍ରାହ୍ମଣ୍ୟପ୍ରାଧାନ୍ୟ ମଜବୁତ୍ ହେଲା। ସଂକ୍ଷେପରେ କହିଲେ, ମନୁଙ୍କ ବ୍ରାହ୍ମଣବାଦୀ ବ୍ୟବସ୍ଥା ହିଁ ନାରୀର ସ୍ଥିତି ଦୟନୀୟ କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଛି।

ଅନେକ ଐତିହାସିକ ସଂଘର୍ଷ, ସଂଘର୍ଷରୁ ବ୍ୟବସ୍ଥାର ପରିବର୍ତ୍ତନ ଓ ବିଭିନ୍ନ ଆଇନଗତ ପରିବର୍ତ୍ତନ ହେତୁ ନାରୀର ସ୍ଥିତିରେ ଆଜି ଅନେକଟା ପରିବର୍ତ୍ତନ ଆସିଛି। ନାରୀ ସ୍ୱାଧୀନତାକୁ ବଳ ଦେବା ପାଇଁ ସଂପତ୍ତିଗତ ଅଧିକାରରେ ଅନେକ ପରିବର୍ତ୍ତନ ଅଣାଯାଇଛି। କିନ୍ତୁ ଧର୍ମ, ପରଂପରା, ଶାସ୍ତ୍ର ନାଁରେ ନିର୍ମିତ ପୁରୁଷ ମାନସିକତାରୁ ଆମ ଭିତରୁ କେତେଜଣ ପୁରୁଷ / ନାରୀ ଓ ସାମଗ୍ରିକ ଭାବରେ ସମାଜ ମୁକ୍ତ ହୋଇଛି ସେ ପ୍ରଶ୍ନ ଆଜି ବି ପ୍ରାସଙ୍ଗିକ। ସାମାଜିକ-ରାଜନୈତିକ-ସାଂସ୍କୃତିକ କ୍ଷେତ୍ରରେ କଳା, ସାହିତ୍ୟ, କ୍ରୀଡ଼ା ଓ ବ୍ୟବସାୟ ଆଦିର ପ୍ରତିଟି କ୍ଷେତ୍ରରେ ପ୍ରତିଷ୍ଠିତ ସ୍ୱଳ୍ପ ସଂଖ୍ୟକ ନାରୀଙ୍କୁ ଛାଡ଼ିଦେଲେ ସାମଗ୍ରିକ ଭାବେ ମହିଳା ନା ପାଇସାରିଛି ସାମାଜିକ-ଆର୍ଥିକ ସ୍ୱାଧୀନତା ନା ନିଜର ଦେହ ଉପରେ ଅଧିକାର। ଶାରୀରିକ ଓ ଆର୍ଥିକ ଅସୁରକ୍ଷାରୁ ମୁକ୍ତି ଏବଂ ଭୋଗ୍ୟବସ୍ତୁ ରୂପେ ନାରୀର ବ୍ୟବହାର ବନ୍ଦ ପାଇଁ କେତୋଟି ପ୍ରଗତିଶୀଳ ଆଇନ ଯଥେଷ୍ଟ ନୁହେଁ। ଦରକାର ହେଉଛି ନାରୀ-ପୁରୁଷ ଭିତରେ ଏକ ସ୍ୱାଭାବିକ ସଂପର୍କ ତାକୁ ସମତୁଲ୍ୟ ମଣିବା। ଭଲମନ୍ଦ, ଦୋଷ, ଦୁର୍ବଳତା ପୁରୁଷର ଯେମିତି ରହିଛି ନାରୀର ବି ସେମିତି। ସେ ପୂଜ୍ୟ ନୁହେଁ କି ନୀଚ ନୁହେଁ ମାଲିକ ନୁହେଁ କି ଦାସ ନୁହେଁ। ଅସଲରେ ନାରୀ-ପୁରୁଷ ତ ଦୂରର କଥା ପୁରୁଷ-ପୁରୁଷ / ମଣିଷ-ମଣିଷ ଭିତରେ ସ୍ୱାଭାବିକ ସଂପର୍କ ପ୍ରତିଷ୍ଠିତ ହେଉ। ସେଥିପାଇଁ ପରିବାରକୁ ପୁରୁଷବାଦ / ସମାଜକୁ ଜାତିବାଦୀ, ବ୍ରାହ୍ମଣବାଦ, ଧାର୍ମିକ ମୌଳବାଦ,

ସାମନ୍ତବାଦ, ରାଷ୍ଟ୍ରକୁ ପୁଞ୍ଜିବାଦ, ପୃଥିବୀକୁ ସାମ୍ରାଜ୍ୟବାଦର ନିଷ୍କୃତି ଦରକାର। ସେ ଆଲୋଚନା ଆଉ କେବେ।

(ମୁଁ ଏଠି ବିନମ୍ରତାର ସହ କହିରଖେ, ଲେଖାର ଶୀର୍ଷକ ପରିପ୍ରେକ୍ଷୀରେ ଏହା ଏକ ଅସଂପୂର୍ଣ୍ଣ ଲେଖା। )

ସହାୟକ ଗ୍ରନ୍ଥ ଲେଖା -

(୧) ଦି ଅର୍ଥଶାସ୍ତ୍ର ଅଫ୍ କୌଟିଲ୍ୟ, ଟି. ଗଣପତି ଶାସ୍ତ୍ରୀ ।

(୨) ଦି ହରିବଂଶ, ଦି ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲ୍, ୧୮୯୩, କଲିକତା ।

(୩) ଅଗ୍ରୱାଲ୍, ଭି.ଏଜ. ନୋନା ଟୁ ପାଣିନୀ, ୧୯୬୩ ।

(୪) ମୁଖାର୍ଜୀ, ପ୍ରଭାତି, ଡି.ଫିଲ୍ ଥେସିସ୍, ଅନ୍ ଦି ଷ୍ଟାଟସ୍ ଅଫ୍ ୱିମେନ୍ ଇନ୍ ଦି ଅର୍ଥଶାସ୍ତ୍ର ଏଣ୍ଡ ମନୁ ସ୍ମୃତି, ୧୯୫୭ ।

(୫) ଇମେଜ୍ ଅଫ୍ ୱିମେନ୍ ଇନ୍ ହିନ୍ଦୁଇଜମ୍ ୧୯୭୩ (ପେପର ବାଏ ଆଇ. ସି. ଏସ୍ ଆର୍ ଫର ଦି ନେସନାଲ କମିଟି ଅନ୍ନ ଷ୍ଟାଟସ୍ ଅଫ୍ ୱିମେନ୍ ।

(୬) ହିନ୍ଦୁ ୱିମେନ୍, ନର୍ମାଟିଭ ମୋଡେଲ୍ - ପ୍ରଭାତ ମୁଖାର୍ଜି, ଓରିଏଣ୍ଟ ଲଙ୍ଗମେନ୍, ୧୯୯୪ ।



# ନାରୀ ମୁକ୍ତି : କିଛି ବୀଜ ପ୍ରଶ୍ନ

ଜୈବିକ ଧରାତଳରେ ନାରୀର ଏକ ମାତ୍ର ବିକଳ୍ପ ହେଲା ପୁରୁଷ । ସେଥିପାଇଁ ନାରୀ-ଜାଗୃତି, ମୁକ୍ତି କିମ୍ବା ପ୍ରଗତିର ଦାବୀ ଯେତେବେଳେ ବି ଏକ ଆନ୍ଦୋଳନର ରୂପ ନେଇଛି ସେତବେଳେ ତାହା ପୁରୁଷ ବିରୋଧୀ ମନେ ହେଉଛି । ତେବେ ନାରୀ-ପୁରୁଷର ଭାବବୋଧରେ ଏକ ନୈସର୍ଗିକ ତଫାତ ବା ଫରକ ରହିଛି କି ? ଏଇ ଫରକ ସ୍ୱଭାବଗତ ନା ସଂସ୍କାରଗତ ? ଏ ଏକ ଜଟିଳ ପ୍ରଶ୍ନ ଯାର କୌଣସି ନିର୍ଣ୍ଣାୟକ ଉତ୍ତର ଏ ଯାଏଁ ଦିଆଯାଇପାରିନି ।

ନାରୀ ପକ୍ଷଧର ମାନେ କୁହନ୍ତି - "ନାରୀମୁକ୍ତି କିମ୍ବା ପ୍ରଗତିର ସାର୍ଥକତା, ପୁରୁଷ-ବିରୋଧୀ ଲଢ଼େଇରେ ନାହିଁ । ଦୋଷପୂର୍ଣ୍ଣ ବ୍ୟବସ୍ଥା, ରଢ଼ି ଧାର୍ମିକ ମାନ୍ୟତା, ଦୋହରା ମୂଲ୍ୟବୋଧ, ମୂଲ୍ୟପଦ୍ଧତି, ଧର୍ମ ପ୍ରାଣ ସାଂସ୍କୃତିକ ମାନ୍ୟତାରେ ଥିବା ନାରୀ ବିରୋଧୀ ତତ୍ତ୍ୱ ଓ ଭାବନା ବିରୋଧରେ ଲଢ଼େଇ ହେଲା ଅସଲ । ଏକଥା ଯଥାର୍ଥ ମାତ୍ର ଯଥେଷ୍ଟ ନୁହେଁ ।

ଏଠି ଆଉ ଏକ ପ୍ରଶ୍ନ ଆପଣା ଛାଏଁ ମନକୁ ଆସିଯାଏ । ନାରୀର ପ୍ରଗତି, ପୁରୁଷର ସହଯୋଗରେ ସମ୍ଭବ କି ? ଯଦି ହଁ ତେବେ ବର୍ତ୍ତମାନର ପିତୃତାନ୍ତ୍ରିକ ସମାଜରେ ସମ୍ଭବ ନା ତା ବଦଳରେ ମାତୃସତ୍ତାତ୍ମକ ସମାଜର ଆବଶ୍ୟକତା ପଡ଼ିବ । ପ୍ରଶ୍ନ ହେଲା- ନାରୀ ଓ ପୁରୁଷ ଉଭୟ ପିତୃସତ୍ତାତ୍ମକ ସମାଜରେ ନା ମାତୃସତ୍ତାତ୍ମକ ସମାଜରେ ସର୍ବୋଚ୍ଚ ବା ଇଷ୍ଟତମ ମାନବୀୟ ସାର୍ଥକତା ପ୍ରାପ୍ତ କରି ପାରିବେ । ଏ କଥା ସ୍ପଷ୍ଟ ଯେ ଉଭୟଙ୍କୁ ମିଳିମିଶି ରହିବାକୁ ହେବ । ସେମାନଙ୍କୁ ଅଲଗା ଅଲଗା ସାମାଜିକ ସମୁଦାୟ କରି ରଖାଯାଇ ପାରିବ ନାହିଁ । ଅଲଗା ଅଲଗା ଦେଶ କି ଭୂଖଣ୍ଡ କରି ସେମାନଙ୍କୁ ଅଲଗା ରଖା ଯିବା ଭଳି ବିକଳ୍ପ କେହି ଏଯାଏଁ ଅନ୍ତତଃ ଚିନ୍ତା କରିନାହାଁନ୍ତି । ପୁରୁଣା ପୃଥିବୀରେ 'ଆମାଜୋନ'ରେ ଏକ ସ୍ତ୍ରୀ ପ୍ରଧାନ ସମାଜ ଥିଲା ଯେଉଁଠି ନୂଆ ପୁରୁଷଙ୍କ ଆଗମନ ନିଷିଦ୍ଧ ଥିଲା । ହେଲେ ପୁରୁଷ ସେଠି ବି ଥିଲେ କିନ୍ତୁ କେବଳ ସନ୍ତାନ ଜନ୍ମରେ

ସହଯୋଗ ନିମନ୍ତେ । ଏଭଳି ଏକ ସମାଜର ନିର୍ମାଣ ସଂପର୍କରେ କେବେ କେମିତି ଫେମିନିଷ୍ଟ ଲେଖକ ମାନେ ଲେଖିଛନ୍ତି ମାତ୍ର ବ୍ୟବହାରିକ ଦୃଷ୍ଟିରୁ ସେ ପ୍ରକାର ଚେଷ୍ଟା କୋଉଠି ହେଉଛି କି ନା ଆମେ ଜାଣୁନା । ଅବଶ୍ୟ ଆମାଜୋନ ଭଳି ଏକଛତ୍ରତା ନ ଥିବା ମାତୃସତ୍ତାତ୍ମକ ବ୍ୟବସ୍ଥା ବହୁ ଜାଗାରେ ଥିଲା, କିଛି ଅଂଚଳରେ ଏବେ ବି ଅଛି । ଆମ ନିଜ ଦେଶର କେରଳ, ମାଙ୍ଗଲୋର ଏବଂ ଉତ୍ତରପୂର୍ବରେ ଏଭଳି ଅନେକ ସମୁଦାୟ ରହିଛନ୍ତି ।

ପ୍ରଶ୍ନ ଉଠୁଛି ମାତୃକୈନ୍ଦ୍ରିକ ସମାଜ ନା ପିତୃ କୈନ୍ଦ୍ରିକ ସମାଜ ଭିତରୁ କୋଉଟା ଶ୍ରେଷ୍ଠ କିମ୍ବା ତାଠୁ ନାରୀ-ପୁରୁଷ ପରସ୍ପରର ଭାଗିଦାରୀ ଥିବା ଏକ ସମତାମୂଳକ ବ୍ୟବସ୍ଥା ଭଲ ? ଏ ପ୍ରଶ୍ନର ଉତ୍ତର ପୂର୍ବରୁ ଆଉ ଏକ ଆଲୋଚନା ଆବଶ୍ୟକ । ପିତୃକୈନ୍ଦ୍ରିକ ଓ ମାତୃକୈନ୍ଦ୍ରିକ ସମାଜ ବ୍ୟବସ୍ଥା ଭିତରେ କି କି ଫରକ ରହିଛି ? ରହିଛି ନା ନାହିଁ ? ଏଇ ପ୍ରଶ୍ନକୁ ଆଉ ଟିକେ ସରଳ କରିବା । କ୍ଷମତାରେ ଆସିଲା ପରେ ନାରୀ ବି ଯେଉଁ ଅନାଚାର/ଅନ୍ୟାୟ କରୁଛି ତାହା ପିତୃତାନ୍ତ୍ରିକ କ୍ଷମତା ତନ୍ତ୍ରର ମୌଳିକ ଗୁଣ ହେତୁ ନା କ୍ଷମତା ପ୍ରାପ୍ତି କାରଣରୁ ?

ସ୍ତ୍ରୀଲୋକଙ୍କ ଉପରେ ଆଉ ଏକ ଆକ୍ଷେପ ଆସେ । ସେ ହେଲା - ନାରୀ ହିଁ ନାରୀର ସବୁଠୁ ବଡ଼ ଶତ୍ରୁ । ଝିଅ ଓ ବୋହୂ ଉପରେ ନିଷ୍ଠୁର ମା ଓ ଶାଶୁଙ୍କ ଅମାନବୀୟ ଅତ୍ୟାଚାର ଓ ସଂବେଦନହୀନ ତଥା ଈର୍ଷାଳୁ ବ୍ୟବହାରକୁ ଏହାର ପ୍ରମାଣ ଭାବେ ଚର୍ଚ୍ଚା କରାଯାଏ । ଏମିତି ହେଉଛି, ହୋଇ ଆସୁଛି । ଏ କଥାକୁ ଆମେ ଅସ୍ୱୀକାର କରିପାରିବା ନାହିଁ । ଖୋଦ୍ ବାପା, ମା ନିଜର ଉପାର୍ଜନକ୍ଷମ ଝିଅମାନଂକୁ ଶୋଷଣ କରିବାର ଅନେକ ନଜିର ରହିଛି । ସେଥିରେ ମାଆର ଭୂମିକା ବାପ ତୁଳନାରେ କିଛି କମ୍ ନ ଥାଏ । ଭାରତୀୟ ସମାଜର ଏହା ଏକ ନିଷ୍ଠୁର ସତ୍ୟ । ଏହି ଘରୋଇ ଅତ୍ୟାଚାର କଣ କ୍ଷମତା ସହ ଜଡ଼ିତ ନୁହେଁ ? ପରିବାର ବା ଘର ବି ଏକ କ୍ଷମତାକେନ୍ଦ୍ର । ସେଠି ସତ୍ତା / କ୍ଷମତା କା ହାତରେ ଥାଏ, କିଏ ତାକୁ କାର୍ଯ୍ୟକାରୀ କରେ, କି ଉଦ୍ଦେଶ୍ୟରେ କରେ ? ସେଥିରେ ଝିଅ, ମା, ଶାଶୁ , ଭଉଣୀ, ସ୍ତ୍ରୀ କି ଭୂମିକା ନିଏ ? ଏହାର ତର୍ଜମା ଆଉ କେବେ ।

ଆଉ ଏକ ଚିନ୍ତାର ବିଷୟ ହେଲାଯେ "ଆମାଜୋନ ସମାଜ" କେରଳ ଆଦି ମାତତୃବଂଶାନୁଗତ ସମାଜରୁ କଣ ଏଇଥିପାଇଁ ଭିନ୍ନ ଯେ ଗୋଟିଏରେ ନାରୀର ନିରଙ୍କୁଶ କ୍ଷମତା ଥିବା ବେଳେ ଅନ୍ୟଟିରେ ଏକଲୌକିକ ଏକଛତ୍ରତା ନାହିଁ ? କଣ ସେ କାରଣରୁ ନିରଙ୍କୁଶ କ୍ଷମତା ଥିବା ସମାଜରେ ଅତ୍ୟାଚାର ଓ ଶୋଷଣ ବି ନିରଙ୍କୁଶ ଓ ଏକଲୌକିକ ଏକଛତ୍ରତା ନ ଥିବା ଯୋଗୁଁ କେରଳର ସମାଜରେ ଅନାଚାରର ମାତ୍ରା କମ୍ । ଗବେଷଣାର ଆଉ ଏକ ବିଷୟ ହେଲା - ମାତୃବଂଶାନୁଗତ ସମାଜର ଇତିହାସ, ପିତୃବଂଶାନୁଗତ ସମାଜର ଇତିହାସରୁ କେଉଁସବୁ ଦୃଷ୍ଟିରୁ ଭିନ୍ନ । ଏହାରି ଉପରେ ଗବେଷଣା ଚାଲିଛି ।

କୌଣସି ପ୍ରାମାଣିକ ନିଷ୍କର୍ଷ ବାହାରି ନାହିଁ । ତଥାପି କେରଳର ଉଦାହରଣ ନେଲେ ଦୁଇ ତିନିଟି କଥା ନଜରକୁ ଆସେ । ଭାରତର ଅନ୍ୟରାଜ୍ୟ ତୁଳନାରେ ପ୍ରାଥମିକ ଶିକ୍ଷା ଏବଂ ଚିକିତ୍ସା ଉଭୟ କ୍ଷେତ୍ରରେ ଏଇ ରାଜ୍ୟର ସ୍ତର ଖୁବ୍ ଉଚ୍ଚରେ । ଜନ ସଂଖ୍ୟା ବୃଦ୍ଧି ଓ ଶିଶୁ ମୃତ୍ୟୁ ହାର ଏଠି ଅନ୍ୟ ରାଜ୍ୟଠୁ କମ । ସେ ଦୃଷ୍ଟିରୁ ଏ କଥା ମନ କୁ ଆସେ ଯେ ମହିଳାଙ୍କ ଭିତରେ ରାଜନୈତିକ ସଚେତନତା ଏବଂ ଶିକ୍ଷା ଅଧିକ ହୋଇଥିବା ହେତୁ ଜନସଂଖ୍ୟା ବୃଦ୍ଧି ଓ ଜନ ଶିକ୍ଷା ତଥା ସ୍ୱାସ୍ଥ୍ୟ ଉପରେ ଏହାର ହିତକାରୀ ପ୍ରଭାବ ପଡୁଛି । କିନ୍ତୁ ଏକଥା କୁହାଯାଇ ପାରିବ ନାହିଁ ଯେ ଏହାର କାରଣ ପଛରେ କେରଳର ମାତୃବଂଶାନୁଗତ ବ୍ୟବସ୍ଥା ରହିଛି । କେରଳୀ ସମାଜର ଖୁବ୍ କମ୍ ଲୋକ ମାତୃବଂଶାନୁଗତ, ପୁରା ସମାଜ ନୁହଁ । ଏମିତି ମୋଟେ କୁହାଯାଇ ପାରିବ ନାହିଁ ଯେ ଅଳ୍ପ କିଛି ନାରୀଙ୍କୁ ଆର୍ଥିକ ଉତ୍ତରାଧିକାର ମିଳିଗଲେ ବ୍ୟାପକ ରୂପରେ ନାରୀକୁ କ୍ଷମତାପନ୍ନ କରାଯାଇପାରିବ। ଆମେ ଆମର ପ୍ରଶ୍ନକୁ ଆଉ ଏକ ପରିପ୍ରେକ୍ଷୀରେ ଥୋଇକି ଦେଖିବା ।

ଆମେ ଜାଣୁ ଯେ ପ୍ରତିଟି ସମାଜ ଏବଂ ସବୁ ଯୁଗରେ ପରିବାରର କଲ୍ୟାଣକାରୀ କାମର ଦାୟିତ୍ୱ ନାରୀ ବା ସ୍ତ୍ରୀ ଉପରେ ରହି ଆସିଛି । ପରିବାରରେ କେହି ରୋଗୀଣା ହେଲେ ସାରା ବୋଝ ଗୃହିଣୀ ଉପରେ ପଡ଼େ । କିନ୍ତୁ ସେ ଯେବେ ରୋଗରେ ପଡ଼େ ତାର ଦେଖା ଶୁଣା ପାଇଁ ପରିବାରର ଅନ୍ୟ ମହିଳା ବା ସଂପର୍କୀୟର ମହିଳାକୁ ଖୋଜା ହୁଏ । ଆମେ ରୋଗରେ ପଡ଼ିଥିଲେ ଆମର ଅନ୍ତଃକରଣରେ ବାପ ଅପେକ୍ଷା ବେଶି ମାଆର ଉପସ୍ଥିତି ଚାହୁଁ । ରୋଗୀର ଦେଖାଶୁଣା, ସେବା ଯତ୍ନ ଦିଗରେ ପୁରୁଷ ମାନେ ସ୍ୱାଭାବିକ ଭାବରେ ସକ୍ରିୟ ନ ହେବାର କାରଣ କଣ ? କାଁ ଭାଁ ବ୍ୟତିକ୍ରମ ଅଛନ୍ତି ନିଶ୍ଚୟ । କିନ୍ତୁ ପୁରୁଷ ଭିତରେ ସେବାର ସ୍ୱାଭାବିକ ପରଂପରା କାହିଁକି ନାହିଁ ? ଏଠି ଆସୁଛି ସନ୍ତାନ ଗଢ଼ିବାର କଳା ବା ପରଂପରାର କଥା । ଆମେ ପୁଅ ପିଲା ଓ ଝିଅ ପିଲାକୁ ଛୋଟ ଦିନରୁ ଅଲଗା ଅଲଗା କରି ଗଢୁଛୁ । ଏବେ ଅବଶ୍ୟ ସହରୀ ମଧ୍ୟବର୍ଗ ଭିତରେ କିଛି ପୁରୁଷ ମହିଳାଙ୍କ କାମରେ ସହଯୋଗ କରିବାକୁ ଆରମ୍ଭ କଲେଣି । ଏବଂ ପୁରୁଣା ପରଂପରା (ଘରୋଇ କାମ ନ କରିବାର)କୁ ଭାଙ୍ଗୁଛନ୍ତି । ତା ପଛରେ ହୁଏତ ଯୌଥ ପରିବାରର ସଂସ୍କାର ଭାଙ୍ଗିବା ତଥା ଆର୍ଥିକ ଆବଶ୍ୟକତା ଦୃଷ୍ଟିରୁ ମହିଳାକୁ ଚାକିରିରେ ଯୋଗ ଦେବାକୁ ପଡୁଥିବା ଭଳି ଘଟଣା ରହିଛି । ନାରୀର କଲ୍ୟାଣକାରୀ କାମ ଯଥା - ଲାଳନ ପୋଷଣ, ରୋଗୀ ସେବା, ଯତ୍ନ , ଘରସଂଖୁଳିବା ଆଦି ଦାୟିତ୍ୱ ନେଉଥିବା ହେତୁ ଆମେ କଣ ଏ ନିଷ୍କର୍ଷରେ ପହଞ୍ଚି ପାରିବା ଯେ ମାତୃସତ୍ତାତ୍ମକ ସମାଜ ସ୍ଥାପିତ ହେଲେ କ୍ଷମତାର ପ୍ରବୃତ୍ତି ସ୍ୱୟଂ କଲ୍ୟାଣକାରୀ ହୋଇଯିବ । ପ୍ରାମାଣିକ ଭାବରେ ଏ ସଂପର୍କରେ ନିର୍ଦ୍ଦିଷ୍ଟ କରି କିଛି କହି ହେବ ନାହିଁ ।

ମହିଳା ଓ ପର୍ଯ୍ୟାବରଣ /ପରିବେଶର ଅନ୍ତଃସଂବନ୍ଧ କଥା ବି ଆଲୋଚନା କୁ ଆସେ । ଭାରତୀୟ ସଂସ୍କୃତିରେ ନାରୀ କୁ "ପ୍ରକୃତି" କୁହାଯାଇଛି । ଚିପ୍‌କୋ,ଅପ୍ପିକୋ ଆଦି ଆନ୍ଦୋଳନ ସହ ଜଡିତ ସଂଗଠନର କର୍ମକର୍ତ୍ତାଙ୍କ ବକ୍ତବ୍ୟ ଅନୁସାରେ -"ପୁରୁଷ' ତୁଳନାରେ ନାରୀ ନିଜ ଆଖ ପାଖର ପରିବେଶକୁ ବେଶି ସଂରକ୍ଷିତ କରି ରଖିବାକୁ ଚାହେଁ ଓ ସେଥିପାଇଁ ଯତ୍ନଶୀଳ ହୁଏ । ଗାଁରେ ଯେବେ ପ୍ରଶ୍ନ ହୁଏ କି ଗଛ ଲଗାଇବା ତେବେ ପୁରୁଷ ମାନେ ଏଭଳି ଗଛର ନାଁ ଧରନ୍ତି ଯାହାକୁ ବିକ୍ରି କରି ଅର୍ଥ ଉପାର୍ଜନ କରିହେବ । ନାରୀ ମାନେ ଏଭଳି ଗଛର ନାଁ ଧରନ୍ତି ଯଦ୍ଦ୍ୱାରା ଚାରା, ଖାଦ୍ୟ, ଓ ଶାଗ , ଓ ଜାଳେଣି ମିଳିବ" । କାରଣ ଏସବୁ ସଂଗ୍ରହ ପାଇଁ ମହିଳାକୁ ହିଁ ଅଣ୍ଟାଭଙ୍ଗା ପରିଶ୍ରମ କରିବାକୁ ପଡ଼ିଥାଏ । ମାଇଲ ମାଇଲ ଦୌଡ଼ିବାକୁ ପଡ଼ିଥାଏ । ଏଥିପାଇଁ ସେମାନେ ଏହାକୁ ପ୍ରାଥମିକତା ଦେବା ସ୍ୱାଭାବିକ ଓ ତର୍କସଂଗତ ମନେ ହୁଏ । ଠିକ୍ ସେମିତି ନିଜ ଗାଁ ମାଟି, ଜଙ୍ଗଲର ହକ୍ ଓ ସୁରକ୍ଷା ପାଇଁ ନର୍ମଦା ଓ କାଶିପୁରରେ ଚାଲିଥିବା ଆନ୍ଦୋଳନରେ ମଧ୍ୟ ପୁରୁଷ ତୁଳନାରେ ନାରୀମାନଂକ ପ୍ରତିବଦ୍ଧତା ବେଶି । କାରଣ ପାଣି ଓ କାଠ ତଥା ପରିବାରର ଆର୍ଥିକ ଦାୟିତ୍ୱ ନେବାରେ ମହିଳାଙ୍କ ଭାଗିଦାରୀ ଯୋଗୁଁ ନାରୀ ପୁରୁଷ ସଂପର୍କରେ ସମ୍ଭବ ହେଇ ରହିଥିବା କିଛି ସମତା ଓ ସ୍ୱାଧୀନତା ବିସ୍ଥାପନ ପର ନୂଆ ପରିସ୍ଥିତିରେ ନାରୀଙ୍କୁ ହିଁ ହରାଇବାକୁ ପଡ଼ିବ ।

ଏ ସବୁ କଥାରୁ କିଛି ଲୋକ ନିଷ୍କର୍ଷ ବାହାର କରନ୍ତି ଯେ - ଯଦି ସରକାର ତରଫରୁ ସ୍ଥାନୀୟ ଜଙ୍ଗଲ ଓ ପରିବେଶର ସଂରକ୍ଷଣ ଓ ପରିଚାଳନାର ଦାୟିତ୍ୱ ମହିଳା ମାନଙ୍କୁ ଦିଆଯାଏ ତେବେ ତାର ସୁରକ୍ଷା ଭଲ ଭାବରେ ହେବ । କିନ୍ତୁ ଆମେ କଣ କହିପାରିବା ଯେ ପରିବେଶର ସୁରକ୍ଷା ଓ ରକ୍ଷଣାବେକ୍ଷଣ ନାରୀର ସ୍ୱାଭାବିକ ରୁଚି ବା ଜିନ୍ ଗତ ଗୁଣ ? ପ୍ରଶ୍ନ ଆସିବ ଲୈଙ୍ଗିକ ଭିନ୍ନତା ସହ ରୁଚିର ଭିନ୍ନତା ଜଡ଼ିତ କି ? ରୁଚି ଲିଙ୍ଗ ନିରପେକ୍ଷ ନୁହେଁ କି ? ରୁଚି ଲିଙ୍ଗଗତ ନା ସଂସ୍କାରଗତ ? ଭାରତରେ ନାରୀ-ପୁରୁଷ ଭିତରେ ଦେଖିବାକୁ ମିଳୁଥିବା ରୁଚିର ଭିନ୍ନତାର କାରଣ କଣ ଏଠିକାର ମୁଦ୍ରା କେନ୍ଦ୍ରିକ ଆର୍ଥିକ ବ୍ୟବସ୍ଥାରେ ନାରୀର ଗୌଣ ଭୂମିକା ଯୋଗୁଁ ? ଅନେକ ରୁଚିଗତ ଫରକ କଣ ଏଇ ଆର୍ଥିକ ସ୍ୱତନ୍ତତାର ଅଭାବରୁ ନୁହେଁ କି ? ବିକଶିତ ଦେଶ ଗୁଡ଼ିକରେ ନାରୀ ଓ ପୁରୁଷ ଉଭୟ ମୁଦ୍ରାକେନ୍ଦ୍ରିକ ଅର୍ଥବ୍ୟବସ୍ଥାରେ ପ୍ରାୟତଃ ସମାନ ଅଂଶୀଦାର ଅଟନ୍ତି । ଉଭୟେ ସେ ପ୍ରକ୍ରିୟାରେ ଜଡ଼ିତ ହୋଇ ସମାନ ଭାବରେ ଲାଭାନ୍ୱିତ ହେଉଛନ୍ତି । ସେଠି ପରିବେଶ ଭଳି ପ୍ରସଙ୍ଗରେ ଉଭୟେ ସମାନ ରକମର ପ୍ରତିବଦ୍ଧତା ଦେଖାଉଛନ୍ତି । ସେ ନେଇ ଥିବା ପ୍ରତିବଦ୍ଧତାରେ ଲିଙ୍ଗଗତ ପ୍ରଭେଦ ଦେଖିବାକୁ ମିଳୁ ନାହିଁ । ପୁଣି ସେଇ ପ୍ରଶ୍ନ ଉଙ୍କି ମାରୁଛି - ପିତୃସତ୍ତାତ୍ମକ ସମାଜରେ ଏବଂ ମାତୃ ସତ୍ତାତ୍ମକ ସମାଜ ମଧ୍ୟରେ ସତରେ କଣ କିଛି ସ୍ୱଭାବଗତ ପାର୍ଥକ୍ୟ ରହିଛି ନା ପାର୍ଥକ୍ୟ ଟି କେବଳ କ୍ଷମତା ଲାଭ କାରଣରୁ ?

ଏଇ ବୀଜ ପ୍ରଶ୍ନ ଏକ ପୁରୁଣା ପ୍ରଶ୍ନକୁ ଡାକି ଆଣେ । ଆମେ ଜାଣୁ ଯେ ପୁରୁଷ ଓ ନାରୀ ଭିତରେ ଶାରୀରିକ ପ୍ରଭେଦ ରହିଛି । ନାରୀର ଗର୍ଭଧାରଣ ଓ କ୍ଷୀର ପିଏଇବାର ଯେଉଁ କ୍ଷମତା ରହିଛି ତାହା ପୁରୁଷର ନାହିଁ । ମାଂସପେଶୀୟ ବଳ ଦୃଷ୍ଟିରୁ ପୁରୁଷ ମହିଳା ତୁଳନାରେ ଅଧିକ ଶକ୍ତିଶାଳୀ ଯଦି ଆମେ ବ୍ୟକ୍ତିଗତ ଭାବେ ହିଂସା କରିପାରିବାର କ୍ଷମତାକୁ ବିଚାରକୁ ନେବା । କିନ୍ତୁ ଅସଲ ବିତର୍କ ସେଠୁ ଆରମ୍ଭ ହୁଏ ଯେବେ ଆମେ ଏକଥା ଜାଣିବାକୁ ପ୍ରୟାସ କରୁ ଯେ ଏଇ ଜୈବିକ ପାର୍ଥକ୍ୟ ନାରୀ-ପୁରୁଷର ଚେତନା, ଭାବନା, ବୌଦ୍ଧିକ ଓ ମାନସିକ ସାମର୍ଥ୍ୟ, ମାନସ ଓ ସୌନ୍ଦର୍ଯ୍ୟବୋଧ ଉପରେ କେତେ ପ୍ରଭାବ ପକାଏ ? ପ୍ରକୃତରେ ପକାଏ ନା ନାହିଁ ?

ଆଜିଯାଏଁ ଦୁନିଆଁରେ ଯେତିକି ବି ଗବେଷଣା ହେଇଛି , ସେ ଗବେଷଣାର ନିଷ୍କର୍ଷ ହେଲା - ନାରୀ- ପୁରୁଷ ଭିତରେ ସ୍ଥିତ 'ଜୈବିକ ପାର୍ଥକ୍ୟ' ତାର ଆଚାର -ବ୍ୟବହାର, ଚିନ୍ତନ, ଭାବନାତ୍ମକ ପ୍ରତିକ୍ରିୟା, ପସନ୍ଦ-ନା ପସନ୍ଦ ସବୁକୁ ସଂଚାଳିତ କରିଥାଏ । ତା ଛଡ଼ା ଆହୁରି ଅନେକ ପାର୍ଥକ୍ୟ ଆମେ ଦେଖୁଛୁ । ସେ ଭିତରୁ ଅଧିକାଂଶ ପରଂପରା , ଧାର୍ମିକ ଓ ଧର୍ମପ୍ରାଣ ସାଂସ୍କୃତିକ ମାନ୍ୟତା, ଜାତି ଓ ସମାଜର ଐତିହାସିକ ଗଢ଼ିରୁ ଜନ୍ମ ନେଇଛି । ସେ ଭିତରୁ କେତୋଟି ମାନ୍ୟତା ଯେମିତି - ଝିଅ ବଂଶ ଚଳେଇ ପାରିବ ନାହିଁ, ମଲା ବେଳକୁ ପାଣି, ନିଆଁ ଓ ପରେ ପିଣ୍ଡ ଦେଇ ପାରିବ ନାହିଁ, ବଂଶର ସଂପତ୍ତି ଖାଇ ପାରିବ ନାହିଁ, ହଳ ଧରି ପାରିବ ନାହିଁ, ମୁସଲିମ ସମାଜରେ ମସଜିଦ୍ ଯାଇ ପାରିବ ନାହିଁ । ନାରୀ-ପୁରୁଷ ଭିତରେ ଥିବା ଅଜୈବିକ ଫରକ ସ୍ୱଭାବଗତ ନା ସଂସ୍କାରଗତ, ସେ ସଂବଂଧରେ କୌଣସି ପ୍ରାମାଣିକ, ତର୍କସଂଗତ ବୈଜ୍ଞାନିକ ବକ୍ତବ୍ୟ ନାହିଁ । ଏ କଥା ବି ମନେ ରଖିବାକୁ ହେବ ଯେ ଯେବେ ସଂସ୍କାରକୁ ଅଖଣ୍ଡ ନିତ୍ୟ ବା ଶାଶ୍ୱତ କହି ପୂଜା କରାଯାଏ ତେବେ ତାହା ଗତିହୀନ ହୋଇ ଜଡ଼ ହୋଇଯାଏ, ସ୍ଥିର ପାଣି ହେଇ ଗନ୍ଧାଏ । 'ଭାରତୀୟ ସମାଜ' ନାରୀ ଜୀବନର ପରିବର୍ତ୍ତନକାରୀ ପ୍ରୟାସ ସବୁକୁ ସଂସ୍କୃତିର ଅବମୂଲ୍ୟାୟନ କହି ଅସ୍ୱୀକାର କରିଦିଏ । ସେକଥା ଏବେ ବି ଚାଲିଛି । ସେଥିପାଇଁ ଆଜି ବି ସତୀପ୍ରଥା ଓ ବାଲ୍ୟ ବିବାହ ସପକ୍ଷରେ ଓ ବିଧବା ବିବାହ ବିପକ୍ଷରେ ରକ୍ଷଣଶୀଳ ଧାର୍ମିକ, ରାଜନୈତିକ ଶକ୍ତି ମାନେ ସକ୍ରିୟ ରହିଛନ୍ତି । ଯେବେ ବି ନାରୀ ନିଜର ପରଂପରା ଗତ, ଘରୋଇ, କଲ୍ୟାଣକାରୀ, ସେବାକାରୀ ଛବିର ବିପରୀତ ମନେହେଉଥିବା କିଛି କାମ କରେ ତେବେ ପୁରୁଷ ଘାବେଇେଇ ଯାଏ, ଆତଙ୍କିତ ହୋଇଯାଏ । ତାକୁ ଲାଗେ ସୁରୁଖୁରୁରେ ଚାଲୁଥିବା ସ୍ଥାପିତ ବ୍ୟବସ୍ଥାକୁ କେହି ଉଜାଡ଼ି ପକାଉଛି । ତା ପରେ ପୁରୁଷ ନିଜର କ୍ଷମତା ବା କ୍ଷମତାକେନ୍ଦ୍ର ଗୁଡ଼ିକର ସୁରକ୍ଷା ପାଇଁ ଲାଗିପଡ଼େ । ଆବଶ୍ୟକ ହେଲେ ହିଂସାର ଆଶ୍ରୟ ନିଏ । ସ୍ତ୍ରୀ ମୁକ୍ତି ସେ ଦୃଷ୍ଟିରୁ ଆମ ଦେଶରେ ଓ ସମାଜରେ ପୁରୁଷ ପ୍ରତି ଏକ ବିପଦ ବୋଲି ଧରି ନିଆଯାଏ । ସେଥିରେ ପୁରୁଷକୁ ଅନିଷ୍ଟର ଆଶଂକା ଘାରେ ।

ଆଧୁନିକ ଚିନ୍ତନର ନୂଆଧାରା ନାରୀର ସ୍ୱଭାବଗତ ଗୁଣ ଉପରେ ଜୋର ଦେଇଛି । କହୁଛି ଯେ ନାରୀ ସ୍ୱଭାବତଃ ପାଳନ-ପୋଷଣ, ସଂବେଦନଶୀଳ, ଗ୍ରହଣଶୀଳ, ଅନୁକ୍ରିୟାଶୀଳ ଏବଂ ସୌନ୍ଦର୍ଯ୍ୟାନୁରାଗିଣୀ । ସେଥିପାଇଁ ପିତୃ ସତ୍ତାତ୍ମକ ସମାଜର ଉନ୍ମୂଳନ ହେଲେ ସାମାଜିକ ବ୍ୟବସ୍ଥା ଅଧିକ କଲ୍ୟାଣକାରୀ ଓ ସଂବେଦନଶୀଳ ହେବ ତଥା ଆଜିର ବିଧ୍ୱଂସକାରୀ ପ୍ରତିଯୋଗୀ ମୂଲ୍ୟଗୁଡ଼ିକରେ ପରିବର୍ତ୍ତନ ଆସିବ । ଏହା ସତ କି ? ଏମିତି ହେବ ନା ନାହିଁ ଏ ସଂପର୍କରେ ନିର୍ଦ୍ଦିଷ୍ଟ ଭାବରେ କୁହାଯାଇ ପାରିବ ନାହିଁ । ଏ ଦିଗରେ ଆହୁରି ଗବେଷଣା ଆବଶ୍ୟକ ।

ନାରୀ କଣ ତା ସ୍ୱଭାବ ଦୃଷ୍ଟିରୁ କ୍ଷମତାର ସ୍ୱରୂପ ଓ ଚରିତ୍ରରେ ସକାରାତ୍ମକ ପରିବର୍ତ୍ତନ ଆଣିପାରିବ ନା କ୍ଷମତା ପ୍ରାପ୍ତି ପରେ କ୍ଷମତା ସର୍ବସ୍ୱ ହୋଇଯିବ ? ଭାରତୀୟ ରାଜନୀତିରେ ଇନ୍ଦିରା ଗାନ୍ଧୀ, ମାୟାବତୀ, ଜୟଲଳିତା ପରି ଉଦାହରଣ ଆମକୁ ନିରାଶ କରେ । ଏମାନଙ୍କ ଭିତରେ 'ମଦର ଇଣ୍ଡିଆ' ସିନେମାର ମା – ନର୍ଗୀସକୁ ଆମେ ଦେଖି ପାରିବା ନାହିଁ । ତା ହେଲେ ଆମେ କଣ କହି ପାରିବା ଯେ କ୍ଷମତା ନିଶା ଅନ୍ୟ ସମସ୍ତ ନିଶାଠୁ ବଡ଼ ? ସେ ନିଶାରେ ନାରୀ ତାର ସ୍ୱଭାବଗତ ଗୁଣ ହରାଇ ବସିବ ? ଏଇ ଭଳି କିଛି ନିଷ୍କର୍ଷହୀନ ପ୍ରଶ୍ନ ଦେଇ ଗତି କଲାବେଳେ ଲାଗେ ନାରୀର ସମୁଚିତ ଅସ୍ତିତ୍ୱର ବିତର୍କରେ ତାର ମନ, ସ୍ୱଭାବ, ଚେତନା, ଅନ୍ତର୍ଦ୍ୱନ୍ଦ୍ୱ ଆଦି କଥା ଆଲୋଚନା ଅପେକ୍ଷା ଆମର ସାମାଜିକ ସ୍ଥିତି ସଂବଧରେ କଥା ହେବା ବଡ଼ ସହଜ । ଆମେ ଏଠି ପ୍ରାମାଣିକ ତଥ୍ୟର ମାଟିରେ ଛିଡ଼ା ହେଇ ଆଲୋଚନା କରିପାରିବା । ସମାନ ସାମାଜିକ ଅଧିକାରର ଦାବି ଦ୍ୱନ୍ଦ୍ୱହୀନ ଭାବରେ କରିପାରିବା ।

ଆମ ଦେଶର ପରିପ୍ରେକ୍ଷୀରେ ଦିଟି ବିପରୀତମୁଖୀ ଅଥଚ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଆଡ଼କୁ ଧ୍ୟାନ ଦେବା । ପ୍ରଥମଟି ହେଲା ଜାତି ଓ ଶ୍ରେଣୀ ବିଭାଜିତ ଆମ ସମାଜରେ ବିଭିନ୍ନ ସମୁଦାୟ ଭିତରେ କେବଳ ଭୀଷଣ ପୁଂଜିଭୂତ ବିଷମତା ରହିଛି ତାହା ନୁହେଁ ନାରୀ ଓ ପୁରୁଷ ମଧ୍ୟରେ ବି ଗଭୀର ଅସମାନତା ଅଛି । ଅସଲରେ ଅନ୍ୟାୟର ଏକ ସମୁଚିତ, ସୁନିୟୋଜିତ ବ୍ୟବସ୍ଥା ଜାରି ରହିଛି । ପ୍ରତି ଧର୍ମରେ, ସମୁଦାୟରେ ଥିବା ବ୍ୟବସ୍ଥା ଗୁଡ଼ିକ ଅସଲ ଚରିତ୍ରରେ ବେଶ୍ ନାରୀ ବିରୋଧୀ । ସବୁ ଧାର୍ମିକ ସମୁଦାୟ ପାଇଁ ଅଲଗା ଅଲଗା ନାଗରିକ ସଂହିତା ରହିଛି କିନ୍ତୁ ସବୁତକ ନାରୀ ବିରୋଧୀ। ମଧ୍ୟବର୍ଗର ନାରୀ କେତୋଟି ଅନ୍ୟାୟପୂର୍ଣ୍ଣ ବ୍ୟବସ୍ଥା ପ୍ରତି ଅସନ୍ତୋଷ ପ୍ରକାଶ ଅବଶ୍ୟ କରିଛି । ତଥାପି ସ୍ୱାମୀର ଆୟରେ ସ୍ତ୍ରୀର ଅଧିକାର ଓ ବିବାହ ବିଚ୍ଛେଦ ହେଲେ ତା ଛୁଆପିଲାଙ୍କ ଭରଣ-ପୋଷଣ ର ଉଚିତ ବ୍ୟବସ୍ଥା ଏ ଯାଏଁ ହେଇ ପାରିନି । ପୈତୃକ ସଂପତ୍ତିରେ ବି ତାର ସମାନ ଅଧିକାରକୁ ଏଯାଏଁ ସ୍ୱୀକୃତି ମିଳିନି । ଏବେ ଏ ସଂପର୍କରେ ଏକ ଆଇନ ହୋଇଛି

ହେଲେ ତା ପ୍ରତି ସାମାଜିକ ସ୍ୱୀକୃତି, ସାଂସ୍କୃତିକ ଗ୍ରହଣୀୟତା ସୃଷ୍ଟି ହେବାକୁ କେତେ ଯେ ବର୍ଷ ଲାଗିବ କହିବା ମୁସ୍କିଲ । ତା ପୂର୍ବରୁ ପରିବାର ଭିତରେ କେତେ ଯେ ବିବାଦ ଦେଖିବାକୁ ମିଳିବ ତାର ହିସାବ ନାହିଁ । ଏମିତିରେ ତ ଅନେକ ଆଇନ ସରକାର କରିଛନ୍ତି କିନ୍ତୁ ତାକୁ ନେଇ ସାମାଜିକ ଗ୍ରହଣୀୟତା ଓ ସାଂସ୍କୃତିକ ମାନ୍ୟତା ନ ଥିବାରୁ ତଥା ସରକାରୀ ସ୍ତରରେ ପ୍ରତିବଦ୍ଧତା ଅଭାବରୁ ସେ ସେବୁ ଏ ଯାଏଁ କାର୍ଯ୍ୟକାରୀ ହେଇପାରିନି । ଗୋଟିଏ ଉଦାହରଣ ଯଥେଷ୍ଟ । ନାରୀ ଓ ପୁରୁଷକୁ ସମାନ ମଜୁରୀ । ନାରୀ ଏଯାଏଁ ପୁରୁଷ ସମାନ ମଜୁରୀ ପାଉ ନ ଥିବା କଥାକୁ ନେସ୍‌ନାଲ ସେଂପୁଲ ସର୍ଭେ ଅନୁଷ୍ଠାନର ପରିସଂଖ୍ୟାନ ପୁଷ୍ଟି କରୁଛି । ସମାଜ ଏଯାଏଁ ଗ୍ରହଣ କରି ପାରିନି ଯେ ନାରୀ ପୁରୁଷ ତୁଳନାରେ କେତେ କାମ କରିପାରେ । ଠିକ ସେମିତି କୃଷି କ୍ଷେତ୍ରରେ ସ୍ତ୍ରୀ ଉତ୍ପାଦନର ପୁରା କାମ କରୁଥିଲେ ବି ତାର ଭୂସଂପତ୍ତି ଉପରେ ଅଧିକାର ନ ଥାଏ । ଏହାର ଅର୍ଥ ହେଲା ଯେ ନାରୀକୁ ଆଇନ ନିଜେ ତା ଘରେ ସମାନ ହକ୍‌ର ଅଧିକାରୀ ବୋଲି ସ୍ୱୀକାର କରୁନାହିଁ । ସତୀ ପ୍ରଥା, ବାଲ୍ୟ ବିବାହ ବିରୋଧୀ ଆଇନ କେବେଠୁ ହେଲାଣି ମାତ୍ର ସମାଜ ତାକୁ ଗ୍ରହଣ କରିବା ବେଳକୁ କେତେ ସମୟ ଲାଗିଗଲା । ତା ସତ୍ତ୍ୱେ କେତେ ଅଂଚଳରେ ଓ କେତୋଟି ସମ୍ପ୍ରଦାୟରେ ତାହା ଏବେ ବି ଚାଲିଛି । ଏପରି ଅନେକ ଦୋଷ ଦୁର୍ବଳତା ଆଇନ କାନୁନରେ ବି ରହିଛି । ଏକ ଗମ୍ଭୀର ଓ ବୀଭତ୍ସ ଦୁର୍ବଳତା 'ବଳାତ୍କାର ସଂବଂଧୀୟ' ଆଇନରେ ରହିଛି । ଏହା ଆମ ସମାଜର ସ୍ତ୍ରୀ ପ୍ରତି ରହି ଆସିଥିବା ହେୟ ଦୃଷ୍ଟି ଏବଂ ସାମନ୍ତ ବ୍ୟବହାରକୁ ସ୍ପଷ୍ଟ କରେ । ଆମର ବିଚାର ବ୍ୟବସ୍ଥା ବି ସେଥିରୁ ମୁକ୍ତ ହେଇ ପାରିନି । ଆମର କୋର୍ଟ ବଳାତ୍କାରର ଶିକାର ହେଇଥିବା ନାରୀକୁ ଚରିତ୍ରହୀନ କହି କେତେ ଯେ ଅଭିଯୁକ୍ତଙ୍କୁ ମୁକ୍ତ କରିଛି ତାର ହିସାବ ନାହିଁ । ଏ ପରିପ୍ରେକ୍ଷୀରେ ମହିଳା ସଂଗଠନ ମାନଙ୍କ ଦାବୀ ଯଥାର୍ଥ । ତାଙ୍କ ଦାବି ହେଲା-ନିଜସ୍ୱ ସେକ୍ସ / ଯୌନ ଜୀବନରେ ବଳାତ୍କାରର କୌଣସି ସଂବଂଧ ନାହିଁ । ବେଶ୍ୟାକୁ ଯଦି ବଳାତ୍କାର କରାଯାଏ ତେବେ ତାହା ଅପରାଧ ଅଟେ । ହେଲେ ଆମ ଦେଶରେ ୧୫/୧୬ ବର୍ଷିୟା ଝିଅ ସହ ହେଇଥିବା ବଳାତ୍କାରକୁ ବି ନ୍ୟାୟ ସଂଗତ କରିଦିଆଯାଏ ଏଇଆ କହି ଯେ ସେ ଆଗରୁ ବି ସଂଭୋଗ କରି ସାରିଛି (ମଥୁରା କେଶ) । କାନୁନୀ ବିଧାନ ସତ୍ତ୍ୱେ ପୁଲିସ ଓ ବିଚାର ବ୍ୟବସ୍ଥାକୁ ଚଳାଉଥିବା ଲୋକଙ୍କ ପୂର୍ବାଗ୍ରହ (ଶ୍ରେଣୀ , ଜାତି, ଲିଙ୍ଗ ଓ ଅନ୍ୟ )ଯୋଗୁଁ ତାହା ନିଷ୍କ୍ରିୟ ବା ଅକାମୀ ହୋଇଯାଏ । ଏ ପରିପ୍ରେକ୍ଷୀରେ ଆମେ ଭଁବରୀ ଦେବୀଙ୍କ ବଳାତ୍କାର ଓ କୋର୍ଟ ନିଷ୍ପତ୍ତିର ଉଦାହରଣ ନେଇ ପାରିବା । ପ୍ରଥମେ ପୁଲିସ କେଶ ଦରଜ କରିବାରେ ଡେରି କରି ବଳାତ୍କାରର ପ୍ରମାଣ ନଷ୍ଟ ହେବାକୁ ଦେଲା । ପରେ କୋର୍ଟ ବିଭିନ୍ନ କାରଣ ଦେଖାଇ କେଶ୍ ଖାରଜ କଲା । ତା ଉପରେ ପୁଣି ତାର ବକ୍ତବ୍ୟ ହେଲା - 'ବୟୋଜ୍ୟେଷ୍ଠ ଓ ପ୍ରତିଷ୍ଠିତ ନାଗରିକମାନେ ଏଭଳି କୁକର୍ମ କରିବା ଅସମ୍ଭବ ।' ଯେତେଦିନ ଯାଏଁ

ସମାଜରେ ବର୍ଗୀୟ ଏବଂ ସେକ୍ସକୁ ନେଇ ସାମନ୍ତୀ ପୂର୍ବାଗ୍ରହ ରହିଥିବ, ସାଧାରଣ ନାରୀ ଅତ୍ୟାଚାରିତ ଓ ନ୍ୟାୟ ପ୍ରାପ୍ତିରୁ ବଂଚିତ ହେଉଥିବେ ।

ପ୍ରକୃତରେ ଆଇନଗତ, ରାଜନୈତିକ ଓ ଆର୍ଥିକ ଅଧିକାର ମିଳିବ, ତେବେ ଯାଇ ସାର୍ଥକ ହେବ ଯେବେ ଏସବୁକୁ ସାମାଜିକ ସ୍ୱୀକୃତି ଓ ମାନ୍ୟତା ମିଳିବ । ପରିବାର ଓ ସମାଜ ଯେଉଁଠି ଏ ଉତ୍ପୀଡ଼ନର ଅସଲ ଭୂଇଁ ସେଠି ଏଇ ସ୍ୱୀକୃତିର ମାନ୍ୟତା ଅତି ଜରୁରୀ । ତା ବିନା 'ଅଧିକାର' ସ୍ୱୟଂ ଶୋଷଣ ଓ ଉତ୍ପୀଡ଼ନର ମାଧ୍ୟମ ହେଇଯିବ । ଉଦାହରଣ ସ୍ୱରୂପ ମହିଳାଙ୍କ ଗର୍ଭପାତର ଅଧିକାର । ସେ ଅଧିକାର ବ୍ୟବହୃତ ହେଉଛି ନାରୀଭୃଣ ହତ୍ୟା ପାଇଁ । ସ୍ଥିତି ଏମିତି ଯେ ନାରୀ ପାଖରେ ଅଧିକାର ଅଛି ହେଲେ ନିର୍ଣ୍ଣୟ ନେବାର ସାମର୍ଥ୍ୟ ନାହିଁ । ଆହୁରି ବଡ଼ ନିଷ୍ଠୁର ସତ୍ୟ ହେଲା ନାରୀ ନିଜେ ଇଚ୍ଛା କରି ବା ପୁରୁଷ ଦ୍ୱାରା ସ୍ଥିରୀକୃତ ମାନ୍ୟତା ଗୁଡ଼ିକୁ (ପୁଅ ବିନା ବଂଶ ଚଳିବ ନାହିଁ, ମଲା ବେଳେ କିଏ ପାଣି ଦେବ, ପୁତ୍ର ବିନା ନର୍କ ଭୋଗ,ସଂପତ୍ତି ବେକାର ପର ହାତକୁ ଯିବ ) ମାନି ନାରୀ ଭୃଣ ହତ୍ୟାରେ ସମାନ ଭାବେ ଭାଗିଦାରୀ ହେଉଛି । ଅବଶ୍ୟ ବହୁକ୍ଷେତ୍ରରେ ଏହା ଆର୍ଥିକ - ଆତ୍ମ ନିର୍ଭରଶୀଳତାର ଅଭାବର କାରଣରୁ ହେଉଛି । ଆଉ କୋଉଠି ଆର୍ଥିକ ସକ୍ଷମତା ଥିବା ସତ୍ତ୍ୱେ ସ୍ତ୍ରୀ ନିଜକୁ ନିର୍ଣ୍ଣାୟକ ଶକ୍ତି ବା ତତ୍ତ୍ୱ ମନେ କରୁ ନ ଥିବା କାରଣରୁ ଏହା ଘଟୁଛି ।

ଏବେ ଆମେ ଆସିବା ରାଜନୈତିକ କ୍ଷମତାରେ ନାରୀର ଭାଗିଦାରୀ ପ୍ରସଙ୍ଗକୁ । ଆଲୋଚନା ବେଳେ ଆମର ସାଂସ୍କୃତିକ - ସାମାଜିକ ପରିବେଶ ବା ପୃଷ୍ଠଭୂମିକୁ ବିଚାରକୁ ନେବାକୁ ହେବ । ସଂରକ୍ଷଣ ବ୍ୟବସ୍ଥା ଯୋଗୁଁ ଗଲା କିଛି ବର୍ଷ ଭିତରେ ପଂଚାୟତ ସ୍ତରରେ କିଛି ନାରୀ ପ୍ରତିନିଧିତ୍ୱର ସୁଯୋଗ ପାଇଛନ୍ତି । ଏଇ ମହିଳାମାନଙ୍କ କଥା ବିଶ୍ଳେଷଣ କଲେ କିଛି ବ୍ୟତିକ୍ରମକୁ ଛାଡ଼ି ବହୁତ କିଛି ଉତ୍ସାହିତ ହେଲା ଭଳି ଅନୁଭବ ହେଉନାହିଁ । ତା ସତ୍ତ୍ୱେ ତା ନିଜ ମନରେ ତଥା ପୁରୁଷଙ୍କ ମନ ଭିତରେ ଥିବା ନାରୀର ପୂର୍ବ ଛବିରେ ନିଶ୍ଚିତ ଭାବେ କିଛିଟା ପରିବର୍ତ୍ତନ ଆସିଛି । ଆଜି ରାଜନୀତିର ଚରିତ୍ର ଯେଉଁଠି ଅର୍ଥବଳ ଓ ହିଂସା ଉପରେ ଆଧାରିତ ସେଠି ମହିଳା ସମୁଚିତ ସ୍ଥାନ ପାଇପାରିବ କି ? ଯଦି ସେ ଅବସ୍ଥାର ପରିବର୍ତ୍ତନ ବିନା ନାରୀ ରାଜନୀତିରେ ସ୍ଥାନ ଖୋଜିବ ତେବେ ତାକୁ ଅର୍ଥତନ୍ତ୍ର ଓ ହିଂସାକୁ ଆପଣାଇବାକୁ ପଡ଼ିବ। ନାରୀ ସେଠି ପରିବର୍ତ୍ତନର ବାହକ ନ ହେଇ ତାର ଅଂଶ ବିଶେଷ ହେଇଯାଉଛି । ସେ ବି କ୍ଷମତାର ସ୍ୱାଦ ଚାଖୁଛି । ଜାତୀୟ କେକ୍‌ରୁ ସେ ବି ଭାଗଟିଏ ଖାଉଛି । ସେଇଟା ବି ବ୍ୟକ୍ତି ଭାବରେ ସିନା 'ମହିଳା ସମୂହ' ଭାବରେ ନୁହେଁ ।

ବ୍ୟବସ୍ଥା ପରିବର୍ତ୍ତନର ଆନ୍ଦୋଳନକୁ ବଳ ଦେଉଥିବା ସାମାଜିକ ସାଂସ୍କୃତିକ ଆନ୍ଦୋଳନ ବିନା ରାଜନୈତିକ ଅଧିକାରର ଲଢ଼େଇ ଦିଗରେ କେବଳ ପଂଚାୟତ

ବ୍ୟବସ୍ଥାରେ ସଂରକ୍ଷଣ, ସେମିତି କିଛି ବଡ ଭୂମିକା ନେଇ ପାରୁନି । ଗଲା କିଛି ବର୍ଷ ହେଲା ପାର୍ଲିଆମେଣ୍ଟରେ ମହିଳାଙ୍କ ସଂରକ୍ଷଣ କଥା ଉଠୁଛି । ସଂରକ୍ଷଣ ବ୍ୟବସ୍ଥା ହେଲେ ତାର ସ୍ୱାଦ କୋଉମାନେ ଚାଖିବେ । ସେଇ ପରିବାରର ମହିଳା ଯେଉଁମାନେ ଭାରତୀୟ ରାଜନୀତିକୁ କବ୍‌ଜା କରି ରଖିଛନ୍ତି । ସୁନୀଲ ଦତ୍ତର ଝିଅ କି ଲାଲୁ ଯାଦବଙ୍କ ପତ୍ନୀ । ନାରୀ ଚେତନାର ବାସ୍ତବିକ ଫରକ ତେବେ ଯାଇ ଅନୁଭୂତ ହେବ ଯେବେ ଉତ୍ପାଦନର କାମ ସହ ଯୋଡ଼ି ହେଉଥିବା ବର୍ଗର ନାରୀକୁ ନିର୍ଣ୍ଣାୟକ ଶକ୍ତି ମିଳିବ । ଯେଉଁମାନେ ନିଜେ ଉତ୍ପାଦନର କାମକୁ / ଅଣ୍ଟା ଭଙ୍ଗା ଘରୋଇ କାମ, ସେବାକାରୀ ଭୂମିକା ଜନିତ ଶ୍ରମକୁ ହେୟ ମନେ କରି ନିଜକୁ ଦ୍ୱିତୀୟ ଶ୍ରେଣୀର ନାଗରିକ ଭାବି ଆସିଛନ୍ତି । କାମ ଓ ସେମାନଙ୍କ ଭିତରେ ଯେଉଁ ଦିନ ସାମାଜିକ ରାଜନୈତିକ ଚେତନା ଆସିବ ସେଦିନ ହିଁ ଅସଲ ପରିବର୍ତ୍ତନ ଆସିବ ।

କେବଳ ଶିକ୍ଷାସଂସ୍ଥାନ, ଚାକିରୀ ଓ ପଂଚାୟତ ଆଦିରେ ସଂରକ୍ଷଣ ସୁବିଧା ଦେଇ ଦେଲେ ନାରୀର ସ୍ଥିତି ବଦଳି ଯିବ ନାହିଁ । ପ୍ରାରମ୍ଭିକ ଶିକ୍ଷାରୁ ବଂଚିତ, ଦୁର୍ବଳ ଶ୍ରେଣୀର ନାରୀ / ପୁରୁଷ ତା଼ର ଦାବୀଦାର ହେଇ ପାରନ୍ତି ନାହିଁ । ସେଥିପାଇଁ ଆଜି ଯାଏଁ ବହୁସ୍ଥାନ (ଉଚ୍ଚ ଶିକ୍ଷା ଓ ବଡ଼ ବଡ଼ ପଦ ପଦବୀ ) ସଂରକ୍ଷଣ ପରେ ବି ଖାଲି ରହି ଆସିଛି । ସଭିଙ୍କୁ ଦାବୀଦାର କରିବା ଲାଗି ଦେଶର ସମସ୍ତ ଝିଅ - ପୁଅଙ୍କ ପାଇଁ ଅନିର୍ବାର୍ଯ୍ୟ, ମୁକ୍ତ ଓ ସମାନ ଶିକ୍ଷା(ସମାନ ସିଲାବସ, ସମାନ ସ୍କୁଲ)ର ଆବଶ୍ୟକତା ରହିଛି । ଏ କଥାରେ ଘରୋଇକରଣର ସମର୍ଥକ ମଧ୍ୟବିତ୍ତ, ଉଚ୍ଚମଧ୍ୟବିତ୍ତମାନେ ମୋଟେ ସହମତ ହେବେ ନାହିଁ । ଅବସରର ସମାନତା ପାଇଁ ପବ୍ଲିକ ସ୍କୁଲଗୁଡ଼ିକୁ ବନ୍ଦ କରିବାକୁ ହେବ । ଦୁର୍ଭାଗ୍ୟର କଥା ଯେ ଆମ ସରକାର ଡି.ପି.ଇ.ପି., ସର୍ବଶିକ୍ଷା ଅଭିଯାନ ନାଁରେ ପ୍ରାଥମିକ ଶିକ୍ଷାକୁ ବରବାଦ କରିବାରେ ଲାଗିଛନ୍ତି ଓ ମଧ୍ୟବିତ୍ତମାନେ ତାଙ୍କ ପିଲାଛୁଆଙ୍କ ପାଇଁ ଘରୋଇ ସ୍କୁଲ ଖୋଲି ବିଷମତାର ଖାଇକୁ ବଢ଼େଇ ଚାଲିଛନ୍ତି । ଶିକ୍ଷା ଓ ସ୍ୱାସ୍ଥ୍ୟ ସୁବିଧାରେ ଅସମାନତା, ଅବସରର ସେଇ ଅସମାନତା ଅଟେ ଯାହା ସବୁରକମର: ଆର୍ଥିକ,ସାମାଜିକ, ରାଜନୈତିକ, ବର୍ଗୀୟ ଏବଂ ଲୈଙ୍ଗିକ ଅସମାନତାକୁ ଜାରି ରଖିବାରେ ଶାସକ ଶ୍ରେଣୀକୁ ସାହାଯ୍ୟ କରି ଆସିଛି । ଏଇ ବିଷମ ଅବସରର ରାଜନୈତିକ-ଅର୍ଥନୀତିର ଉନ୍ମୂଳନ ବିନା ସବୁ ବର୍ଗରେ ସ୍ତ୍ରୀ ଚେତନା ଅସମ୍ଭବ ହେଇ ରହିବ । ଏଠି ଅବଶ୍ୟ ଆର୍ଥିକ ବିଷମତାର ପ୍ରଶ୍ନ ଗୁରୁତ୍ୱପୂର୍ଣ୍ଣ ।

କୌଣସି ସମାଜରେ ହାତଗଣତି କିଛି ମହିଳା ଶିକ୍ଷା ଓ ପଦ ପ୍ରତିଷ୍ଠା ପାଇବାର ଅର୍ଥ ଏଇଆ ନୁହେଁ ଯେ ନାରୀର ସ୍ଥିତିରେ ବାସ୍ତବିକ ପରିବର୍ତ୍ତନ ଆସିଗଲା । ଗବେଷଣାଲବ୍ଧ ତଥ୍ୟ କହୁଛି ଭାରତ ସମେତ ଏସୀୟ ଦେଶରେ, ଗତ ଦି ଦଶକ ଭିତରେ ଅତି ଅଳ୍ପ ସଂଖ୍ୟାର ଏକ 'ବିଶିଷ୍ଟ ନାରୀ ସମୁଦାୟ'ର ଅଭ୍ୟୁଦୟ ହେଇଛି

ଯେଉଁମାନେ ଆର୍ଥିକ ଓ ରାଜନୈତିକ କ୍ଷେତ୍ରରେ ପ୍ରଗତି ହାସଲ କରିଛନ୍ତି । ସେମାନେ ଦୁର୍ବଳ ବର୍ଗର ନାରୀ ଓ ପୁରୁଷଙ୍କ ଶ୍ରମକୁ ଖରିଦ କରି ଏ ପ୍ରଗତି ହାସଲ କରିଛନ୍ତି । ଘରୋଇ କାମରେ ସାହାଯ୍ୟ ପାଇଁ ଏତେ ସଂଖ୍ୟାରେ ନୌକର-ଚାକର-କର୍ମଚାରୀ ମିଳିବା ଏହାର ପ୍ରମାଣ । ଆମେ ଯେଉଁ କେତେକ ସକ୍ରିୟ ସଫଳ ନାରୀଂକୁ ଆଜି ସାମାଜିକ - ରାଜନୈତିକ କ୍ଷେତ୍ରରେ ଦେଖୁଛୁ ସେମାନଙ୍କ ଭିତରୁ କେହି ବି କଣ କହି ପାରିବେ ଯେ ତାଙ୍କ ଘରେ କାମ କରୁଥିବା ବାଇ ନାହିଁ । ବାସନ ମାଜୁଥିବା, ଛୁଆ ଧରୁଥିବା ବାଳଶ୍ରମିକ ନାହିଁ । ଏମିତି କେତେଜଣ କହିପାରିବେ ଯେ ସେମାନେ ସଭିଏଁ (ପତି, ପୁତ୍ର , ଝିଅ ଓ ପତ୍ନି) ମିଳିମିଶି ଘରୋଇ କାମ ସବୁ କରି ନିଅନ୍ତି । ଆମ ସମାଜରେ ବିଭିନ୍ନ ନାରୀ ଭିତରେ ଥିବା ଭୟଙ୍କର ବର୍ଗୀୟ ବିଷମତାକୁ ନଜର ଅନ୍ଦାଜ କରି ନାରୀ ଚେତନାର ପ୍ରସାର ସମ୍ଭବ ନୁହେଁ । ବିଭିନ୍ନ ବର୍ଗର ସ୍ତ୍ରୀମାନେ ସାମ୍ନା କରୁଥିବା ସମସ୍ୟା ଓ ଆହ୍ୱାନ ଗୁଡ଼ିକ ସମାନ ନୁହେଁ । ଚେତନାକୁ ସାମାଜିକ ଚେତନାରେ ଓ ସାମାଜିକ ଚେତନାକୁ ରାଜନୈତିକ ଚେତନାରେ ରୂପାନ୍ତରିତ କରିବା ଆହୁରି ବଡ଼ ଚ୍ୟାଲେଂଜ ।

ବ୍ୟକ୍ତିଗତ ସ୍ତରରେ ସବୁଠୁ ବଡ଼ ଚ୍ୟାଲେଂଜ ହେଲା ପୁରୁଷଟେ କେବଳ ପୁରୁଷ ନ ହେଇ ମଣିଷ ହେବା । ଠିକ ସେମିତି ନାରୀ କେବଳ ନାରୀ ନ ହେଇ ମଣିଷ ହେବା । ତାଠୁ ଆହୁରି ବଡ଼ ଚ୍ୟାଲେଂଜ ହେଲା ଉଭୟେ ଉଭୟଂକୁ କେବଳ ପୁରୁଷ ଓ ମହିଳା କିମ୍ବା ଏକ ଲିଂଗ ଭାବରେ ନ ଦେଖି ମଣିଷ ଭାବରେ ସ୍ୱୀକାର କରିବା । ତାଠୁ ଆହୁରି ବଡ଼ ଚ୍ୟାଲେଂଜ ହେଲା ସାମାଜିକ - ରାଜନୈତିକ ମଣିଷ ହେବା । ଏଇ ଚ୍ୟାଲେଂଜ ଗ୍ରହଣ କରିବାକୁ ହେଲେ ପ୍ରତିଟି ମହିଳାଙ୍କୁ କେବଳ ନାରୀ ସଂବଂଧିତ ଅନ୍ୟାୟ ବିରୋଧରେ ନୁହେଁ ମଣିଷ ଓ ପ୍ରକୃତି ବିରୋଧୀ ରାଜନୈତିକ-ଆର୍ଥିକ ବ୍ୟବସ୍ଥା ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ହେବ । କେବଳ ବିରୋଧ ନୁହେଁ ବ୍ୟବସ୍ଥାକୁ ଜାତି,ବର୍ଣ୍ଣ, ବର୍ଗ, ଅଂଚଳ, ଭାଷା, ଧର୍ମ, ଲିଙ୍ଗ ନିର୍ବିଶେଷରେ ମଣିଷ ଓ ପ୍ରକୃତି ପ୍ରେମୀ କରିବାକୁ ଏକ ବିକଳ୍ପ ସାମାଜିକ-ରାଜନୈତିକ-ଆର୍ଥିକ - ସାଂସ୍କୃତିକ ବ୍ୟବସ୍ଥା ସଂବଧରେ ଚିନ୍ତା ଓ ଚେଷ୍ଟା କରିବାକୁ ହେବ । ସାମଗ୍ରିକ ଭାବରେ ଏକ ସଚେତନ ନାଗରିକର ଭୂମିକା ନେବା ଲାଗି ମହିଳାମାନଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ । ଅନ୍ୟ ଦିଗରେ ଶିକ୍ଷିତ, ସଂପନ୍ନ ମହିଳା କେବଳ ପୁରୁଷ ସମକକ୍ଷ ଅଧିକାର ଦାବୀରେ ନିଜକୁ ସୀମିତ ନ ରଖି ସାଧାରଣ ବର୍ଗର ମହିଳାଂକୁ ଶିକ୍ଷିତସଂପନ୍ନ ମହିଳାଂକ ସମକକ୍ଷ ଅଧିକାର ଦେବାର ଦାବିକୁ ସାବ୍ୟସ୍ତ କରିବାର ସତ୍‌ସାହାସ ଦେଖେଇବାର ଅଛି । ଦୁର୍ଭାଗ୍ୟର କଥାଯେ ଅନେକ ନାରୀବାଦୀ ପ୍ରବକ୍ତା ଭାରତୀୟ ନାରୀର ସମସ୍ୟା କହିଲେ କେବଳ ମଧ୍ୟବିତ୍ତ ନାରୀଂକ ସମସ୍ୟା ବୋଲି ମନେ କରନ୍ତି । ନାରୀ ସମସ୍ୟାର ଆଲୋଚନା ଗୁଡ଼ିକ ଏଇ ଶ୍ରେଣୀ ଭିତରେ ସୀମିତ ହେଇରହେ ।

ଆଉ ଏକ ସମସ୍ୟା ହେଲା ବହୁ ସମୟରେ ଆମେ ନାରୀ ମାନେ ସାମ୍ନା କରୁଥିବା କଷଣ (ବଳାତ୍କାର, ଯୌତୁକ, ହତ୍ୟା, ନାରୀ ପ୍ରତି ହେଉଥିବା ହିଂସା, କମେଣ୍ଟ ଭଳି ଅନେକ)କୁ ଏକକ ଘଟଣା ଭିତ୍ତିକ ସମସ୍ୟା ଭାବରେ ଦେଖୁ । ସେଥିପାଇଁ ଆମ ଲାଗି ଅଂଜନା ମିଶ୍ର, ଛବିରାଣୀ, ଜେସିକା ଲାଲ, ଇମ୍ରାନା, ଗୋଟିଏ ଗୋଟିଏ ଘଟଣା ବା ଉଦାହରଣ କେବଳ । ସରକାରଂକ ପାଇଁ ତ ଏକ ପରିସଂଖ୍ୟାନ । ଗତ ବର୍ଷ ବଳାତ୍କାର, ଯୌତୁକ ହତ୍ୟା ସଂଖ୍ୟା ଏତିକିଥିଲା, ଏବେ ଏତିକି କମିଛି କିମ୍ବା ବଢ଼ିଛି । କେହି ଏଇ ଘଟଣାଗୁଡ଼ିକୁ ପ୍ରଚଳିତ ବ୍ୟବସ୍ଥାର ସ୍ୱାଭାବିକ ପରିଣତି ମନେ କରି ତାର ନିଦାନ ପାଇଁ ବ୍ୟବସ୍ଥାରେ ପରିବର୍ତ୍ତନ ଜରୁରୀ ବୋଲି କହନ୍ତି ନାହିଁ ।

ଏଠି ଆଉ ଏକ ପ୍ରଶ୍ନ ଉଠିବା ଜରୁରୀ । କେବଳ ନାରୀ କାହିଁକି ଆମ ସମାଜରେ ପୁରୁଷ ମାନେ କଣ ମୁକ୍ତ ? ସେମାନେ ସାମାଜିକ-ରାଜନୈତିକ ଓ ଆର୍ଥିକ ନ୍ୟାୟର ଅଧିକାରୀ ହୋଇ ପାରିଛନ୍ତି କି ? ସାମଗ୍ରିକ ଭାବରେ ଦେଖିଲେ ଆମ ବ୍ୟବସ୍ଥାରେ ଅଧିକାଂଶ ମଣିଷ ଶୋଷଣ ଓ ଅବହେଳାର ସାମ୍ନା କରୁଛନ୍ତି । ବହୁ ଲୋକ ଜୀବନ ଜୀବିକାର ସମସ୍ୟା ସହ ଜୁଝୁଛନ୍ତି । ସାମାଜିକ-ରାଜନୈତିକ ଅସ୍ତିତ୍ୱ ଦୂରେ ଥାଉ ଜୈବିକ ଅସ୍ତିତ୍ୱକୁ ବଂଚେଇ ରଖିବା ପାଇଁ ଆବଶ୍ୟକ ସର୍ବନିମ୍ନ ଲକ୍ଷ୍ୟ ପୂରଣ ହୋଇ ପାରିନି । ବଢ଼ନ୍ତା ଦାରିଦ୍ର୍ୟ,ବେରୋଜଗାରୀ, ବିଷମତା (ଜାତି/ଶ୍ରେଣୀ/ଆଂଚଳିକ)କୁ କେବଳ ନାରୀ ନୁହଁ ସମସ୍ତଙ୍କୁ ସାମ୍ନା କରିବାକୁ ପଡୁଛି । ଏ ସମସ୍ୟାଗୁଡ଼ିକ ବିରୋଧରେ ଅବହେଳିତ ସମୂହ ମିଳିତ ଭାବରେ ଲଢ଼େଇ କରିବା ଜରୁରୀ । ଏ ଆବଶ୍ୟକତାକୁ ନାରୀବାଦୀମାନେ ନଜରଅନ୍ଦାଜ କରିଦେଲେ ନାରୀ ମୁକ୍ତିର ପଥ ଖୋଲିବ ନାହିଁ ।

ଆମେ ବ୍ୟବସ୍ଥାକୁ ଓ ତାର ଅସଲ ଚରିତ୍ରକୁ କେତେ ଚିହ୍ନିଛୁ । ତାର କ୍ଷମତାକେନ୍ଦ୍ର ଗୁଡ଼ିକୁ ପରିଚାଳନା କରୁଥିବା କାରକ ଓ ପ୍ରେରକ ଶକ୍ତି ଙ୍କ ପ୍ରେରଣାର ଉତ୍ସ ଗୁଡ଼ିକ କେଉଁଠି ? ପରିବାରରେ ପୁରୁଷବାଦ / ସମାଜରେ ଜାତିବାଦ, ବ୍ରାହ୍ମଣବାଦ, ସାମନ୍ତବାଦ, ଧାର୍ମିକ ମୌଳବାଦ/ ସାଂପ୍ରଦାୟିକତାବାଦ, ଦେଶରେ ପୁଂଜିବାଦ/ବଜାରବାଦ, ପୃଥିବୀରେ ସାମ୍ରାଜ୍ୟବାଦର ସ୍ୱରୂପକୁ ସ୍ପଷ୍ଟ ରୂପେ ଚିହ୍ନିବା ଓ ତାର ସଂରଚନା ଓ ପରିଚାଳନା କେମିତି ନାରୀ ବିରୋଧୀ ଓ ସାମଗ୍ରିକ ଭାବରେ ମଣିଷ ଓ ପ୍ରକୃତି ବିରୋଧୀ ତାକୁ ବୁଝିବା ବିନା ନାରୀମୁକ୍ତି ଓ ପ୍ରଗତି ଦୃଷ୍ଟିରୁ ଆମେ ସାମ୍ନା କରୁଥିବା ଗତିରୋଧକୁ ଦୂର କରିବା ଦିଗରେ ସଫଳ ପଦକ୍ଷେପ ନେଇ ପାରିବା ନାହିଁ ।

ପରିବାରରେ ପିତୃସତ୍ତା, ସମାଜରେ ଥିବା ଧର୍ମପ୍ରାଣ ସାଂସ୍କୃତିକ ମାନ୍ୟତା ଠୁ ଆସୁଥିବା (ଗାଁ, ଜାତି, ସମାଜ, ଧାର୍ମିକ ସଂଗଠନ) କ୍ଷମତା ଓ ଦେଶ / ରାଜ୍ୟର ରାଜନୈତିକ କ୍ଷମତା କେତେ ନାରୀ ବିରୋଧୀ ଆମେ ତାହା ଇମ୍ରାନା ଓ ଭଁବରୀ ଦେବୀ କେଶରୁ ଜାଣି

ପାରିବା । ଇମ୍ରାନା ଉତ୍ତରପ୍ରଦେଶର ଏକ ମୁସଲିମ ମହିଳା । ସେ ନିଜ ଶ୍ୱଶୁର ଦ୍ୱାରା ବଳାତ୍କାର ର ଶିକାର ହୁଏ । ଶାଶୁକୁ ନିଜ ଦୁଃଖ କୁହେ । ଶାଶୁ କୁହେ ଚୁପ୍ ରୁହ । ସହରରେ ରହୁଥିବା ସ୍ୱାମୀକୁ ଯାଇ ଅଭିଯୋଗ କରେ । ସେ ବି କୁହେ ଚୁପ ରୁହ । ଗାଁ ସମାଜକୁ କୁହେ । ସେମାନେ ନିଷ୍ପତ୍ତି ଦିଅନ୍ତି ଯେ ତୁ ଆଜିଠୁ ତୋ ସ୍ୱାମୀର ମା ହେଲୁ ଏବଂ ଶ୍ୱଶୁର ସହ ଜୀବନ ବିତାଇବୁ । କଥାଯାଇ ପହଁଚେ ଧାର୍ମିକ ଅନୁଷ୍ଠାନ ପାଖକୁ । ମୌଲା/ ଅମିନମାନଙ୍କ ନିଷ୍ପତ୍ତି ହେଲା, ଗାଁ ସମାଜ ଯାହା କହିଛି ତାହା ଠିକ୍ । ଇମ୍ରାନା ଏସବୁକୁ ମାନିବାକୁ ପ୍ରସ୍ତୁତ ନ ହେବାରୁ, କଥାଯାଏ ରାଜନୈତିକ କ୍ଷମତାରେ ଥିବା ମୁଖ୍ୟମନ୍ତ୍ରୀ ମୁଲାୟମ ସିଂ ଯାଦବ ପାଖକୁ । ସେ ବି କୁହନ୍ତି ଇସଲାମ ଧର୍ମରେ କଣ ଅଛି ତାହା ମୁସଲିମ ସମାଜ ଆମଠୁ ଭଲଭାବେ ଜାଣେ ଏଣୁ ସେମାନେ ଯାହା ନିଷ୍ପତ୍ତି ନେଇଥିବେ ତା ଠିକ ଥିବ । ଇମ୍ରାନା ଚାରିଟି ଯାକ କ୍ଷମତା କେନ୍ଦ୍ର (ପିତୃସତ୍ତା, ଧାର୍ମିକ ସତ୍ତା, ସାମାଜିକ ସତ୍ତା, ରାଜନୈତିକ ସତ୍ତା )ରୁ ନ୍ୟାୟ ପାଇ ପାରିଲା ନାହିଁ । ଠିକ୍ ସେମିତି ଭଁବରୀ ଦେବୀ ଗାଁ ସମାଜ/ରାଜନୀତି ବାଲା / ଏପରିକି କୋର୍ଟରୁ ନ୍ୟାୟ ପାଇ ପାରିଲା ନାହିଁ । ସାହାବାନୁକୁ ଉଭୟ ଧାର୍ମିକ କ୍ଷମତା ଓ ରାଜନୈତିକ କ୍ଷମତା କେନ୍ଦ୍ରଗୁଡ଼ିକରୁ ନିରାଶ ହେବାକୁ ପଡ଼ିଥିଲା ।

ରାଷ୍ଟ୍ର, ରାଷ୍ଟ୍ରସମର୍ଥିତ ପୁଂଜିବାଦ, ବଜାରବାଦ ଓ ତା ଦ୍ୱାରା ପ୍ରଭାବିତ ଗଣମାଧ୍ୟମ ତଥା ସାମ୍ରାଜ୍ୟବାଦ କଥା ଆଲୋଚନା ଆଉ କେବେ। ମାତ୍ର ଏଇ କ୍ଷମତା କେନ୍ଦ୍ର ଗୁଡ଼ିକ ଯେଉଁ ପୁଂଜିପତି ଓ ଉଚ୍ଚ ମଧ୍ୟ ବିତ୍ତ ଶ୍ରେଣୀ ହାତରେ ଅଛି ସେମାନଙ୍କୁ ବେଦଖଲ କରିବା ସାଂଗକୁ, ସେମାନେ ରଖିଥିବା ବିଚାର, ଚରିତ୍ର, ସ୍ୱାର୍ଥ, ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସପକ୍ଷରେ ରହିଥିବା ସାମାଜିକ ସାଂସ୍କୃତିକ ଗ୍ରହଣୀୟତା ତଥା ତାକୁ ନେଇ ଅଧିକାଂଶ ଲୋକଙ୍କ ଭିତରେ ଥିବା ଭ୍ରମ ବିରୋଧରେ ଲଢ଼ିବାକୁ ହେବ । ଲଢ଼େଇରେ କି ପ୍ରକାର ଯୋଜନା, ରଣନୀତି ଜରୁରୀ ଓ ତା ସାଂଗକୁ ସେ କ୍ଷମତା କେନ୍ଦ୍ର ଗୁଡ଼ିକ ଦଖଲ ପଛରେ ଆମର ଉଦ୍ଦେଶ୍ୟ ସ୍ପଷ୍ଟ ହେବା ଆବଶ୍ୟକ ।

ସେ ଦିଗରେ ସ୍ପଷ୍ଟତା ଆଣିବା ପାଇଁ ଆହୁରି ଅନେକ ପ୍ରଶ୍ନର ଉତ୍ତର ଖୋଜିବାକୁ ହେବ । ଆମେ କେଉଁ ପ୍ରକାର ସମାଜ, ଦେଶ ଓ ପୃଥିବୀ ନିର୍ମାଣ କରିବାକୁ ଚାହୁଁ ? ପରିବାର ନାମକ ଅନୁଷ୍ଠାନରେ କି ପ୍ରକାରର ପରିବର୍ତ୍ତନ ଆବଶ୍ୟକ କିମ୍ବା ପରିବାର ନାମକ ଅନୁଷ୍ଠାନକୁ ଭାଙ୍ଗିବାକୁ ପଡ଼ିବ ? ପରିବାରର ବିକଳ୍ପ ଅନୁଷ୍ଠାନ କଣ ହେଇପାରେ ? ସଂପତ୍ତିର ଅଧିକାର ବା ବୃହତ୍ ଅର୍ଥରେ କହିଲେ କି ପ୍ରକାରର ଆର୍ଥିକ ବ୍ୟବସ୍ଥା ? ରାଜନୀତିର କଣ ହେବ ? ଧର୍ମ, ଜାତି, ସଂପ୍ରଦାୟଗୁଡ଼ିକ ଭିତରେ ଥିବା ଢାଂଚା, ବିଶ୍ୱାସ, ମୂଲ୍ୟବୋଧ, ସାଂସ୍କୃତିକ ମାନ୍ୟତାରେ ଥିବା ଅମାନବିକତା ଓ ସାଥୀ ମଣିଷ ତଥା ନାରୀ ପ୍ରତି ବିଷମ ବ୍ୟବହାର ଓ ଅବସର ସଂବଂଧରେ କଣ କରାଯିବ ? ଦେଶ ଭଳି

ଅନୁଷ୍ଠାନ ଓ ଜାତୀୟତା ଭଳି ଆବେଗ ଭିତରେ ବ୍ୟକ୍ତି ସ୍ୱାଧୀନତା ତଥା ଅଂଚଳ, ଗୋଷ୍ଠୀ, ଭାଷାକୁ ନେଇ ଥିବା କ୍ଷୁଦ୍ର ଜାତୀୟତା, ବିବିଧତାଗୁଡ଼ିକୁ ନ୍ୟାୟୋଚିତ ପରିସର କେମିତି ମିଳି ପାରିବ ? ସେ ନୂଆ / ପରିବର୍ତ୍ତିତ ପରିବାର ଅବା ତାର ବିକଳ୍ପ ଅନୁଷ୍ଠାନ, ନୂତନ ସମାଜ ଓ ସାମାଜିକ ଅନୁଷ୍ଠାନ, ନ୍ୟାୟ ଓ ସମତାମୂଳକ ସାଂସ୍କୃତିକ-ଧାର୍ମିକ ମାନ୍ୟତା, ଜାତୀୟ ବ୍ୟବସ୍ଥା ଓ ଉପ୍‌ସୀତ ଆନ୍ତର୍ଜାତୀୟତାର ଚାଳକ ଶକ୍ତି ମାନେ ପ୍ରକୃତିର ସହନଶକ୍ତି ପରିପ୍ରେକ୍ଷୀରେ ସମତା, ସ୍ୱାଧୀନତା, ଭ୍ରାତୃତ୍ୱ ଓ ଗଣତନ୍ତ୍ର ପରି ଆଧୁନିକ ମୂଲ୍ୟବୋଧର ରକ୍ଷା ସହ ବିକଳ୍ପ ବିକାଶ ଓ ସମୃଦ୍ଧିର ସ୍ୱରୂପ ଠିକ୍ କରିପାରିଲେ ତ ?

ପୁରୁଷବାଦ, ଜାତିବାଦ, ସାମନ୍ତବାଦ, ଧାର୍ମିକ ମୌଳବାଦ, ରେସିଆଲ ବାଦ, ପୁଂଜିବାଦୀ- ଉଦାରବାଦ, ସାମ୍ରାଜ୍ୟବାଦ ଭଳି ଶକ୍ତି ଓ ତତ୍ତ୍ୱ ନ୍ୟାୟ ଓ ସମତାର ପ୍ରତିଷ୍ଠା ପାଇଁ ହେଇ ଆସୁଥିବା ଚେଷ୍ଟାକୁ ବିଫଳ କରି ଆସିଛି । ସେଥିପାଇଁ ସେ ଶେଷରେ ହିଂସାକୁ ଆୟୁଧ କରିଛି । ଆଜିର ବଜାରବାଦ ମୁନାଫାସର୍ବସ୍ୱ । ମୁନାଫାକୁ ଚରମ ବିନ୍ଦୁ ଯାଏଁ ନେବା ଉଦ୍ଦେଶ୍ୟରେ ସେ ସମସ୍ତ ସଂପର୍କ, ସଂବଧକୁ ଏପରିକି ଗଣତନ୍ତ୍ର ଓ ବିକାଶର ସଜ୍ଞାକୁ ମଧ୍ୟ ନୂଆ କରି ପରିଭାଷିତ କରୁଛି । ଉତ୍ସବ ଓ ପର୍ବ ଗୁଡ଼ିକର ରୂପ ରେଖ ଆୟୋଜନକୁ ବଦଳେଇ ଦିଆଯାଉଛି । ସ୍ଥାନୀୟ ସଂସ୍କୃତି ଓ ସେ ଜନିତ ଆବଶ୍ୟକତା ପାଇଁ ସ୍ଥାନୀୟ ଛାପର ଗ୍ଲୋବାଲ ଉତ୍ପାଦନ ଓ ଅନ୍ୟଦିଗରେ ୟୁରୋପ, ଆମେରିକାର ସଂସ୍କୃତି ଏବଂ ଉତ୍ପାଦକୁ, ଜଗତଯାକରେ ଲୋକପ୍ରିୟ କରାଯାଉଛି । ତାର ଅନ୍ୟନାମ ହେଲା ସାଂସ୍କୃତିକ - ସାମ୍ରାଜ୍ୟବାଦ । 'ବଜାରବାଦ' ପରିବାର, ନାରୀ-ପୁରୁଷ ସଂପର୍କକୁ ମଧ୍ୟ ନୂଆ କରି ପରିଭାଷିତ କରୁଛି । ତାକୁ ବଜାର ଅନୁରୂପ କରୁଛି । ନାରୀକୁ ଯେଉଁ ସ୍ୱାଧୀନତା ମିଳୁଛି ତାହା ବଜାରର ମୁନାଫା ପାଇଁ ଆବଶ୍ୟକ ଶସ୍ତା ଶ୍ରମ ପାଇଁ । ବଜାର ଉତ୍ପାଦ ବିକ୍ରି ପାଇଁ, ଅଧିକ ଆୟ ପାଇଁ ନାରୀର ଦେହକୁ ବିଜ୍ଞାପନ କରୁଛି । କେବଳ ସେତିକି ନୁହେଁ ପୁଂଜିବାଦୀ-ଅର୍ଥନୀତି ଯେଉଁ ବିଳାସୀ ଶ୍ରେଣୀ ସୃଷ୍ଟି କରିଛି ତାଙ୍କର କାମନା/ ବାସନା ଚରିତାର୍ଥ ପାଇଁ ନାରୀ ପଣ୍ୟ ହେଉଛି । ଦେହ ବ୍ୟବସାୟ / ମହିଳା ଟ୍ରାଫିକିଙ୍ଗ ବଢୁଛି । ବଜାରରେ ବଜାର ପାଇଁ କିଣା ବିକା ଓ ଉପଭୋଗ୍ୟ ହେବାର ସ୍ୱାଧୀନତା ମିଳିଛି ନାରୀକୁ ।

ମୁନାଫାସର୍ବସ୍ୱ ଏକ ବ୍ୟବସ୍ଥା ନିଶ୍ଚିତ ଭାବେ ସମତା, ସ୍ୱାଧୀନତା, ଭ୍ରାତୃତ୍ୱ ଓ ଶାନ୍ତି ଆଦି ମୂଲ୍ୟବୋଧର ବିରୋଧୀ ହେବାକୁ ପ୍ରକୃତି-ପରିବେଶର ସନ୍ତୁଳନ ବିଗାଡ଼ିବାକୁ ବାଧ୍ୟ । ସେଥିପାଇଁ ତାକୁ ଏକ ବଡ଼ ସମୂହକୁ 'ବଂଚିତ' କରିବାକୁ ପଡ଼ିବ । 'ଦାସ' କରି ରଖିବାକୁ ପଡ଼ିବ । ସେଥିପାଇଁ ହିଂସାର ବ୍ୟବହାର ଏକ ଅନିର୍ବାର୍ଯ୍ୟ ସତ୍ୟ । ଠିକ୍ ସେମିତି ବଂଚିତ ଶ୍ରେଣୀ ଭିତରେ ଏକ ହିଂସ୍ରକ ଗୋଷ୍ଠୀ ବାହାରିବାଟା ମଧ୍ୟ ଅନିର୍ବାର୍ଯ୍ୟ

କଥା । ହିଂସା ଆଜି ପୃଥିବୀରେ ତଥା କଥିତ ଜଗତୀକରଣର ସର୍ତ୍ତ ହେଇସାରିଛି । ପୃଥିବୀ ଯାକର ସଂପଦର ଲୁଣ୍ଠନ ପାଇଁ, ସବୁଦେଶରେ ନିଜର ବଜାର ପାତିବାକୁ ଆମେରିକା ଓ ୟୁରୋପ ଆଦି ଯାହା ଯାହା କରୁଛନ୍ତି, ତାକୁ ଯଥାର୍ଥର ପୋଷାକ ପିନ୍ଧେଇବା ପାଇଁ ହିଂସାର ଆଶ୍ରୟ ନିଆଯାଉଛି । ବନ୍ଧୁତ୍ୱ, ଗଣତନ୍ତ୍ର ଓ ବିଶ୍ୱଶାନ୍ତିର ଦ୍ୱାହି ଦିଆଯାଉଛି। କର୍ପୋରେଟ ଜଗତରେ 'କର୍ପୋରେଟ ଗଣତନ୍ତ୍ର' କର୍ପୋରେଟ ହିଂସା ପାଇଁ ବେଶ ଅନୁକୂଳ । ହିଂସା ଯଦି ବ୍ୟବସ୍ଥାର ଅନ୍ୟ ଏକ ମୌଳିକ ତତ୍ତ୍ୱ/ଶକ୍ତି / ତନ୍ତ୍ର ହୁଏ ତେବେ ସେଠି ମହିଳା ପାଇଁ ନ୍ୟାୟର ପ୍ରଶ୍ନ ଉଠୁ ନାହିଁ । କାରଣ ବ୍ୟକ୍ତିଗତ ହିଂସା ହେଉକି ସଂଗଠିତ ହିଂସା ହେଉ ନାରୀ ସବୁବେଳେ ପୁରୁଷ ତୁଳନାରେ ଦୁର୍ବଳ । ନାରୀ ଯଦି ସେଥିରେ ଭାଗୀଦାର ହୁଏ /ଅଂଶଗ୍ରହଣ କରେ ତେବେ ଆମକୁ ଏକ ନ୍ୟାୟ ଓ ସମତା ଆଧାରିତ ପରିବାର, ସମାଜ, ଦେଶ ଓ ପୃଥିବୀ ମିଳିବା ଦିଗରେ 'ନାରୀ-ମଣିଷ'ର ସହଯୋଗ ମିଳିବ ନାହିଁ । ତାହା ଆବୁଘ୍ରାଇବ ଜେଲରେ ଥିବା ଇରାକୀ ଯୁଦ୍ଧବନ୍ଦୀ ପ୍ରତି ଆମେରିକା ମହିଳା ସୈନ୍ୟଙ୍କ ଅତ୍ୟାଚର ଓ ଗୁଜରାଟରେ ହିନ୍ଦୁମୌଳବାଦୀଙ୍କ ସହ କାନ୍ଧକୁ କାନ୍ଧ ମିଳାଇ ହିନ୍ଦୁନାରୀ/ମୁସଲିମଙ୍କ ହତ୍ୟା ଓ ମୁସଲିମ ମହିଳାଙ୍କ ଧର୍ଷଣରେ କରିଥିବା ସହାୟତା, ଦୋକାନ ଲୁଟ ଘଟଣାରୁ ସ୍ପଷ୍ଟ ହୋଇସାରିଛି ।

ଠିକ୍ ସେମିତି ଓଡ଼ିଶାର ବିଭିନ୍ନ ଅଂଚଳରେ ମହିଳାମାନେ ସ୍ୱୟଂ ସହାୟକ ଗୋଷ୍ଠୀ (SHG) ନିର୍ମାଣ କରି ଠିକା କାମ, ସ୍କୁଲର ଚାଉଳ, ଡାଲି ବଣ୍ଟନ ଭଳି ଦାୟିତ୍ୱ ନେବା ପାଇଁ ପରସ୍ପର ଭିତରେ ସଂଘର୍ଷ କରୁଛନ୍ତି । ଉଦ୍ଦେଶ୍ୟ ହେଲା ସେଥିରେ ଦୁର୍ନୀତି କରି ମୁନାଫା ପାଇବା । ଅବଶ୍ୟ ସେମାନଙ୍କ ଗୋଷ୍ଠୀ କୋଉ କୋଉଠି ମଦ ବିରୋଧୀ ଆନ୍ଦୋଳନ କରୁଥିବାର ମଧ ଦେଖିବାକୁ ମିଳୁଛି । ଠିକ୍ ସେଭଳି ବହୁରାଷ୍ଟ୍ରୀୟ କଂପାନୀ ମାନଙ୍କ ପାଇଁ ସୁସ୍ମିତା ସେନ, ଐଶ୍ୱର୍ଯ୍ୟା ରାୟ, ମଲ୍ଲିକା ଶେରାୱତ, କରୀନାମାନଂକ ବିଜ୍ଞାପନରେ ନଗ୍ନ ଦେହ ପ୍ରଦର୍ଶନ । ଆମେ କଣ ଏ ରକମର ମହିଳା ସଶକ୍ତୀକରଣ ଚାହୁଁଛେ ? ତଥାପି ମଦର ଟେରେସା, ଅରୁଣା ରାୟ, ସି.କେ. ଜାନୁ, ମାଳତୀ ଚୌଧୁରୀ, ଅନ୍ନପୂର୍ଣ୍ଣା ମହାରଣା, ମହେଶ୍ୱତା ଦେବୀ, ମେଧା, ଇମ୍ରାନା, ସାହାବାନୁ, ଭଂବରି ଦେବୀ, ଅରୁନ୍ଧତୀ ରାୟ, କେରଳର ଆଦିବାସୀ ନେତ୍ରୀ ସିକେ ଜାନୁ, କାଶୀପୁରର ଆଲାଇ, ଆମ୍ବାଇ ମାଝି ଓ ମୁକ୍ତା ଝୋଡ଼ିଆପରି ନାରୀମାନେ ତ ମଣିଷ ଓ ପ୍ରକୃତି ବିରୋଧୀ ସମ୍ବେଦନଶୂନ୍ୟ ବିକାଶ ପ୍ରକ୍ରିୟା ଉପରେ ଅଙ୍ଗୁଳି ଉଠେଇଛନ୍ତି ।

ପ୍ରଚଳିତ ବ୍ୟବସ୍ଥାରୁ ସାମଗ୍ରିକ ଭାବେ ମଣିଷର ମୁକ୍ତି ତଥା ସମତା, ସ୍ୱାଧୀନତା, ଭାତୃତ୍ୱ, ଗଣତନ୍ତ୍ର ଓ ଅହିଂସା ପରି ମୂଲ୍ୟବୋଧ ପ୍ରତି ସାମାଜିକ-ସାଂସ୍କୃତିକ ଗ୍ରହଣୀୟତା ଉପରେ ମହିଳାର ମୁକ୍ତି ଓ ପ୍ରଗତି ନିର୍ଭର କରୁଛି । ସେଥିପାଇଁ ନାରୀକୁ ବିଚାରଶୀଳ

"ମଣିଷ -ପୁରୁଷ" ସମୂହର ସମର୍ଥନ ଲୋଡ଼ା । ଏ ପ୍ରକାର ସମାଜର ନିର୍ମାଣରେ ଗତିରୋଧକ ଶକ୍ତି ଓ ତତ୍ତ୍ୱଗୁଡ଼ିକ ଯେହେତୁ ହିଂସାକୁ ଅସ୍ତ୍ରଭାବରେ ବ୍ୟବହାର କରୁଛନ୍ତି ସେଠି ଆମର ଅସ୍ତ୍ର କଣ ହେବ ? ହିଂସା ନା ଅହିଂସା । ଲଢ଼େଇ ଆରମ୍ଭରୁ କୌଣସି ଗୋଟିଏକୁ ଅନିବାର୍ଯ୍ୟ ସର୍ତ୍ତ ବୋଲି ଧରିବା କଣ ନିହାତି ଜରୁରୀ ?

**ସହଯୋଗୀ ପୁସ୍ତକ ଓ ଲେଖା -**


(୧) ହିନ୍ଦୁ ଓ୍ୱିମେନ୍ : ପ୍ରଭାତ ମୁଖାର୍ଜି, ୧୯୯୪

(୨) ହିନ୍ଦୁ ଆଇଡିଆଲ୍ ଲାଇଫ୍ : ବଟକୃଷ୍ଣ ଘୋଷ, ୧୯୪୭

(୩) ଏନ୍ ଇଣ୍ଟରଡକ୍‌ସନ ଟୁ ଦି ଷ୍ଟଡି ଅଫ୍ ଇଣ୍ଡିଆନ୍ ହିଷ୍ଟ୍ରି : ଡି.ଡି. କୋସାମ୍ବି, ୧୯୫୬

(୪) ସତ୍ତା ଔର ନାରୀ ବିମର୍ଷ : ମୃଦୁଲା ଗର୍ଗ




# ଫାସିବାଦୀ ଧର୍ମ ଓ ବିକାଶ ବନାମ ଅଭିବ୍ୟକ୍ତିର ସ୍ୱତନ୍ତ୍ରତା

ତସଲିମା ଭାରତ ଛାଡ଼ିଲେ ମୁସ୍‌ଲିମ୍ ମୌଳବାଦୀ ଓ ତାଙ୍କ ସମର୍ଥନକୁ ନିଜ ଭୋଟ ରାଜନୀତି ପାଇଁ ଅନିର୍ବାର୍ଯ୍ୟ ମନେକରୁଥିବା ରାଜନୈତିକ ଦଳମାନଙ୍କ ପାଇଁ। ପୁରୁଷ ପ୍ରାଧାନ୍ୟତା, ଲିଙ୍ଗଗତ ବୈଷମ୍ୟ, ଇସ୍‌ଲାମ ଧର୍ମ, ଧର୍ମଗ୍ରନ୍ଥ ତଥା ତାକୁ କେନ୍ଦ୍ରରେ ରଖି ଦେଶର ରାଜନୀତି ଓ ଶାସନରେ ନିଜ ପ୍ରଭାବ ବିସ୍ତାର କରିଥିବା ଅଭିଜାତ ନ୍ୟସ୍ତ ସ୍ୱାର୍ଥ ମୌଳବାଦୀ ଶ୍ରେଣୀ ବିରୁଦ୍ଧରେ ନିରନ୍ତର ସ୍ୱର ଉତ୍ତୋଳନ କରୁଥିବା ଲେଖିକାକୁ ଆତଙ୍କିତ କରି ଦେଶରୁ ତଡ଼ିଦିଆଗଲା। ଭାରତୀୟ ରାଜନୀତିର ବିଡ଼ମ୍ବନା ଯେ ଦଙ୍ଗାର ରକ୍ତରେ ତର୍ପଣ କରିଥିବା ମୋଦି ଗୁଜରାଟରେ ରହିବା ପାଇଁ ତାଙ୍କୁ ନିମନ୍ତ୍ରଣ କଲାବେଳେ ପଶ୍ଚିମବଙ୍ଗର ବାମପନ୍ଥୀ ସରକାର ଓ ସୁବିଧାପନ୍ଥୀ କଂଗ୍ରେସ ତାଙ୍କୁ ଯେମିତି ମୃତ୍ୟୁର ଭୟ ଦେଖାଇ ତଡ଼ିଲେ ସେ କଥା ଶୁଣିଲେ ଲାଗୁଛି ଭାରତରେ ତଥାକଥିତ ଗଣତନ୍ତ୍ର ଓ ଧର୍ମନିରପେକ୍ଷତାର ମୃତ୍ୟୁପାଇଁ ଏକ ଶୋକସଭା ଡକାଯିବା ଜରୁରୀ। ଶ୍ରଦ୍ଧାଞ୍ଜଳି ଜଣାଇ ସେଠୁ ନିଜ ନିଜ ଘରକୁ ଫେରିଯିବା । ତା'ପରେ ମନର, ହୃଦୟ, ବିବେକର ଓ ଆତ୍ମାର ଝରକା ଏବଂ କବାଟ କିଳି ଚୁପ ବସିଯିବା। କାହିଁକି ନା ଝରକା କବାଟ ଖୋଲା ରଖିଲେ କିଛି ଶବ୍ଦ ବାହାରିପାରେ, କିଛି ଆଲୁଅ କଣା ଛିଟିକି ପାରେ ଯାହା ମୌଳିବାଦୀ ଓ ତାଙ୍କ ସମର୍ଥକ ଶାସକ ଗୋଷ୍ଠୀ ପାଇଁ ଶ୍ରୁତିକଟୁ ଓ ଦୃଷ୍ଟିକଟୁ ହୋଇପାରେ।

ନିକଟ ଅତୀତରେ 'ହଜରତ ମହମ୍ମଦ' ବହି ଲେଖି ରବୀନ୍ଦ୍ର ପ୍ରସାଦ ପଣ୍ଡା ମୁସଲିମ ସଂପ୍ରଦାୟର ଧର୍ମୀୟ ଆବେଗର ଅବମାନନା ଅଭିଯୋଗରେ ଜେଲ ଭୋଗନ୍ତି । ତଳ କୋର୍ଟରେ ତାଙ୍କୁ ବେଲ୍ ମିଳେନା । ବହିରେ ଶ୍ରୀଯୁକ୍ତ ପଣ୍ଡା ହଜରତ ମହମ୍ମଦଙ୍କ ଫଟୋ ଛାପିଛନ୍ତି ଏବଂ ମହମ୍ମଦଙ୍କୁ ଜଣେ ଐତିହାସିକ ଚରିତ୍ର ବା ଏକ ନିର୍ଦ୍ଦିଷ୍ଟ କାଳଖଣ୍ଡ

ଓ ସଂସ୍କୃତିର ମଣିଷ ଭାବେ ଉତ୍‌ଥାପନ କରିଛନ୍ତି। ମଣିଷ ମହମ୍ମଦ ଯିଏ ଏକଦା ବେପାର କରିଥିଲେ, ଯୁଦ୍ଧ କରିଥିଲେ, ଲୁଟ କରିଥିଲେ। ଆରବ ଭୂମିରେ ଏକେଶ୍ୱରବାଦ ଓ ଆରବ ଜାତୀୟତାର ପ୍ରତିଷ୍ଠା ପାଇଁ ଅନ୍ୟ ଧର୍ମର ଲୋକଙ୍କୁ ମୁଖ୍ୟତଃ ମୂର୍ତ୍ତି ପୂଜକ ଓ ଜ୍ୟୁ ଧର୍ମର ଲୋକଙ୍କ ପ୍ରତି ଅତ୍ୟାଚାର କରିବାକୁ ପଛେଇ ନଥିଲେ। ପ୍ରଥମ ପତ୍ନୀର ମୃତ୍ୟୁ ପରେ ବିଭିନ୍ନ ସମୟରେ ଦଶଜଣଙ୍କୁ ବିବାହ କରିଥିଲେ। ସେ ବିବାହ ଗୁଡ଼ିକ ପଛରେ ରାଜନୈତିକ ଉଦ୍ଦେଶ୍ୟ ଥିଲା ବୋଲି କୁହାଯାଏ । ଏମିତି କେତେ କ'ଣ ଘଟଣା ମଣିଷ ମହମ୍ମଦଙ୍କ ଜୀବନରେ ଘଟିଛି । ତାକୁ ଅସ୍ୱୀକାର କରିବାର ଅର୍ଥ ଇତିହାସକୁ ଅସ୍ୱୀକାର କରିବା। ଆଜିର ସାମ୍ରାଜ୍ୟବାଦୀ ଶୋଷଣକୁ ଧର୍ମଯୁଦ୍ଧ କି ଜିହାଦ୍ ନୁହେଁ ବରଂ ଧର୍ମ ନିର୍ବିଶେଷରେ ଶୋଷିତ, ବଞ୍ଚିତ ଓ ଅପମାନିତ

ସାମ୍ରାଜ୍ୟବାଦ ବିରୋଧୀ ସଂଘର୍ଷ ବଳରେ ହୁଏତ ପରାହତ କରାଯାଇପାରେ ଏବଂ ଏଥିପାଇଁ ମୁସ୍‌ଲିମ୍ ସମୁଦାୟକୁ ନିଜର ଅସଲ ଆଭ୍ୟନ୍ତରୀଣ ଶତ୍ରୁ ଅର୍ଥାତ ଅଭିଜାତ ଶ୍ରେଣୀର ଧର୍ମାନ୍ଧ ମୌଳବାଦୀ ଗୋଷ୍ଠୀ ଓ ତାଙ୍କ ସ୍ୱାର୍ଥ ଅନୁରୂପ ଧର୍ମ ଓ ଧର୍ମଗ୍ରନ୍ଥର ବ୍ୟାଖ୍ୟା କରୁଥିବା, ନିର୍ଦ୍ଦେଶ ଓ ଫତୁଆ ଜାରି କରୁଥିବା ମୁଲ୍ଲା, ମୌଲବି ଓ ଇମାମ୍ ମାନଙ୍କ ଜାଲରୁ ମୁକ୍ତ ହେବାକୁ ପଡ଼ିବ । ବିଜ୍ଞାନ ସମ୍ମତ ଶିକ୍ଷା ହିଁ ତାଙ୍କୁ ଏଇ ଅନ୍ଧାରରୁ ମୁକ୍ତିର ବାଟ ଦେଖାଇ ପାରିବ। ଏଭଳି ଏକ ମହତ କଥାକୁ ଯୁକ୍ତିସିଦ୍ଧ ଢଙ୍ଗରେ ବାଢ଼ିଥିବାରୁ ରବୀନ୍ଦ୍ର ପଣ୍ଡା ହେଲେ ମୁସ୍‌ଲିମ୍ ବିରୋଧୀ । କୋର୍ଟ ବି ବେଲ୍ ଦେଲା ବେଳେ, ରୋକ୍‌ଠୋକ୍ ଶବ୍ଦରେ କହିଲା, ଧର୍ମୀୟ ଆବେଗକୁ ଆଘାତ ପହଞ୍ଚାଇଲା ଭଳି ଲେଖା ଲେଖିବେ ନାହିଁ। କାହାର କାହାର ଆବେଗକୁ ଜଗିବ ଲେଖକ, ସାହିତ୍ୟିକ ଏବଂ କଳାକାର ? ଆବେଗ ପଛରେ କୌଣସି ଯୁକ୍ତି ଜରୁରୀ ନୁହେଁ। ବିଜ୍ଞାନ ସମ୍ମତ କାରଣ ଦରକାର ନାହିଁ। ଆବେଗ ତ ଆବେଗ। ବିଶ୍ୱାସ ତ ବିଶ୍ୱାସ। ଧର୍ମୀୟ ଆବେଗ, ଜାତି ଆବେଗ, ଆଞ୍ଚଳିକ ଆବେଗ, ଭାଷାଗତ ଆବେଗ, ଜାତି ବା ରେସିଆଲ୍ ଆବେଗ, ଜାତୀୟ ବା ରାଷ୍ଟ୍ରୀୟ ଆବେଗ । ଆଲୋଚନାତ୍ମକ ବିବେକ ମରିଗଲା ମାନେ ଘୃଣା, ମୃତ୍ୟୁ ଓ ଧ୍ୱଂସର ତାଣ୍ଡବ। ଶେଷକଥା ହେଲା ତମେ ଅମୁକ ଜାତି ବା ଧର୍ମର ନୁହଁ ତେଣୁ ତାଙ୍କ ମାନସିକତା ବୁଝିପାରିବ ନାହିଁ। ଧରାଯାଉ ରବୀନ୍ଦ୍ର ପ୍ରସାଦ ପଣ୍ଡା ମୁସ୍‌ଲିମ୍ ନୁହଁନ୍ତି କିନ୍ତୁ ତସ୍‌ଲିମା କଣ ? ସାଙ୍ଗେ ସାଙ୍ଗେ ମୁହଁରୁ ବାହାରିବ ସେ କାଫେର ବା ବିଧର୍ମୀ ତାକୁ ଜନ୍ନତ ନସୀବ ହେବ ନାହିଁ, ସେ ଜହାନ୍ନୁମ (ନର୍କ)କୁ ଯିବ। ଠିକ ସେମିତି 'ହ୍ୱାଏ ଆଇ ଏମ୍ ନଟ ଏ ଖ୍ରୀଷ୍ଟିୟାନ୍' ର ଲେଖକ ବ୍ରାଟେଣ୍ଡ ରସେଲ୍‌ଙ୍କୁ କ'ଣ କହିବା ? 'ହ୍ୱାଏ ଆଇ ଆମ୍ ଏମ୍ ନଟ୍ ଏ ହିନ୍ଦୁ'ର ଲେଖକ କାଞ୍ଚା ଇଲିଆଙ୍କୁ କ'ଣ କହିବା ? ସେମାନେ ନିଜ ସମୁଦାୟର ଶୁଭଚିନ୍ତକ ନୁହଁନ୍ତି କି ?

ଅସଲ ପ୍ରସଙ୍ଗ ହେଲା ଏ ମୌଳବାଦୀମାନେ ଉଭୟ ସମାଜ ଓ ଶାସନତନ୍ତ୍ର ଉପରେ ନିଜର ପ୍ରଭୁତ୍ୱ ଓ ନିୟନ୍ତ୍ରଣ କେମିତି ପ୍ରତିଷ୍ଠା ଓ ବଜାୟ ରଖି ପାରୁଛନ୍ତି। ଅନ୍ତତଃ ଦୁଇଟି କାରଣ ସ୍ପଷ୍ଟ। (୧) ନିଜ ସଂପ୍ରଦାୟରେ ଥିବା ସଂଖ୍ୟାଗରିଷ୍ଠ ଦରିଦ୍ର ଓ ନିରକ୍ଷରଙ୍କୁ ଅନ୍ଧ କରି ରଖିବା ଏବଂ ତାଙ୍କର ବିଶ୍ୱାସ ଓ ଭରସାର ପାତ୍ର ହୋଇ ରହିବା । (୨) ରାଷ୍ଟ୍ରତନ୍ତ୍ରର ପ୍ରତ୍ୟକ୍ଷ ଓ ପରୋକ୍ଷ ସମର୍ଥନ ଯାହା ଭୋଟସର୍ବସ୍ୱ ଦଳମାନଙ୍କ ହାତରେ କବଳିତ ହୋଇ ରହିବା ।

ଆମେ ଅଭିବ୍ୟକ୍ତିର ସ୍ୱତନ୍ତ୍ରତାକୁ ଆଉ ଟିକିଏ ବ୍ୟାପକ ଦୃଷ୍ଟିରୁ ଦେଖିବା। ଆଉ ଏକ ପକ୍ଷରୁ ବିଚାର କରିବା। ସାଧାରଣଙ୍କ ଅଭିବ୍ୟକ୍ତିର ସ୍ୱତନ୍ତ୍ରତାର ଅର୍ଥ କ'ଣ ? ଏଇ ଯେମିତି କଳିଙ୍ଗନଗର, କାଶୀପୁର, ପୋସ୍କୋ, ନନ୍ଦିଗ୍ରାମ, ନର୍ମଦାଘାଟି, ସିଙ୍ଗୁର, ନିୟମଗିରି, ପ୍ରସ୍ତାବିତ ବେଦାନ୍ତ ବିଶ୍ୱବିଦ୍ୟାଳୟ ଅଞ୍ଚଳ, ହୀରାକୁଦ, ରାଞ୍ଚି, ଭୁବନେଶ୍ୱର, ବମ୍ବେ, ଲକ୍ଷ୍ନୌର ମଲ୍ ବିରୋଧୀ କିରାନା ଦୋକାନୀ, ବିଭିନ୍ନ ରାଜ୍ୟର ପ୍ରସ୍ତାବିତ ସେଜ୍ (SEZ) ଅଞ୍ଚଳର ଚାଷୀ, ଆଦିବାସୀ, ଶ୍ରମିକ, ମହିଳାଙ୍କ ମତ ବା ଅଭିବ୍ୟକ୍ତିର ଅର୍ଥ କ'ଣ ? ସିଧାସଳଖ ବାକ୍ୟରେ କହିଲେ ଏ ଧରଣର ବିକାଶ ଆମର ଦରକାର ନାହିଁ। ତେବେ ଦେଶର ପ୍ରଗତି କେମିତି ହେବ, ଆର୍ଥିକ ଅଭିବୃଦ୍ଧି ୧୦/୧୧/୧୨ କୁ କେମିତି ଛୁଇଁବ ? ଏଣୁ ଏମାନଙ୍କୁ କଳେ ବଳେ କୌଶଳ କରି ହଟାଇବାକୁ ପଡ଼ିବ। ତାଙ୍କ ମତକୁ ବିଭାଜିତ କରିବାକୁ ହେବ, ବିକୃତ କରିବାକୁ ହେବ। ବାହୁବଳ ଅର୍ଥବଳର ଚରମ ବ୍ୟବହାର। ଆଲୋଚନା ଦରକାର ନାହିଁ। ବିକାଶକୁ ନେଇ ତର୍କ, ବିତର୍କ ହେବ ନାହିଁ। ଯେମିତି ଧର୍ମ ଓ ଧର୍ମ ଗ୍ରନ୍ଥର ବାଖ୍ୟା କରିବେ ମୌଳବାଦୀ ମାନେ, ଜେହାଦୀ ମାନେ, ଧର୍ମଯୁଦ୍ଧ ଘୋଷଣା କରୁଥିବା ପଣ୍ଡିତ ଓ ଶଙ୍କରାଚାର୍ଯ୍ୟ ମାନେ। ତାର ଆଉ ଏକ ବାଖ୍ୟା କି ସଂଜ୍ଞା ହୋଇପାରେନା। ଠିକ୍ ସେମିତି ଦେଶର ପ୍ରଗତି, ବିକାଶ, ସମ୍ବନ୍ଧରେ ଆମେରିକା କି ୟୁରୋପୀୟମାନେ ଯାହା ସ୍ଥିର କରିବେ ତାହା ଶେଷ କଥା। ସେମାନଙ୍କ ଦ୍ୱାରା ନିର୍ମିତ ଅନୁଷ୍ଠାନ ଯେମିତିକି ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତୀୟ ମୁଦ୍ରା ପାଣ୍ଠି, ଏସିଆନ୍ ଡେଭଲପମେଣ୍ଟ ବ୍ୟାଙ୍କ, ଡ଼ି.ଏଫ୍.ଆଇ.ଡି.ମାନେ ଯାହା ସ୍ଥିର କରିବେ ତାଙ୍କୁ "ହୁକୁମ୍ କରୋ ମେରେ ଆକା" କହୁଥିବା ଭାରତୀୟ ଶାସକ ଶ୍ରେଣୀ ଓ ପଶ୍ଚିମୀ ଚମକରେ ବିହ୍ୱଳ ଭାରତୀୟ ଅଭିଜାତ ଯାହା କହିବେ ସେ ହେଲା ଶେଷ କଥା। ତାକୁ ନେଇ ଖୋଲା ଆଲୋଚନା କି ବିତର୍କ ଅଦରକାରୀ। ଏପରିକି ଲୋକସଭା ବିଧାନସଭାରେ ବି ନୁହେଁ। ସେମାନଙ୍କ ସ୍ଥିରୀକୃତ ଶେଷକଥା ପ୍ରତି ଯାର ଅସହମତି ରହିବ, ଅନ୍ୟମତ ଥିବ ତାକୁ ସେ ଯଦି ଆଲୋଚନା ବା ଚର୍ଚ୍ଚାକୁ

ଆଣିବାକୁ ଚାହୁଁଥାଏ ତେବେ ତାକୁ ବହୁ ସଂଖ୍ୟାରେ ମରିବାକୁ ହେବ, ମାରିବାକୁ ହେବ କିମ୍ବା ଆତ୍ମହତ୍ୟା କରିବାକୁ ହେବ। ତାର ଉଦାହରଣ ହେଲା ସେଜ୍ (SEZ)। ନନ୍ଦିଗ୍ରାମର ଗଣହତ୍ୟା ପରେ ହିଁ ସେଜ୍ (SEZ) ସମ୍ବନ୍ଧରେ କିଛିଟା ଚର୍ଚ୍ଚା ହେଲା। ଠିକ୍ ସେମିତି କୃଷି ଓ କୃଷକର ଦୁର୍ଦ୍ଦିନକୁ ନେଇ ଚର୍ଚ୍ଚା ସେତେବେଳେ ହେଉଛି ଯେତେବେଳେ ହଜାର ହଜାର ସଂଖ୍ୟାରେ ଚାଷୀ ଆତ୍ମହତ୍ୟା କରୁଛନ୍ତି। କଳିଙ୍ଗନଗର ଗଣହତ୍ୟା ପରେ ହିଁ ଓଡ଼ିଶାରେ ବିସ୍ଥାପିତଙ୍କ ପାଇଁ ନୀତି ନିର୍ମାଣ କଥା ଚିନ୍ତା କରାଯାଏ। ଆଉ ଏକ ରାସ୍ତା ହେଉଛି ରାଷ୍ଟ୍ର ବିରୋଧରେ ଯୁଦ୍ଧ, ଯାହା ମାଓବାଦୀ ମାନେ କରୁଛନ୍ତି। କିନ୍ତୁ ଗୋଟେ କଥା ଉଲ୍ଲେଖ ଜରୁରୀ ଯେ ମରିବା, ମାରିବା, ଆତ୍ମହତ୍ୟା କରିବା ଏଠି କୌଣସି ଫେସନ୍ ନୁହେଁ ବରଂ ବିକଳ୍ପହୀନ ହେଇଯାଉଥିବା କିମ୍ବା କରିଦିଆଯାଉଥିବା ଏକ ବିରାଟ ସମୂହର ଅନିର୍ବାର୍ଯ୍ୟତା। ବିତର୍କ ଆଲୋଚନା ପାଇଁ ଯେଉଁ ଦେଶରେ ମରିବାକୁ ମାରିବାକୁ ହୁଏ ସେ ପୁଣି ବହୁ ସଂଖ୍ୟାରେ ତେବେ ସେଠି ଗଣତନ୍ତ୍ରର ଅର୍ଥ କ'ଣ ? ତା'ର ସ୍ୱରୂପ କେମିତି ? ଏଠି ଗଣତନ୍ତ୍ରର ଅର୍ଥ ପାଞ୍ଚ ବରଷରେ ଥରେ ମୁଣ୍ଡ ଗଣତି। ମୁଣ୍ଡ ଗଣତି ମାନେ ସଂଖ୍ୟାଗରିଷ୍ଠତାବାଦ। ଏ ସଂଖ୍ୟା ହାସଲର କୌଶଳ, କରାମତି ଓ ଯୋଗାଡ଼ଯନ୍ତ୍ର ହିଁ ଆମର ଗଣତାନ୍ତ୍ରିକ ପ୍ରକ୍ରିୟା। ଏ ପ୍ରକ୍ରିୟାର ମୂଳ ହେଲା ପୁଞ୍ଜି। ଗଣତନ୍ତ୍ରକୁ ପୁଞ୍ଜି ଦ୍ୱାରା ମଣ କରିପାରିଛି ବିଶ୍ୱର ପୁଞ୍ଜିବାଦ ବା ପୁଞ୍ଜିବାଦୀ ଶ୍ରେଣୀ। ତେଣୁ ଗଣତନ୍ତ୍ର ଆଜି ନିଜେ ପୁଞ୍ଜିବାଦୀ ବା ଧନତନ୍ତ୍ରରେ ପରିଣତ ହୋଇସାରିଛି। ବିଶ୍ୱସ୍ତରରେ ଆମେରିକାର ଗଣତନ୍ତ୍ର ଯେମିତି ଋଣ (AID) ଓ କ୍ରୁଜ୍ ମିଶାଇଲ୍ ଉପରେ ପର୍ଯ୍ୟବେସିତ ଠିକ୍ ସେମିତି ଭାରତରେ କି ଓଡ଼ିଶାରେ ଲାଠି ଗୁଳି ଜେଲ୍ ଓ ଅନ୍ୟପଟେ କର୍ପୋରେଟ ପୁଞ୍ଜି। ସାଧାରଣ ପାଇଁ ଲାଠି ଗୁଳି ଜେଲ ଓ ଉଚ୍ଚ ମଧ୍ୟବିତ୍ତ ଏବଂ ଧନାଢ୍ୟ ଶ୍ରେଣୀ ପାଇଁ ପୁଞ୍ଜି। ପୁଞ୍ଜି ଅର୍ଥ ଆଜି ପ୍ରଯୁକ୍ତି ଓ ସିଧାସଳଖ କ୍ଷମତାର ସୁଖ। ସେଥିପାଇଁ ମୁଣ୍ଡ କିଣ, ମୁଣ୍ଡମାନଙ୍କୁ ବିଭ୍ରାନ୍ତ କର, ପ୍ରଲୋଭିତ କର, ବିକୃତ କର, ମୁଣ୍ଡମାନଙ୍କୁ ବିଭାଜିତ କର, କର ଆତଙ୍କିତ। ମୁଣ୍ଡ ଫଟାଅ ନ ହେଲେ ମୁଣ୍ଡ ମାର। କିଛି ନହେଲେ ତମ ସାଙ୍ଗେ ବେଶି ମୁଣ୍ଡ ଅଛନ୍ତି ବୋଲି ଦେଖେଇବାକୁ ଅଛି କର୍ପୋରେଟ ଗଣମାଧ୍ୟମର ମ୍ୟାଜିକ୍। ମ୍ୟାଜିକ୍ ଗଣତନ୍ତ୍ର, ଗଣତନ୍ତ୍ରର ମ୍ୟାଜିକ୍।

ଆମ ମୁଣ୍ଡଗୁଡ଼ିକ, ହୃଦୟଗୁଡ଼ିକ, ବିବେକଗୁଡ଼ିକ, ଜିଭଗୁଡ଼ିକ, କଲମଗୁଡ଼ିକ, ତୂଳୀମାନେ, ମଞ୍ଚମାନେ ଫସିଛନ୍ତି ଧାର୍ମିକ ଫାସିବାଦ ଓ ବିକାଶର ଫାସିବାଦୀ ଜାଲରେ । ପୁଞ୍ଜିବାଦୀ ବିକାଶ ଧର୍ମାନ୍ଧତା ଦୂର କରିପାରିନାହିଁ। ଜାତିବାଦୀ ଘୃଣାର ଚେରକୁ ଓପାଡ଼ି ପାରିନାହିଁ, ନାରୀବିରୋଧୀ ମାନସିକତାରୁ ସମାଜକୁ ମୁକ୍ତ କରିପାରି

ନାହିଁ। ପରିବେଶ ଓ ପ୍ରକୃତି ପ୍ରତି, ସାଥୀ ମଣିଷ ପ୍ରତି ପ୍ରେମ ଜାଗ୍ରତ କରୁନାହିଁ। ବରଂ ତାର ପୁଞ୍ଜିର ସୁରକ୍ଷା ଓ ସଂବର୍ଦ୍ଧନ ପାଇଁ ଧର୍ମାନ୍ଧତାକୁ ପ୍ରଶ୍ରୟ ଦେଇଛି, ମୌଳବାଦୀଙ୍କ ହାତରେ ଅସ୍ତ୍ର ଦେଇଛି, କ୍ଷମତା ଦେଇଛି। ପୁଞ୍ଜିବାଦୀ ତାର ବିକାଶ ରଥର ସମର୍ଥନରେ ସଂଖ୍ୟା ଗରିଷ୍ଠ ମୁଣ୍ଡ ଯୋଗାଡ଼ରେ ଏ ଧର୍ମାନ୍ଧଙ୍କ ଆଶ୍ରା ଲୋଡ଼ିଛି। ଉଭୟେ ଉଭୟଙ୍କୁ ଶକ୍ତିଶାଳୀ କରୁଛନ୍ତି। ଯେତେବେଳେ ବି ତାଙ୍କ ଭିତରେ ଯୁଦ୍ଧ ହେଉଛି ସେଥିରେ ଜଣେ ସଚେତନ ମଣିଷ କା'ରି ପକ୍ଷରେ ଛିଡ଼ା ହୋଇ ପାରେନା। ଗୋଟିଏ ପଟେ ବୁଶ୍, ଟୋନି ବ୍ଲେୟାର୍ ଅନ୍ୟପଟେ ଲାଡ଼େନ ଓ ସଦ୍ଦାମମାନେ। ଗୋଟିଏ ପଟେ ସ୍ମଡ୍, କ୍ରୁଜ୍ ମିଶାଇଲ୍ ଅନ୍ୟପଟେ ହ୍ୟୁମାନ୍ ବମ୍। ସେ ଯୁଦ୍ଧ ରେ ଯିଏ ବି ଜିତୁ ମଣିଷର ବିଜୟ ସେଠି ନାହିଁ।

ପରିବାରରେ ପୁରୁଷବାଦ, ସମାଜରେ ସାମନ୍ତବାଦ, (ଭାରତ ପରିପ୍ରେକ୍ଷୀରେ ଜାତିବାଦ ଓ ଧାର୍ମିକ ସାମନ୍ତବାଦ), ଦେଶରେ ପୁଞ୍ଜିବାଦ, ପୃଥିବୀର ସାମ୍ରାଜ୍ୟବାଦ ଥିବା ଯାଏଁ ଆମେ ଗୋଟିଏ ପଟେ ବୁଶ୍ ଓ ଅନ୍ୟପଟେ ଲାଦେନ୍‌ମାନଙ୍କୁ, ଗୋଟିଏ ପଟେ ମନମୋହନ, ବୁଦ୍ଧଦେବ ଓ ଅନ୍ୟପଟେ ମୋଦିମାନଙ୍କୁ ଭେଟୁଥିବା। ତସ୍‌ଲିମା, ଏମ୍.ଏଫ୍.ହୁସେନ୍, ରବୀନ୍ଦ୍ର ପଣ୍ଡାମାନେ, ମେଧା, ଅରୁନ୍ଧତୀ, ବିନାୟକ ସେନ୍‌ମାନେ ତ ଅପମାନିତ ଅତ୍ୟାଚାରିତ ହେଉଥିବେ ତାଠୁ ବଡ଼ ସଂକଟର କଥା ହେଲା କୋଟି କୋଟି ଚାଷୀ ଆଦିବାସୀ ଲାଠି ଖାଉଥିବେ, ଗୁଳି ଖାଉଥିବେ, ବେଘର ହେଉଥିବେ। ଓଡ଼ିଶାର କୋଉ ଗାଁରେ ଯୁବତୀକୁ ସାଇକେଲରୁ ଓହ୍ଲାଇ ଦିଆଯାଉଥିବ, ମହାରାଷ୍ଟ୍ରର ବାଲ୍ମିକୀ କଲୋନୀର ଦଳିତମାନେ ନିଆଁର ଧାସ, ଏମ୍‌ସର ଛାତ୍ରମାନେ ଅପମାନସୂଚକ ଗାଳି ବରଦାସ୍ତ କରିବାକୁ ବାଧ୍ୟ ହେଉଥିବେ। ଏଥିରୁ ମୁକ୍ତିର ବାଟ ଆମକୁ କେଉଁ ରାଜନୀତି ଦେଖାଇବ ? ଏମିତି କି ରାଜନୀତି ଅଛି ଯିଏ ଅଭିବ୍ୟକ୍ତିର ସ୍ୱତନ୍ତ୍ରତା ବି ଦେଇପାରୁଥିବ ଏବଂ ଜାତି ବର୍ଗ ବା ଲିଙ୍ଗ ନିର୍ବିଶେଷରେ ମଣିଷ ଭଳି ଜୀଇଁରହିବାର ସୁଖ ସୁବିଧା। ଆମ ସାମ୍ନାରେ ଏମିତି କିଛି ରାଜନୀତି ଅଛି କି ? ସେଭଳି ଏକ ରାଜନୀତି ନିର୍ମାଣର ଉପାଦାନ କ'ଣ ହେବ, କେଉଁମାନଙ୍କୁ ନେଇ ତାହା ସମ୍ଭବ ହେବ ? ସଂପ୍ରତି ଆମେ ଦେଖୁଥିବା ମାଓବାଦୀ, ଅନ୍ୟ ଏମ୍.ଏଲ୍‌ବାଦୀ, ଦଳିତବାଦୀ, ନାରୀବାଦୀ, ପରିବେଶବାଦୀ ଆନ୍ଦୋଳନ ଭିତରୁ କୌଣସି ଗୋଟିଏରେ ନା ଏ ସମସ୍ତ ଶକ୍ତି ପାଖରେ କିଛି କିଛି ଗ୍ରହଣୀୟ, ବିତର୍କିତ ଏବଂ ଅଗ୍ରହଣୀୟ ବୈଶିଷ୍ଟ୍ୟ ରହିଛି, ଯାର ମିଶାଣ ଫେଡ଼ାଣରେ ଏକ ନୂଆ ରାଜନୀତି କଥା ଚିନ୍ତା କରାଯାଇ ପାରିବ ? କିମ୍ବା ଏଭଳି ଦଳ, ସଂଗଠନଗୁଡ଼ିକ ଆଗକୁ ଯାଇ ଆଗକୁ ଆହୁରି ସଂପୂର୍ଣ୍ଣ ଓ ସାମଗ୍ରିକ

ହେବେ ବୋଲି ଆଶା କରିବା ଓ ସେମାନଙ୍କ ଭିତରେ ରହି ନିଜ ନିଜର ଭୂମିକା ଖୋଜିବା ? ଏବଂ ସଂବାଦ ଓ ସମନ୍ୱୟର ବାଟ ଖୋଜିବା । ଏସବୁ ଗୁରୁତର କାମ ସାଙ୍ଗକୁ କିନ୍ତୁ ଗୋଟିଏ କଥା ବରାବର ଜାରି ରହିବା ଜରୁରୀ, ସେ ହେଲା ସାମାଜିକ ଆନ୍ଦୋଳନ, ଯାହା ପରିବାରକୁ ନାରୀ ପୁରୁଷ ଓ ସାଥୀ ମଣିଷ ସହ ସଂପର୍କକୁ କରିବ ଆହୁରି ନ୍ୟାୟସଂଗତ, ସମତାପୂର୍ଣ୍ଣ । ସେ କାମଟି ଆହୁରି ପୂର୍ଣ୍ଣାଙ୍ଗ ଲାଗିବ ଯଦି ଆମେ ସନ୍ତାନ ଗଢ଼ିବାର କଳାକୁ ନେଇ ବିତର୍କ ଜାରି ରଖିବା । କିଛି ବ୍ୟବହାରିକ, ରଚନାତ୍ମକ ଗତିବିଧି ସହ ସଂବାଦ ଜାରି ରଖିବା । ସନ୍ତାନ ଗଢ଼ା କଥା କହିଲେ ଘର ଭିତରର ଓ ସମାଜର ଅଣଆନୁଷ୍ଠାନିକ ଶିକ୍ଷା ଏବଂ ବାହାରର ଆନୁଷ୍ଠାନିକ ଶିକ୍ଷା ବ୍ୟବସ୍ଥାରେ ସଂସ୍କାର ଓ ପରିବର୍ତ୍ତନର କଥା ଉଠିବ । ଛୁଆଟିଏ କେବଳ ପୁରୁଷ କି ନାରୀ ନହୋଇ ଅମୁକ ଜାତି ଧର୍ମର ନହୋଇ ମଣିଷ ହେଉଥିବ, ମଣିଷକୁ ଭଲ ପାଉଥିବ । ପରିବାର ବାହାରର ବୃହତ୍ତର ସମାଜ ଓ ଦୁନିଆ ସହ ନିଜକୁ ଯୋଡ଼ି ପାରୁଥିବ । ନ୍ୟାୟ ସମତା ପ୍ରତି ଅନୁରକ୍ତି ରଖୁଥିବ । ଏଭଳି ଏକ ସନ୍ତାନ ଗଢ଼ାରେ ବାପା ଓ ମା' ମାନେ ସମାନ ପରିପୂରକ ଭୂମିକା ନେବା ଜରୁରୀ । ଏମିତି କଣ ସମ୍ଭବ ? ସମ୍ଭବ ନହେଲେ କିନ୍ତୁ ମଣିଷ ଜାତିର ମୁକ୍ତିର ସମ୍ଭାବନାର ବାଟ କିଳି ହୋଇଯିବ ।

ଅନ୍ୟ ରାଜନୈତିକ ଆର୍ଥିକ ଆନ୍ଦୋଳନ ସହ ଶିକ୍ଷା ଓ ସ୍ୱାସ୍ଥ୍ୟ ସମସ୍ୟାକୁ ନେଇ କିଛି ରଚନାତ୍ମକ କାମ ଓ ସଂଘର୍ଷ ଯାହା ସମୟକ୍ରମେ ଆନ୍ଦୋଳନଗୁଡ଼ିକୁ ଗଣବିପ୍ଳବରେ ରୂପ ଦେବାରେ ସାହାଯ୍ୟ କରିବ ଏ ସଂପର୍କରେ ଚିନ୍ତନ, ମନନର କାମ କରୁଥିବା ମଣିଷଙ୍କ ଭିତରେ ଏକ ଅର୍ଥପୂର୍ଣ୍ଣ ସମ୍ବାଦ ଜରୁରୀ ।

ଆମ ଓଡ଼ିଶାରେ ଗମ୍ଭୀର ଚିନ୍ତନ, ମନନ ସହ ଲିଖନ କର୍ମ କରୁଥିବା ଓ ସେ ଅନୁରୂପ ବ୍ୟକ୍ତି ଜୀବନ ଜୀଇଁବା ସହିତ ରାଜନୈତିକ ଭାବେ ବିଭିନ୍ନ ଜନ ଆନ୍ଦୋଳନ ଓ ରାଜନୈତିକ ପ୍ରକ୍ରିୟାରେ ସକ୍ରିୟ ଥିବା ଲୋକଙ୍କ ଘୋର ଅଭାବ କିନ୍ତୁ ରହିଛି ।



# ବ୍ରହ୍ମ ସଙ୍କଟ

ଛାନ୍ଦୋଗ୍ୟ ଉପନିଷଦର ଏକ କାହାଣୀ ଆଜି ମନେ ପଡୁଛି। ଯେଉଁଠି ଜଣେ ଋଷି 'ବ୍ରହ୍ମ' ଖୋଜୁଥିବା ଏକ ଶିଷ୍ୟକୁ କହୁଛନ୍ତି ଅନ୍ନ ହିଁ ବ୍ରହ୍ମ। ଛାର ଅନ୍ନ ପୁଣି ବ୍ରହ୍ମ, ଶିଷ୍ୟ ଏ କଥା ବୁଝିପାରିଲା ନାହିଁ। ଆଶ୍ଚର୍ଯ୍ୟ ହୋଇ ଗୁରୁଙ୍କୁ ଅନେଇ ରହିଲା। ଗୁରୁ କହିଲେ, 'ଯଦି ବୁଝି ପାରିଲନି ଗୋଟିଏ କାମ କର - ତୁମେ ଆଜି ଯେତିକି ଖାଇବ ତା ପରବର୍ତ୍ତୀ ଦିନ ତାର ଅଧା ଖାଇବ, ପୁଣି ତାର ପରବର୍ତ୍ତୀ ଦିନ ଅଧା ଖାଇବ, ପ୍ରତିଦିନ ପୂର୍ବ ଦିନର ଅଧେ ଖାଇବ। ଶିଷ୍ୟ ଗୁରୁ ଆଜ୍ଞା ଶିରୋଧାର୍ଯ୍ୟ କହି ଫେରିଗଲା। ଆଜ୍ଞା ଅନୁଯାୟୀ ଦିନକୁ ଦିନ ଖାଦ୍ୟ କମି ଚାଲିଲା । ଦେହ ଦୁର୍ବଳ ହେବାକୁ ଲାଗିଲା। ସେ ଆଉ ଧ୍ୟାନ କରିପାରିଲା ନାହିଁ, କି ମନ୍ତ୍ର ଉଚ୍ଚାରଣ କରିପାରିଲା ନାହିଁ। ମୁମୂର୍ଷୁ ଅବସ୍ଥାରେ ପହଞ୍ଚିଲା ଗୁରୁଙ୍କ ପାଖରେ। ଗୁରୁ କହିଲେ, 'ଏବେ ବୁଝି ପାରିଲ ତ! ଅନ୍ନ କେମିତି ବ୍ରହ୍ମ'। ଏ କାହାଣୀ ଆହୁରି ଆଗକୁ ଲମ୍ବିଛି। ଏଇ ଯେମିତି ଜଳ ହିଁ ବ୍ରହ୍ମ। ଖାଦ୍ୟ ନଖାଇ ଜଣେ ଯେତିକି ଦିନ ବଞ୍ଚି ପାରିବ, ପାଣି ନ ପିଇ ସେତେ ଦିନ ବଞ୍ଚିପାରିବ ନାହିଁ। ଠିକ୍ ସେମିତି ଜଳ ବିନା କିଛି ଦିନ ବଞ୍ଚି ହେବ କିନ୍ତୁ ବାୟୁ ବିନା କେତୋଟି ମିନିଟ୍ ବି ନୁହେଁ। ଅନ୍ନ, ଜଳ ଓ ବାୟୁ ବିନା ଯେତେବେଳେ ଶରୀର ଧାରଣ ସମ୍ଭବ ନୁହେଁ ତାଠୁ ଆଉ ବଡ଼ ବ୍ରହ୍ମ କିଏ ହୋଇପାରେ! ଏ କାହାଣୀ ପଢ଼ିଲା ପରେ ମନକୁ ଗୋଟିଏ କଥା ଆସୁଛି। ସେ ହେଲା ଅନ୍ନ ଯଦି ବ୍ରହ୍ମ ତେବେ ଅନ୍ନ ଉତ୍ପାଦନ କରୁଥିବା ଅନ୍ନଦାତାଙ୍କୁ କ'ଣ କୁହାଯିବ? ଏ ସମ୍ପର୍କରେ ଆମର ପୁରାଣ ସଂହିତା ବେଦ ଉପନିଷଦ କ'ଣ କହୁଛି ମୁଁ ଜାଣେନା। କିନ୍ତୁ ଆଜି ଅନ୍ନଦାତା ନିଜେ ସଙ୍କଟରେ। ଅନ୍ନଦାତା ଓ କୃଷିର ସଙ୍କଟ ଏତେ ଗମ୍ଭୀର ଓ ଜଟିଳ ଯେ, ସଙ୍କଟ ନିଜେ ଆଜି ବ୍ରହ୍ମ ପାଲଟି ଯାଇଛି। ସେ ବ୍ରହ୍ମକୁ ବୁଝିବାର ଅନ୍ତରଙ୍ଗ ଚେଷ୍ଟାଟିଏ ହେଉ।

ସ୍ୱାଧୀନତା ପୂର୍ବରୁ ଓ ପରେ କୃଷି ସଂକଟକୁ ନେଇ ହେଉଥିବା ଆନ୍ଦୋଳନର ମୂଳରେ ଥିଲା ଜମି ଅଧିକାର। ସେ ଆନ୍ଦୋଳନରୁ ଭୂସଂସ୍କାର ଆଇନ ଓ ସିଂଲି ବହିର୍ଭୂତ ଜମି ଛାଡ଼ିବା କଥା ଆସିଥିଲା। ତା ସହ ବିନୋବାଙ୍କ ଭୂଦାନ ଯଜ୍ଞ ଥିଲା ସେ ସମୟର ଚର୍ଚ୍ଚିତ ପ୍ରସଙ୍ଗ। ଜମି ଆନ୍ଦୋଳନର ଦମନ, ଭୂଦାନ ନାଁରେ ଆନ୍ଦୋଳନକୁ ଦୁର୍ବଳ କରିବାର ଚେଷ୍ଟା ତଥା ସରକାରୀ ସ୍ତରରେ ଭୂସଂସ୍କାରକୁ କାର୍ଯ୍ୟକାରୀ କରିବାର ପ୍ରତିବଦ୍ଧତା ଅଭାବରୁ ଜମି ଆନ୍ଦୋଳନ ଇପ୍ସିତ ଲକ୍ଷ୍ୟ ହାସଲ କରିପାରି ନଥିଲା। ତା ସତ୍ତ୍ୱେ ଭାରତର ବିଭିନ୍ନ ପ୍ରାନ୍ତରେ ଜମି ଆନ୍ଦୋଳନ ଚାଲିଲା। ଭାଗଚାଷୀର ଅଧିକାର ଓ ମାଲିକାନାକୁ ନେଇ ଆନ୍ଦୋଳନ ଚାଲିଲା। ପଶ୍ଚିମବଙ୍ଗରେ ଅପରେସନ୍ ବର୍ଗାରେ ଭାଗଚାଷୀଙ୍କ ଅଧିକାରକୁ ମାନ୍ୟତା ଓ ଓଡ଼ିଶାରେ ନବକୃଷ୍ଣ ଚୌଧୁରୀଙ୍କ ସରକାର ଭାଗଚାଷ ଆଇନ ତିଆରି କଲେ। କିନ୍ତୁ ଭୂସଂସ୍କାର ଓ ଜମି ଅଧିକାରର କାମଟି ଅସମାପ୍ତ ରହିଥିବା ବେଳେ ଆସିଲା ପ୍ରଥମ ସବୁଜ ବିପ୍ଳବର କଥା। ଅନେକେ କୁହନ୍ତି ଜମି ଅଧିକାର କୈନ୍ଦ୍ରିକ ଲୋହିତ ବିପ୍ଳବକୁ ମାତ୍ କରିବା ଲାଗି ପ୍ରଥମ ସବୁଜ ବିପ୍ଳବକୁ ପ୍ରବର୍ତ୍ତନ କରାଗଲା। ସେକଥା କେତେ ସତ କେତେ ମିଛ ସେ ବିବାଦକୁ ଯିବା ନାହିଁ । ସବୁଜ ବିପ୍ଳବ ପଛର ଯୁକ୍ତି ହେଲା ଦେଶକୁ ଖାଦ୍ୟ କ୍ଷେତ୍ରରେ ଆତ୍ମନିର୍ଭରଶୀଳ କରିବା। ସେଥିପାଇଁ ଯୁଦ୍ଧକାଳୀନ ଭିତ୍ତିରେ ଅଧିକ ଉତ୍ପାଦନ କରିବାକୁ ପଡ଼ିବ। ବିଦେଶରୁ ଖାଦ୍ୟ ଆମଦାନୀ କରିବା ଦେଶପାଇଁ ଲଜ୍ଜାର ବିଷୟ ଓ ସାର୍ବଭୌମତ୍ୱ ପ୍ରତି ବିପଦ। ଏଠି ପ୍ରଶ୍ନ ଉଠେ ଯେ, ହଜାର ହଜାର ବର୍ଷର କୃଷି ସଂସ୍କୃତି ଥିବା ଏ ଦେଶରେ ଖାଦ୍ୟାଭାବ ଦେଖାଯିବାର କାରଣ କଣ ? ଅଧିକ ଉତ୍ପାଦନ ପାଇଁ ଭାରତୀୟ ଚାଷୀ ପାଖରେ କଣ ଆବଶ୍ୟକ ଜ୍ଞାନ କୌଶଳ ନଥିଲା। ନିଶ୍ଚିତ ରୂପେ ଥିଲା, କିନ୍ତୁ ଉପନିବେଶକ ଶକ୍ତି ଓ ସ୍ଥାନୀୟ ଶୋଷକ ଶ୍ରେଣୀର ଭୟଙ୍କର ଶୋଷଣ ଯୋଗୁଁ ଚାଷୀର ସାମାଜିକ ଓ ଆର୍ଥିକ ସ୍ଥିତି ଅତି ଦୟନୀୟ ସ୍ତରରେ ପହଞ୍ଚିଥିଲା। ଅନ୍ୟ ଦିଗରେ ବର୍ଷାଜଳ ଉପରେ ନିର୍ଭରଶୀଳ ଭାରତୀୟ ଚାଷୀ ବାରମ୍ବାର ବନ୍ୟା, ମରୁଡ଼ି ଓ ଦୁର୍ଭିକ୍ଷର ସାମନା କରିଥିଲା। ସଦ୍ୟ ସ୍ୱାଧୀନତା ପାଇଥିବା ସରକାର ମଧ୍ୟ ଆବଶ୍ୟକ ପୁଞ୍ଜି ଲଗାଣର ଅଭାବ ହେତୁ ଭିତ୍ତିଭୂମି ସ୍ତରୀୟ ସୁବିଧା (ଜଳସେଚନ, ସଂରକ୍ଷଣ, ବିକ୍ରି ବ୍ୟବସ୍ଥା) ଯୋଗାଇ ଦେବାରେ ବିଶେଷ ସଫଳ ହୋଇପାରି ନଥିଲେ।

ଦେଶର ଖାଦ୍ୟ ଆତ୍ମନିର୍ଭରଶୀଳତାକୁ ପ୍ରାଥମିକତା ଦେବା ମାନେ ଅଧିକ ଉତ୍ପାଦନ ପାଇଁ ଆବଶ୍ୟକୀୟ ବ୍ୟବସ୍ଥା କରିବା। ସେଥିପାଇଁ ଦୁଇଟି ରାସ୍ତା ଥିଲା। ସ୍ୱଦେଶୀ ଜ୍ଞାନ କୌଶଳ ଓ ଚାଷୀଙ୍କ ଶୈକ୍ଷିକ-ଆର୍ଥିକ ସ୍ଥିତିକୁ ଦୃଷ୍ଟିରେ ରଖି ତାଙ୍କୁ ସୁହାଉଥିବା ଭଳି କ୍ଷୁଦ୍ର ବିକେନ୍ଦ୍ରିତ ଜଳସେଚନ, ଶ୍ରମ ଓ ରୋଜଗାରଭିତ୍ତିକ ଆତ୍ମନିର୍ଭରଶୀଳ କୃଷି ବ୍ୟବସ୍ଥା ଯାହା

ସ୍ୱଳ୍ପ ପୁଞ୍ଜିରେ ସମ୍ଭବ। ସ୍ୱଳ୍ପ ସରକାରୀ ସାହାଯ୍ୟରେ ଚାଷୀ ନିଜେ ନିଜର ଶକ୍ତି ମୁତାବକ ଯାହା କରିପାରିଥାନ୍ତା। ଅନ୍ୟଟି ହେଲା ବିଦେଶୀ ଜ୍ଞାନ କୌଶଳ ଯେଉଁଥିପାଇଁ ସରକାରଙ୍କୁ ବ୍ୟାପକ ପୁଞ୍ଜି ଲଗାଣ କରିବାକୁ ପଡ଼ିବ। ସେ ପ୍ରକାର କୃଷି ବ୍ୟବସ୍ଥାକୁ ସ୍ଥାପିତ କରିବା ଲାଗି ବିଦେଶୀ ସାହାଯ୍ୟ (ଜ୍ଞାନକୌଶଳ ଯନ୍ତ୍ର, ଋଣ, ରାସାୟନିକ ସାର ଉତ୍ପାଦନ ପାଇଁ ପେଟ୍ରୋଲିୟମ ଖଣିଜ) ନେବାକୁ ପଡ଼ିବ। ପାଶ୍ଚାତ୍ୟରେ ବୃହତ୍ ପରିକଳ୍ପନାର ମ୍ୟାଜିକ୍‌ରେ ଅନ୍ଧ ଆମର ଶାସକ ଶ୍ରେଣୀ ବୃହତ୍ ଖଣିଜଶିଳ୍ପ, ବୃହତ୍ ନଦୀବନ୍ଧ ସହ ପ୍ରଥମ ସବୁଜ ବିପ୍ଳବ ନାଁରେ ଦ୍ୱିତୀୟ ରାସ୍ତାଟିକୁ ବାଛିନେଲା।

ପ୍ରଥମ ସବୁଜବିପ୍ଳବ ଯୋଗୁଁ ଦେଶ ଖାଦ୍ୟ ଦୃଷ୍ଟିରୁ ପ୍ରାୟ ତିନି ଚାରି ଦଶନ୍ଧି ପାଇଁ ଆତ୍ମନିର୍ଭରଶୀଳ ହେଲା ଏକଥା ସତ। ବିଶେଷତଃ ଏହା ଜଳସେଚିତ ଅଞ୍ଚଳରେ ସୀମିତ ରହିଲା। ସବୁଜ ବିପ୍ଳବର ଅସଲ କଥା ଥିଲା ବୃହତ ନଦୀବନ୍ଧ ଯୋଜନା ଦ୍ୱାରା ଜଳସେଚନ, ଅଧିକ ଅମଳକ୍ଷମ ବିହନ, ରାସାୟନିକ ସାର ଓ କୀଟନାଶକର ବ୍ୟବହାର। ଦେଶୀଚାଷ ପଦ୍ଧତି ଯାହା ଦଶହଜାର ବର୍ଷର କୃଷି ସଂସ୍କୃତି (ନିଜ ବିହନ, ନିଜ ସାର, ପ୍ରାକୃତିକ ଉପାୟରେ କୀଟନାଶ ଓ ପରିଚାଳନା, ମିଶ୍ରିତ ଚାଷ) ନଷ୍ଟ ହୋଇଗଲା। ମିଶ୍ରିତ ଚାଷ, ଅନେକ ପ୍ରକାରର ଶସ୍ୟ ଡାଲି, ତେଲ ମସଲା ଜାତୀୟ ଫସଲକୁ ଉପେକ୍ଷା କରି କେବଳ ଧାନ ଓ ଗହମ ଉପରେ ଧ୍ୟାନ ଦିଆଗଲା। ଧାନ ଓ ଗହମ ଛଡ଼ା ଅନ୍ୟ ଫସଲର ସର୍ବନିମ୍ନ ମୂଲ୍ୟ, ବଜାର ବ୍ୟବସ୍ଥା ତାର ସଂରକ୍ଷଣ ଆଦି କାମକୁ ଅବହେଳା କରାଗଲା। ପ୍ରୋତ୍ସାହନ ଅଭାବ, ଉପଯୁକ୍ତ ମୂଲ୍ୟ, ବଜାର ବ୍ୟବସ୍ଥା ଓ ଶୀତଳ ଭଣ୍ଡାର ଆଦିର ଅଭାବ ଯୋଗୁଁ ଧାନ ଓ ଗହମ ଛଡ଼ା ଅନ୍ୟ ଫସଲ କରିବା ପାଇଁ ଚାଷୀ ପ୍ରେରଣା ପାଇଲେ ନାହିଁ। ଏହାର ପରିଣତି ହେଲା ଦେଶର ଖାଦ୍ୟ ଆତ୍ମନିର୍ଭରଶୀଳତା କେବଳ ଗହମ ଓ ଧାନ କ୍ଷେତ୍ରରେ ସୀମିତ ରହିଲା । ଏମିତି ଏକ ସମୟ ଆସିଲା ଯେ, ବାହାରୁ ବାକି ଶସ୍ୟ, ଡ଼ାଲି ଓ ତେଲ ଆଦି ଆମଦାନୀ କରିବାକୁ ହେଲା। ଭାରତୀୟ କୃଷିରେ ଏମିତି ଏକ ସମୟ ଆସିଲା ଯେତେବେଳେ ଦେଶ ବାହାରୁ ଶସ୍ତା ତେଲ (ପାମ୍, ସୋୟା) ଆଣି ଜମା କରାଯିବାରୁ ଚାଷୀଙ୍କ ଭିତରେ ତେଲ ଚାଷ ପ୍ରତି ଅନାଗ୍ରହ ବଢ଼ିଲା। ଆଜି ତେଲ କ୍ଷେତ୍ରରେ ଆତ୍ମନିର୍ଭରଶୀଳତା ନଷ୍ଟ ହୋଇଯାଇଛି କହିଲେ ଚଳେ। ସବୁଜ ବିପ୍ଳବର କିଛି ସ୍ୱାଭାବିକ ପରିଣତି ହେଲା ( ୧ ) ଦେଶୀ ଧାନ ବିହନର ମୃତ୍ୟୁ ଓ ପାରମ୍ପରିକ ପନିପରିବା ବିହନର ଅଭାବ, ( ୨ ) ବିହନ, ସାର କୀଟନାଶକ ପାଇଁ ଚାଷୀ, ସରକାର ଓ ବଜାର ଉପରେ ନିର୍ଭରଶୀଳ ହେଲା। ସମୟକ୍ରମେ ବଜାର ଉପରେ ନିର୍ଭରଶୀଳତା ବଢ଼ିଲା। ଜମିର ଉର୍ବରତା ଓ ଆର୍ଦ୍ରତା ନଷ୍ଟ ହେଲା, (୩) ଗୋଟିଏ ସମୟ ପରେ ଉତ୍ପାଦନ ସ୍ଥିର ରହିବା

ସହ ଏବେ ତଳକୁ ଖସି ଚାଲିଛି। ରାସାୟନିକ ଚାଷ ଯୋଗୁଁ ବନ୍ଧୁକୀଟ, ପ୍ରଜାପତି, ମାଟିରେ ଥିବା ଉପକାରୀ ଅଣୁଜୀବ, ଜିଆ, ଗେଣ୍ଡା, ମାଛ ଓ ବେଙ୍ଗର ବଂଶ ଲୋପ ପାଇଲା। କୃଷି ଖର୍ଚ୍ଚ କ୍ରମଶଃ ବୃଦ୍ଧି ପାଇଲା। ସାର ଓ କୀଟନାଶକର ବ୍ୟବହାର ବର୍ଷକୁ ବର୍ଷ ବଢ଼ି ଚାଲିଲା। ଉତ୍ପାଦନର ଆୟରୁ ଉତ୍ପାଦନ ଖର୍ଚ୍ଚ କାଟିଦେଲେ ଅସଲ ଆୟ ଏତେ କମ୍ ହେଲା ଯେ ଚାଷ ଆଉ ଲାଭଜନକ ପେସା ହୋଇ ରହିଲାନାହିଁ। ଅନେକ ଚାଷୀ ଚାଷକାମ ଛାଡ଼ିଦେଲେ, (୪) ଚାଷ ପାଇଁ ନହୋଇ କେବଳ କ୍ଷୀର ପାଇଁ ଗାଈ କଥା ଚିନ୍ତା କରି ଶ୍ୱେତ ବିପ୍ଳବ ନାଁରେ ଦେଶୀ ଗାଈ ପାଳନ ବନ୍ଦ ହୋଇଗଲା। ଏଥିସହ ନିମ୍ନ ଲିଖିତ କାରଣ ଯୋଗୁଁ ଚାଷର ସ୍ଥିତି ଆହୁରି ଦୁର୍ବଳ ହେଲା :- (୧) କୃଷି ଓ ଶିଳ୍ପଜାତ ଦ୍ରବ୍ୟ ମଧ୍ୟରେ ତାରତମ୍ୟ ବୃଦ୍ଧି (୨) ସାର ଓ କୀଟନାଶକ, ବିହନ, ଯନ୍ତ୍ରପାତି, ଡିଜେଲ୍, ବିଜୁଳି ଦର ଓ ଜଳକର ବୃଦ୍ଧି (୩) ନକଲି ବିହନ, ନକଲି କୀଟନାଶକ, ସାରର କଳାବଜାରୀ ତଥା ଅଭାବୀ ବିକ୍ରି କୃଷକର ସମସ୍ୟାକୁ ବହୁଗୁଣିତ କଲା (୪) କୃଷକକୁ ଅଣକୁଶଳୀ ଶ୍ରମିକର ମାନ୍ୟତା ଦେବା ଓ ତାର ପରିବାର ସଂଖ୍ୟାକୁ ଛଅ ବଦଳରେ ତିନି ଧରାଯାଇ ସେହି ଭିତ୍ତିରେ ତାର ମଜୁରି, ଆୟ ଓ କୃଷିଜାତ ଦ୍ରବ୍ୟର ଦର ସ୍ଥିର କରାଯାଉଥିବା ହେତୁ ତାର ଆର୍ଥିକ ସ୍ଥିତି ଉନ୍ନତ ହେବାର ସମ୍ଭାବନା ରହିଲା ନାହିଁ। ତା ସହିତ ତ୍ରୁଟିପୂର୍ଣ୍ଣ ଋଣ ଓ ବୀମା ନୀତି ଏବଂ ବିକେନ୍ଦ୍ରିତ ଜଳସେଚନ ବ୍ୟବସ୍ଥାର ଅଭାବ ବୋଝ ଉପରେ ନଳିତା ବିଡ଼ା ସାବ୍ୟସ୍ତ ହେଲା (୫) ଶିକ୍ଷା ଓ ସ୍ୱାସ୍ଥ୍ୟର ଘରୋଇକରଣ ପରବର୍ତ୍ତୀ ଅତିରିକ୍ତ ଖର୍ଚ୍ଚର ବୋଝ ବହନ ଚାଷୀ ପାଇଁ ଅସମ୍ଭବ ହେଲା (୩) କୃଷିରେ ସରକାରୀ ପୁଞ୍ଜି ଲଗାଣ ହ୍ରାସ ପରିସ୍ଥିତିକୁ ଦୁର୍ବିସହ କଲା।

ମୋଟାମୋଟି କଥା ହେଲା ଏଭଳି ଚାଲିଲେ ଚାଷୀ ଚାଷ ଛାଡ଼ିଦେବାକୁ ବାଧ୍ୟ ହେବ କିମ୍ବା ଏଭଳି ଖର୍ଚ୍ଚବହୁଳ କୃଷି ପରମ୍ପରାକୁ ଜାରି ରଖିବାକୁ ଚାହିଁଲେ ଋଣଗ୍ରସ୍ତ ହୋଇ ଅଭାବୀ ଜୀବନ ବଞ୍ଚିବ କିମ୍ବା ଆତ୍ମହତ୍ୟା ଭଳି ଦୁଃଖଦ ଅନ୍ତ ଆଡ଼କୁ ଠେଲି ହୋଇଯିବ। ଭାରତରେ ଲକ୍ଷରୁ ଊର୍ଦ୍ଧ୍ୱ ଓ ଓଡ଼ିଶାରେ ଗତ ୧୦ ବର୍ଷରେ ୩୦୦୦ ରୁ ଉର୍ଦ୍ଧ ଚାଷୀ ଆତ୍ମହତ୍ୟା କରିସାରିଲେଣି (ଇଣ୍ଡିଆନ୍ କ୍ରାଇମ୍ ବ୍ୟୁରୋ) । ୮୦ ଶତକଡ଼ାରୁ ଅଧିକ ଚାଷୀ ଋଣଗ୍ରସ୍ତ। ଭୟଙ୍କର ସଂକଟରେ କୃଷି ଓ କୃଷକ। ଏ ସଂକଟରୁ ମୁକୁଳିବା ଲାଗି କଣ କରାଯିବ। ସରକାରଙ୍କ ଭୂମିକା କଣ ହେବା ଉଚିତ ? ଚାଷୀ ଓ ଚାଷୀ ସଂଗଠନମାନେ କଣ କରିବା କଥା ? ଏଭଳି ପ୍ରଶ୍ନ ମନକୁ ଆସିବା ସ୍ୱାଭାବିକ।

ଭାରତରେ ଚାଷୀଙ୍କ ଭିତରୁ ୮୪ ଶତକଡ଼ା ହେଲେ ଛୋଟ ଓ ନାମମାତ୍ର ଚାଷୀ। ଅର୍ଜୁନ ସେନଗୁପ୍ତ କମିଟୀ ରିପୋର୍ଟ ଅନୁସାରେ ଏକ ଚାଷୀ ପରିବାରର ପ୍ରତି ବ୍ୟକ୍ତି ଦିନ

ପିଛା ଆୟ ମାତ୍ର ୯ ରୁ ୧୭ ଟଙ୍କା ଭିତରେ। ସେ ଭିତରୁ ୬୦ ଶତକଡ଼ା ଖାଦ୍ୟରେ, ୧୮ ଶତକଡ଼ା ଜଳଖିଆରେ କପଡ଼ା ଶିକ୍ଷାରେ ୫୦ ପଇସା ଏବଂ ଔଷଧରେ ୧ ଟଙ୍କା ପ୍ରତିଦିନ ଖର୍ଚ୍ଚ ହୁଏ। ଗୋଟିଏ ଚାଷୀ ପରିବାରର ଦୈନିକ ମଜୁରୀ ୩୦ ରୁ ୩୫ ଟଙ୍କା ମାତ୍ର। ଅନ୍ୟ ଦିଗରେ ୧୯୪୭ ରେ ସକଳ ଘରୋଇ ଉତ୍ପାଦନରେ କୃଷିର ଯୋଗଦାନ ଥିଲା ୬୫ ଶତକଡ଼ା। ଯେବେ ୪୭ କୋଟି ଲୋକଙ୍କ ପାଇଁ ଖାଦ୍ୟାନ୍ନ ଉତ୍ପାଦନ ହେଉଥିଲା। ୨୦୦୫ରେ ୧୦୫ କୋଟି ଲୋକଙ୍କ ପାଇଁ ଖାଦ୍ୟନ୍ନ ଉତ୍ପାଦନ ବେଳକୁ ସକଳ ଘରୋଇ ଉତ୍ପାଦ (ଜି.ଡ଼ି.ପି.)ରେ କୃଷିର ଅବଦାନ ୨୦ ଶତକଡ଼ା। ୨୦୧୦-୧୧ ବେଳକୁ ତାହା ୧୫.୩ ଶତକଡ଼ା ରେ ପହଞ୍ଚିବ। କୃଷି ଓ ଗ୍ରାମୀଣ ବିକାଶ ପାଇଁ ଯେତିକି ଅର୍ଥ ଆବଣ୍ଟିତ ହୋଉଛି ତାହା ସକାଳ ଘରୋଇ ଉତ୍ପାଦନର ୧ ଶତକଡ଼ାରୁ ମଧ କମ୍। ତା ଅର୍ଥ କୃଷିରେ ପୁଞ୍ଜି ଲଗାଣ ଲଗାତାର ଭାବରେ କମି ଚାଲିଛି। ଏସବୁ ଆଲୋଚନାର ହଠାତ୍ ଉତର ହେଲା କୃଷିରେ ପୁଞ୍ଜିଲଗାଣ ଜରୁରୀ। ସରକାର, ଘରୋଇପୁଞ୍ଜିପତି, ଚାଷୀ ଓ ଚାଷୀ ସଂଗଠନ ସମସ୍ତେ ସେକଥା କହୁଛନ୍ତି। ଅବଶ୍ୟ ଏ ସମସ୍ତଙ୍କ ପାଇଁ ପୁଞ୍ଜି ନିବେଶର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସମାନ ନୁହେଁ । ସରକାର କହୁଛନ୍ତି ତାଙ୍କ ପାଖରେ ପୁଞ୍ଜି ନାହିଁ କିନ୍ତୁ ଘରୋଇ ବା କମ୍ପାନୀ ପୁଞ୍ଜି ଅଛି। ପୁଞ୍ଜିପତି, ବହୁରାଷ୍ଟ୍ରିୟ କମ୍ପାନୀମାନେ ପୁଞ୍ଜି ଖଟାଇବାକୁ ପ୍ରସ୍ତୁତ ଅଛନ୍ତି ।

ଲାଭ-ଲୋଭ-ଭୋଗ ଲାଗି ପୁଞ୍ଜି ଖଟାଉଥିବା କମ୍ପାନୀମାନେ ଚାଷୀର ହିତ ଲାଗି କାହିଁକି ପୁଞ୍ଜି ଖଟାଇବେ ? ସେମାନେ ବିହନ, ସାର, କୀଟନାଶକ ସହ ଜମି ଓ ପାଣିକୁ ନେଇ ବ୍ୟବସାୟ କରିବା ଲାଗି ବେଶି ଆଗ୍ରହୀ। ବ୍ୟବସାୟୀର ଚରମ ଲକ୍ଷ୍ୟ ହେଲା-ଏକାଧିକାର ବା ସମ୍ପୂର୍ଣ୍ଣ ମାଲିକାନା। କୃଷି ଓ ସାମଗ୍ରିକ ରୂପେ ଖାଦ୍ୟକୁ ନେଇ ଆନ୍ତର୍ଜାତୀୟ ବ୍ୟବସାୟ। କୃଷିର କମ୍ପାନୀକରଣ। କମ୍ପାନୀକରଣର ଲକ୍ଷ୍ୟ ହାସଲ ପାଇଁ ପ୍ରଥମ ଲକ୍ଷ୍ୟ ହେଲା କୃଷିକୁ ପୁଞ୍ଜି ଭିତିକ କରିବା। ଶ୍ରମ, ରୋଜଗାର କେନ୍ଦ୍ରିକ ତଥା ଆତ୍ମନିର୍ଭରଶୀଳ କୃଷି ବ୍ୟବସ୍ଥାକୁ ସମ୍ପୂର୍ଣ୍ଣ ଧ୍ୱଂସ କରିବା ବିନା କମ୍ପାନୀକରଣର ଲକ୍ଷ୍ୟ ହାସଲ ଦିଗରେ ଅଗ୍ରସର ହେବା ସମ୍ଭବ ନୁହେଁ। କୃଷିକୁ ପୁଞ୍ଜିଭିତିକ କରିବାର ଅର୍ଥ ହେଲା ଯାହା ହାତରେ ପୁଞ୍ଜି ସେ ହିଁ କେବଳ କୃଷି କରିବ। କୃଷି ପାଇଁ ଏଯାଏ ବ୍ୟବହୃତ ହେଉଥିବା ଦେଶୀ ବା ସ୍ଥାନୀୟ ଜ୍ଞାନ କୌଶଳ (ନିଜସ୍ୱ ବିହନ, ସଂରକ୍ଷଣ ଓ ସମ୍ବର୍ଦ୍ଧନ, ପ୍ରାକୃତିକ ଉପାୟରେ ସାର ଓ କୀଟନାଶକ ପ୍ରସ୍ତୁତି, ରୋଗ ପୋକ ନିୟନ୍ତ୍ରଣ, ଫସଲଜନିତ ବିବିଧତା ଓ ମିଶ୍ରିତ ଚାଷର ସଂସ୍କୃତି) ର ଭୂମିକାକୁ ଗୌଣ କରାଯିବ। ପୁଞ୍ଜିଭିତିକ କୃଷିକୁ ସ୍ଥାପିତ କରିବା ପାଇଁ ଦେଶୀ ପଦ୍ଧତି ଓ ଦେଶୀ ଜ୍ଞାନ କୌଶଳର ଦଶହଜାର ବର୍ଷର କୃଷି ସଂସ୍କୃତିର ଅସ୍ୱୀକାର, ତିରସ୍କାର ଓ ବହିଷ୍କାର ଜରୁରୀ। ଏ ଲକ୍ଷ୍ୟ ହାସଲ ଦିଗରେ ପ୍ରଥମ ସବୁଜ

ବିପ୍ଲବ ଏକ ବଡ଼ ଭୂମିକା ନିର୍ବାହ କରି ସାରିଛି। ଧାନ ଓ ଗହମ ଭଳି ଶସ୍ୟ ଜାତୀୟ ଫସଲକୁ ବି ସେ ପୁଞ୍ଜି ସଘନ ଚାଷର ପରିଣତ କରି ଦେଇ ପାରିଛି। ଅଧିକ ଅମଳକ୍ଷମ ବିହନ, ରାସାୟନିକ ସାର କୀଟନାଶକ, ବ୍ୟାପକ ଯାନ୍ତ୍ରିକୀକରଣ ଓ ଏଭଳି କୃଷି ପାଇଁ ମାତ୍ରାଧିକ ଜଳ ଆବଶ୍ୟକତାର ପୂର୍ତ୍ତିର ଅର୍ଥ ହେଲା ଅଧିକ ପୁଞ୍ଜି ଖଟାଣ। ସାର, ବିହନ, କୀଟନାଶକ ପାଇଁ ଚାଷୀ ଆଜି ବଜାର ଉପରେ ଏବଂ ତତ୍‌ଜନିତ ପୁଞ୍ଜିପାଇଁ ସରକାରୀ ଓ ବେସରକାରୀ ଋଣ ପ୍ରଦାନକାରୀ ସଂସ୍ଥା, ଅନୁଷ୍ଠାନ ତଥା ବ୍ୟକ୍ତି ଉପରେ ନିର୍ଭରଶୀଳ। ଗହମ ଓ ଧାନ ଉପରେ ମାତ୍ରାଧିକ ଗୁରୁତ୍ୱ ହେତୁ ଫସଲର ବିବିଧତାର ଗୋଟିଏ ରକମ ମୃତ୍ୟୁ ଘଟି ଚାଲିଛି ଯାହା ଆମର ଖାଦ୍ୟ ବିବିଧତା ଓ ଖାଦ୍ୟ ଆତ୍ମନିର୍ଭରଶୀଳତାକୁ ଅନେକଟା ନଷ୍ଟ କରିସାରିଲାଣି। ଛୋଟ ଶସ୍ୟ (ମାଣ୍ଡିଆ, ବାଜରା, କୁଦୋ, କୋସଲା, ସୁଆଁ, ଗୁରୁଜୀ, କାଙ୍ଗୁ, କୁଆର, ଗଙ୍ଗେଇ) ଡାଲି, ତେଲ, ମସଲା ଓ ସମ୍ପ୍ରତି ପନିପରିବାର ଘୋର ଅଭାବ ଦେଖିବାକୁ ମିଳୁଛି। କପା, ଜାଟ୍ରୋପା ଓ ବ୍ୟବସାୟିକ ପ୍ଲାଣ୍ଟେସନ ପ୍ରଭାବ, ଉପରଲିଖିତ ଫସଲ ହେଉଥିବା ଚାଷ ଜମିକୁ ମାଡ଼ି ବସୁଛି। ଜଳସେଚନର ଅଭାବ, ସ୍ୱଳ୍ପ ବୃଷ୍ଟି ଓ ରୋଗପୋକ ଆଦି କୌଣସି ଏକ କାରଣରୁ ଧାନ, ଗହମ ଫସଲ ବିଫଳ ହେଉଥିବା ବେଳେ ଲୋକଙ୍କୁ ବିକଳ୍ପ ଦେଉଥିବା, ଖାଦ୍ୟ ସୁରକ୍ଷା ଯୋଗାଉଥିବା ଛୋଟ ଶସ୍ୟ (ଯାହା ଖୁବ୍ କମ୍ ବର୍ଷାରେ ଓ ବିନା ରାସାୟନିକ ଓ କୀଟନାଶକରେ ଉତ୍ପାଦିତ ହୋଇଥାଏ) ଆଜି ଲୋପ ପାଇବାକୁ ବସିଛି। ପ୍ରଥମ ସବୁଜ ବିପ୍ଲବ ପରେ ପରେ ଜଗତୀକରଣର କଥା ସାମ୍ନାକୁ ଆସେ। ଆମଦାନୀ ରପ୍ତାନୀ ନୀତିରେ ପରିବର୍ତ୍ତନ, କୃଷିରେ ସରକାରୀ ପୁଞ୍ଜି ଲଗାଣ ହ୍ରାସ, ଅର୍ଥକାରୀ ଫସଲ ନାଁରେ ଖାଦ୍ୟଶସ୍ୟ ଉତ୍ପାଦନ ପ୍ରତି ଅବହେଳା, ରପ୍ତାନୀ ଭିତ୍ତିକ କୃଷିର ସ୍ଲୋଗାନ, ଅଣକୃଷି କାମରେ ଚାଷ ଜମିର ବ୍ୟାପକ ବ୍ୟବହାର। ଅବିଚାରିତ ଶିଳ୍ପାୟନ ପରିପ୍ରେକ୍ଷୀରେ ଚାଷଜମି ଅଧିଗ୍ରହଣ, ଶିଳ୍ପାୟନଜନିତ ପ୍ରଦୂଷଣର ପ୍ରଭାବ, ଜଳ ଓ ବିଦ୍ୟୁତ ଶକ୍ତିରୁ ଚାଷୀର ବଞ୍ଚିତୀକରଣ ପରିସ୍ଥିତିକୁ ଆହୁରି ଜଟିଳ କରିବାରେ ଲାଗିଛି। ରପ୍ତାନୀଭିତ୍ତିକ କୃଷି ଓ ଅର୍ଥକାରୀ ଫସଲର ସ୍ଲୋଗାନ ତଥା ଶିକ୍ଷା ଓ ସ୍ୱାସ୍ଥ୍ୟର ଘରୋଇକରଣ ଯୋଗୁଁ ଜୀବନ ନିର୍ବାହଜନିତ ଖର୍ଚ୍ଚ ବୃଦ୍ଧି କାରଣରୁ ଅଧିକ ଆୟ ଅଧିକ ଉତ୍ପାଦନର ନିଶା ଚାଷୀଙ୍କ ଭିତରେ ଏତେ ବଢ଼ିଯାଇଛି ଯେ ଚାଷକୁ ନେଇ ତାର ରହିଥିବା ସାଧାରଣ ଜ୍ଞାନ ଓ ଗଣିତ ବୁଦ୍ଧିକୁ ହରେଇ ବସୁଛି। ତଥାକଥିତ ଅର୍ଥକାରୀ ଫସଲ ପଛର ଖର୍ଚ୍ଚ, ଋଣ, ଋଣର ସୁଧ, ଫସଲ ପାଇଁ ଆବଶ୍ୟକ ହେଉଥିବା ସଂରକ୍ଷଣ ବ୍ୟବସ୍ଥା, ସର୍ବନିମ୍ନ ବଜାର ଦର ଓ ବଜାରବ୍ୟବସ୍ଥା ବିଷୟରେ ଗମ୍ଭୀରତାର ସହ ଚିନ୍ତା ନ କରି ମାତିଯାଇଛି। ସମୟକ୍ରମେ କୃଷି ଓ କୃଷକପ୍ରଧାନ ଭାରତ ଦେଶ ପ୍ରଥମେ ଋଣଗ୍ରସ୍ତ ଚାଷୀର ଦେଶରେ ଓ ପରେ କୃଷକ ଆତ୍ମହତ୍ୟାର ଦେଶରେ ପରିଗଣିତ ହେଉଛି।

ଅସମାପ୍ତ ଭୂସଂସ୍କାର, ରାସାୟନିକ ଚାଷର ଖର୍ଚ୍ଚ ବହୁଳତା, ସରକାରୀ ପୁଞ୍ଜି ଲଗାଣ ହ୍ରାସ, ପ୍ରଚଳିତ ବିକାଶ ପଦ୍ଧତି ଯୋଗୁଁ ପରିବେଶ ନଷ୍ଟ ଓ ଜଳବାୟୁ ପରିବର୍ତ୍ତନ, ଦରଦାମ ବୃଦ୍ଧି, ତ୍ରୁଟିପୂର୍ଣ୍ଣ ଋଣ ଓ ବୀମା ବ୍ୟବସ୍ଥା, କୃଷି ଉତ୍ପାଦ ଓ କୃଷକର ମଜୁରୀ ସ୍ଥିର ବେଳେ ସଂଗଠିତ ଓ ଶିଳ୍ପକ୍ଷେତ୍ର ତୁଳନାରେ ପାତର ଅନ୍ତର ନୀତି ସହ ଯୋଡ଼ି ହୋଇଥିବା ଐତିହାସିକ ଅବହେଳା ଓ ଶୋଷଣର ସମାଧାନ ଖୋଜା ହେଉଛି କାଁଭାଁ କୃଷିଋଣ ଛାଡ଼, କୃଷିଜାତ ଦ୍ରବ୍ୟର ଦରରେ ପଚାଶ ଶହେ ଟଙ୍କା ବୃଦ୍ଧି, ବୋନସ ପ୍ରଦାନ, ପ୍ରାକୃତିକ ବିପର୍ଯ୍ୟୟଜନିତ ରିଲିଫ ଭଳି ସାମୟିକ ରିହାତିର ପଦକ୍ଷେପ ଗୁଡ଼ିକ ମାଧ୍ୟମରେ। ଯେତେବେଳେ ବି ସମାଧାନ କଥା ଉଠିଛି କୁହାଯାଇଛି କୃଷିରେ ଘରୋଇ ପୁଞ୍ଜିକୁ ଅଗ୍ରାଧିକାର ଦିଆଯାଉ। ତା ସହିତ ଘରୋଇ ପୁଞ୍ଜିପତି ବା କମ୍ପାନୀମାନେ ପୁଞ୍ଜିଲଗାଣ ପାଇଁ ରଖୁଥିବା ସର୍ତ୍ତଗୁଡ଼ିକୁ ସରକାର ନୂତନ କୃଷିନୀତି, ଯୋଜନା ଓ ଆଇନ ଭାବରେ ଆମ ସାମନାରେ ପେସ୍ କରୁଛି। ସେମାନଙ୍କର ସର୍ତ୍ତଗୁଡ଼ିକ ହିଁ ଆଜି ଆମର ନୀତି, ଆଇନ ଓ ଯୋଜନା। ଠିକାଚାଷ ଆଇନ୍, ସରକାରୀ ପୁଞ୍ଜି ପ୍ରତ୍ୟାହାର, ବିହନ ବିଲ୍ ୨୦୧୦, ଜିନ୍ ପରିବର୍ତ୍ତନ ବିହନ ପ୍ରଚଳନ, ନୂତନ କୃଷି ବିପଣନ ଆଇନ, ରପ୍ତାନୀ ଭିତ୍ତିକ କୃଷି, ଆମଦାନୀ ରପ୍ତାନୀ ନୀତିରେ ପରିବର୍ତ୍ତନ, ଜମି ଓ ଜଳ ଉପରେ କମ୍ପାନୀର ଏକାଧିକାରକୁ ସ୍ୱୀକୃତି ଓ ସମ୍ପୂର୍ଣ୍ଣ ଯାନ୍ତ୍ରିକୀକରଣ ଆଦି କଥାକୁ ମାନି ନେବାର ଅର୍ଥ ହେଲା ଚାଷୀକୁ ଜମିରୁ, କ୍ଷେତରୁ, ପାଣିରୁ, ବିହନରୁ ନିଜ ଇଚ୍ଛା ଓ ଆବଶ୍ୟକତା ମୁତାବକ ଫସଲ ବାଛିବା ଅଧିକାରରୁ ବେଦଖଲ କରିବା। ମୋଟାମୋଟି କଥା ହେଲା ଚାଷକୁ ଏଭଳି ପୁଞ୍ଜି ସଘନ କରିଦିଆଯିବ ଯେ ଛୋଟ, ନାମମାତ୍ରଚାଷୀ ଆଉ କୃଷି କାମରେ ରହିପାରିବେ ନାହିଁ । ତେଣୁ ଭିଜନ୍ ୨୦-୨୦ ରେ ଏକ ବଡ଼ଭାଗ ଚାଷୀଙ୍କୁ ଚାଷ କାମରୁ ବାହାର କରିବା କଥା କୁହାଯାଉଛି। ଚିଦାମ୍ବରମ କହୁଛନ୍ତି ଏତେ ଲୋକ ଗାଁରେ କାହିଁକି । ମୁଁ ଚାହେଁ ସେମାନେ ସମସ୍ତେ ସହରକୁ ଆସନ୍ତୁ। 'ଏତେ ଲୋକ କୁଆଡ଼େ ଯିବେ ?' ଚାଷ ଭିନ୍ନ ଅନ୍ୟ ଅଣକୃଷିଭିତ୍ତିକ ରୋଜଗାର ଅଛିକି ? ଅଣକୃଷି ଭିତ୍ତିକ ରୋଜଗାର ଏତେବଡ଼ ସଂଖ୍ୟକ ଲୋକ ପାଇଁ ସୃଷ୍ଟିକରାଯାଇ ପାରିବକି ଭଳି ପ୍ରଶ୍ନର ଉତ୍ତର ସରକାରଙ୍କ ପାଖରେ ନାହିଁ। କୃଷି ଏକ କ୍ଷତି ଜନକ ପେଶାର ଅନୁଭବ ଓ ବଢ଼ନ୍ତା ଖର୍ଚ୍ଚ ପାଇ ଅକ୍ଷମତା ତଥା ସଂକଟ ବେଳାରେ ସରକାର ଓ ରାଜନୀତିକ ଦଳଗୁଡ଼ିକ ପକ୍ଷରୁ ଆଶ୍ୱାସନା ନ ମିଳିବା ଆଦି କାରଣରୁ ଚାଷୀମାନେ ଚାଷକାମ ଛାଡ଼ି ଦେବାକୁ ବାଧ୍ୟ ହେଉଛନ୍ତି।

ସ୍ୱାଭାବିକ ଭାବେ ପ୍ରଶ୍ନ ଉଠିବ - ତା ହେଲେ ବାଟ କଣ। (୧) କୃଷିରେ ପୁଞ୍ଜିଲଗାଣ ଜରୁରୀ କିନ୍ତୁ ତାହା ସରକାରୀ ପୁଞ୍ଜି ହେବା ଆବଶ୍ୟକ ଏବଂ ପୁଞ୍ଜିଲଗାଣର

ଚରିତ୍ର ଓ ସ୍ୱରୂପ ସ୍ଥିର କରିବେ ଚାଷୀ। ପ୍ରଚଳିତ କୃଷି ବ୍ୟବସ୍ଥାର ବିକଳ୍ପ କଥା ଉଠିଲେ ଜୈବିକ ଚାଷ, ଅର୍ଗାନିକ୍ ଫାର୍ମିଙ୍ଗ, ଇକୋଲଜିକାଲ ଫାର୍ମିଙ୍ଗ, ପ୍ରାକୃତିକ ଚାଷ ଓ ଦେଶୀଚାଷ ଭଳି ଅନେକ ନାଁ ଶୁଣିବାକୁ ମିଳୁଛି। ନାଁଟି ଯାହା ହେଉନା କାହିଁକି ଏନେଇ ବିଶ୍ୱବ୍ୟାପୀ ଆଲୋଚନା ଓ ପରୀକ୍ଷା ନିରୀକ୍ଷା ଚାଲିଛି। ତାର କାରଣ ହେଲା (୧) ରାସାୟନିକ ଚାଷର କ୍ଷତି ନେଇ ଲୋକଙ୍କ ତିକ୍ତ ଅନୁଭୂତି ଓ ସଚେତନତା, (୨) ଏହାର ପ୍ରଶ୍ନବାଚୀ ସ୍ଥାୟୀତ୍ୱ, (୩) ପରିବେଶ ଉପରେ ଏହାର କୁପ୍ରଭାବ, (୪) ଏ ନେଇ ଆଲୋଚନା ବ୍ୟାପକ ହେବାର ଅନ୍ୟତମ ବଡ଼ କାରଣ ହେଲା ରାସାୟନିକ ଚାଷର ବିକଳ୍ପ ଭାବେ ଜୈବଚାଷର ବିଶ୍ୱବ୍ୟାପୀ ପରୀକ୍ଷା ନିରୀକ୍ଷା ଓ ଅନେକ ସ୍ଥାନରେ ତାର ଆଶାନୁରୂପ ସଫଳତା । ଏହାର ସଫଳ ପ୍ରୟୋଗରେ ଛୋଟଚାଷୀ/ଗ୍ରାମବାସୀଠୁ ଆରମ୍ଭ କରି ବ୍ୟକ୍ତିଗତ, ବୈଜ୍ଞାନିକ, କୃଷି ବିଶେଷଜ୍ଞ ଏବଂ କ୍ୟୁବା ଭଳି ଦେଶର ନାଁ ଜଡ଼ିତ (ଯେଉଁଠି ଜୈବକୃଷି ହେଲା ଜାତୀୟ କୃଷିନୀତି) । ଏ ଆଲୋଚନା ଓ ପ୍ରୟୋଗଜନିତ ସଫଳତା ଆତଙ୍କିତ କରୁଛି ପ୍ରଥମ ସବୁଜ ବିପ୍ଳବର ଆପାତତଃ ବିଫଳତା ପରେ ଦ୍ୱିତୀୟ ସବୁଜ ବିପ୍ଳବ ଜରୁରୀ ବୋଲି ଉଚ୍ଚସ୍ୱରରେ କହୁଥିବା ଲୋକଙ୍କୁ ଓ ତାଙ୍କ ପଛରେ ଥିବ ସାର, ବିହନ, କୀଟନାଶକ ଓ ଖାଦ୍ୟକୁ ନେଇ ଜାତୀୟ ଓ ଆନ୍ତର୍ଜାତୀୟ ବେପାର କରୁଥିବା ବହୁରାଷ୍ଟ୍ରୀୟ କମ୍ପାନୀ ତଥା ତାଙ୍କ ସହ ମେଣ୍ଟ କରିଥିବା ଦେଶୀ କମ୍ପାନୀ, ବୈଜ୍ଞାନିକ, ଗବେଷକ, ବୁଦ୍ଧିଜୀବୀ ଓ ସରକାରୀ ବେସରକାରୀ କୃଷି ବିଶ୍ୱବିଦ୍ୟାଳୟ ଓ ଅନୁଷ୍ଠାନଙ୍କୁ। ଆତଙ୍କିତ ହେବାର ବଡ଼କାରଣ ହେଲା, ଜୈବକୃଷି ମୂଳରେ ରହିଛି କୃଷକର ଆତ୍ମନିର୍ଭରଶୀଳତା। ବିହନ, ସାର ଓ କୀଟନାଶକ ପାଇଁ ସେ ଆଉ ବଜାରକୁ ଯିବ ନାହିଁ।। ଦେଶୀ ଗାଈ, ପ୍ରକୃତି ଓ ଦେଶୀ ପଦ୍ଧତିର ସାହାଯ୍ୟ ନେଇ ନିଜ ହାତରେ ନିଜ କ୍ଷେତରେ ବାଡ଼ିରେ ଘରେ ସାର ଓ କୀଟନାଶକ ତିଆରିବ। ବୃହତ୍ ଯନ୍ତ୍ର ବ୍ୟବହାର କରିବ ନାହିଁ। ଆନୁପାତିକ ଭାବେ ଜଳର ବ୍ୟବହାର କମିବ। କୃଷିରେ ସ୍ୱଳ୍ପ ପୁଞ୍ଜି ଲାଗିବ। ତା ଅର୍ଥ ସାର, ବିହନ, କୀଟନାଶକ ଓ କୃଷି ଯନ୍ତ୍ରପାତିର ବିଶ୍ୱବ୍ୟାପୀ ବେପାରରୁ କରି ଲକ୍ଷ ଲକ୍ଷ କୋଟି ଟଙ୍କାର ଲାଭ ମାରି ନେଉଥିବା କମ୍ପାନୀ ମାନଙ୍କର କଣ ହେବ ? ତାଙ୍କଠୁ କମିଶନ ନେଉଥିବା ରାଜନୈତିକ ଦଳ, ନେତା, ପ୍ରଶାସକ, ବୈଜ୍ଞାନିକ, ଗବେଷକ ଓ ଗବେଷଣା ପ୍ରତିଷ୍ଠାନମାନେ କ'ଣ କରିବେ ? ସାର, ବିହନ, କୀଟନାଶକ, ଯନ୍ତ୍ରପାତିରେ ସବ୍‌ସିଡ଼ି ନାଁରେ ଚାଲିଥିବା କମ୍ପାନୀ ତୁଷ୍ଟିକରଣ ଓ ଖର୍ଚ୍ଚବହୁଳ ଚାଷ ଦୃଷ୍ଟିରୁ ଋଣ ବ୍ୟବସ୍ଥାରେ ହେଉଥିବା ଦୁର୍ନୀତି ଓ କମିଶନୀରେ ଜଡ଼ିତ ଲୋକଙ୍କର କଣ ହେବ ? ବ୍ୟାପକ ଜଳସେଚନ ନାଁରେ ବୃହତ ନଦୀବନ୍ଧ ପ୍ରକଳ୍ପ ନିର୍ମାଣ ଓ ପରେ ତାକୁ ଅବିଚାରିତ ଶିଳ୍ପାୟନ ପାଇଁ ବ୍ୟବହାରର ଷଡ଼ଯନ୍ତ୍ରକୁ ବଳ ମିଳିବ କେମିତି ? ଦୁର୍ଭାଗ୍ୟକୁ ଏମାନେ ଆମ ଶାସକ ଶ୍ରେଣୀ ଓ ନୀତି ଯୋଜନା ପ୍ରସ୍ତୁତକାରୀ। ତେଣୁ ଏମାନେ

ପ୍ରଥମ ସବୁଜ ବିପ୍ଳବର ବିଫଳତାର ଅସଲ କାରଣକୁ ନା ମାନିବେ, ନା ସେ ସମ୍ପର୍କରେ ସତ କଥାଟି ଲୋକଙ୍କୁ କହିବେ। ଦ୍ୱିତୀୟ ସବୁଜ ବିପ୍ଳବ ନାଁରେ କୃଷିର କମ୍ପାନୀକରଣ ଦିଗରେ ଗୋଟିଏ ପରେ ଗୋଟିଏ ପଦକ୍ଷେପ ନେଇ ଚାଲିବେ। ଜୈବଚାଷର ପ୍ରତିଷ୍ଠା ଦିଗରେ ଏମାନେ ସ୍ୱାଭାବିକ ଭାବେ ବାଧକ ଶକ୍ତି ଓ ଶତ୍ରୁ ଭାବେ ଛିଡ଼ା ହେବେ।

ଜୈବ ଚାଷର ପ୍ରତିଷ୍ଠା ଦିଗରେ ଥିବା ସମସ୍ୟା ଓ ଆହ୍ୱାନ ଗୁଡ଼ିକ ସମ୍ପର୍କରେ ସ୍ୱଚ୍ଛ ଚର୍ଚ୍ଚା କରିବା। (୧) ରାସାୟନିକ ଚାଷ ବିନା ଅଧିକ ଉତ୍ପାଦନ ସମ୍ଭବ ନୁହେଁର ମିଥ୍ ଓ ମାନସିକତା ଆମ ଅକଲରେ ପଥର ପକେଇ ଦେଇଛି। ତିନି ଚାରି ଦଶନ୍ଧି ଧରି ଅଭ୍ୟାସରେ ପରିଣତି ହୋଇଥିବା ରାସାୟନିକ କୃଷି ବ୍ୟବସ୍ଥାର ବିପରୀତରେ ଯିବାର ବିଶ୍ୱାସ ଓ ସାହସର ଅଭାବ। ନୂତନ ପ୍ରୟୋଗଜନିତ ମାନସିକତା ବା ଆଗ୍ରହର ଅଭାବ, (୨) ରାସାୟନିକ ଚାଷକୁ ଲୋକଙ୍କ ଭିତରେ ପୂରେଇବା ଏକ ରାଷ୍ଟ୍ରୀୟ ପ୍ରଚେଷ୍ଟା ଥିଲା। ତା ପଛରେ ରିହାତି, ମାଗଣା ଓ ସବ୍‌ସିଡ଼ି ସହ ପ୍ରଶାସନିକ କଳର ଅନବରତ ପ୍ରୟାସ ଥିଲା। କିନ୍ତୁ ଜୈବ ଚାଷ ବ୍ୟବସ୍ଥା ପାଇଁ ଚାଲିଥିବା ସ୍ଥାନୀୟ ପ୍ରଚେଷ୍ଟା, ପ୍ରୟୋଗ ଓ ବିକ୍ଷିପ୍ତ ଭାବରେ ଦେଶର ବିଭିନ୍ନ ପ୍ରାନ୍ତରେ ମିଳିଥିବା ସଫଳତାର କାହାଣୀର ସୀମିତ ପ୍ରଚାର ଓ ପ୍ରସାର ଏତେବଡ଼ ଦେଶ, ଏତେ ବଡ଼ କୃଷକ ସମାଜକୁ ପ୍ରଭାବିତ ଓ ପ୍ରେରିତ କରିବା ସହଜ ନୁହେଁ କି ସମ୍ଭବ ନୁହେଁ। ଏ କ୍ଷେତ୍ରରେ ସରକାରୀ ପ୍ରୋତ୍ସାହନର ଅଭାବ ରହିଛି। ଜୈବ କୃଷି ପାଇଁ ଅଳ୍ପ କିଛି ରିହାତି ଓ ସବ୍‌ସିଡ଼ିର ଯୋଜନା ଅଛି ସତ ମାତ୍ର ଜୈବ କୃଷିକୁ ଯେହେତୁ ଜାତୀୟ କୃଷିନୀତିରେ ପ୍ରାଥମିକତା ମିଳିନାହିଁ ତେଣୁ ରାସାୟନିକ କୃଷିର ପ୍ରଚାର ପ୍ରସାର ମାତ୍ରାଧିକ ହୋଇଥାଏ। ଏପରିକି କୃଷିବିଭାଗ ଜୈବକୃଷିକୁ ଚାଷୀଙ୍କ ପାଖରେ ପହଞ୍ଚାଇବା ଲାଗି ରହିଥିବା ସୀମିତ ସରକାରୀ ଯୋଜନା ଅଛି ତାକୁ ମଧ କାର୍ଯ୍ୟକାରୀ କରିବା ଲାଗି ଆନ୍ତରିକତା ଦେଖାଉ ନାହିଁ। ଜୈବ କୃଷି ସହ ଜଡ଼ିତ ହୋଇ ରହିଛି ଗୋପାଳନ ଓ ଛେଳି ମେଣ୍ଢା ଭଳି ଗୃହପାଳିତ ପଶୁ ପାଳନର କଥା। ଯାନ୍ତ୍ରିକୀକରଣ ଯୋଗୁଁ ଦେଶରେ ଗାଈଗୋରୁ ସଂଖ୍ୟା ବେଶ କମିଯାଇଛି। ସେଥିରେ ପୁଣି ଶ୍ୱେତ ବିପ୍ଳବ ନାଁରେ ଦେଶୀ ଗାଈ ପାଳନର ପରମ୍ପରାର ମୃତ୍ୟୁ ଘଟିଲାଣି। ଜୈବ ଚାଷପାଇଁ ଦେଶୀ ଗାଈର ଖତ ଓ ମୂତ ଗୁରୁତ୍ୱପୂର୍ଣ୍ଣ। ଅବିଚାରିତ ଶିଳ୍ପାୟନ ବ୍ୟବସାୟିକ ପ୍ଳାଣ୍ଟେସନ୍ ଯୋଗୁଁ ଦିନକୁ ଦିନ ଗୋଚରଣ ଭୂମିର ଅଭାବ ବଢ଼ିବାରେ ଲାଗିଛି। (୪) ଜୈବିକ କୃଷିପାଇଁ ଆବଶ୍ୟକ ପ୍ରାକୃତିକ ସାର ଓ କୀଟନାଶକର ପ୍ରସ୍ତୁତି ଲାଗି ଯଥେଷ୍ଟ ଜଙ୍ଗଲ ଓ ବିବିଧ ଗଛ ପତ୍ରର ଆବଶ୍ୟକତା ରହିଛି। ଯାହାକୁ ଆମର ତଥାକଥିତ ବିକାଶ ଓ ସହରୀକରଣ ନଷ୍ଟ କରିଚାଲିଛି। (୫) ଜଳ ସେଚିତ ଅଞ୍ଚଳରେ ଜଣେ ଦିଜଣ ଚାଷୀ ଏ ବିକଳ୍ପ କୃଷି ବ୍ୟବସ୍ଥାକୁ ଆପଣାର କରିବା କଷ୍ଟସାଧ୍ୟ । କାରଣ

ପାଣି ପରିଚାଳନାର ମାଧ୍ୟମ ଓ ସ୍ରୋତ ଗୋଟିଏ ହୋଇଥିବାରୁ ନିଜ ଜମିରେ ତାର ସ୍ୱତନ୍ତ୍ର ବ୍ୟବହାର ସମ୍ଭବ ନୁହେଁ। ଏକକାଳୀନ ଭାବରେ ଜଳସେଚିତ ଅଞ୍ଚଳର ଏକ ନିର୍ଦ୍ଦିଷ୍ଟ ସଂଖ୍ୟକ ଚାଷୀ ଜୈବ ଚାଷର ନିଷ୍ପତ୍ତି ନେଲେ ଏହା ହୁଏତ ସମ୍ଭବ ହୋଇପାରିବ। (୬) ରାସାୟନିକ କୃଷି ଓ ପ୍ରଚଳିତ ବିକାଶର ଧାରା ଆମ ହାତରୁ ଜମି, ଉର୍ବର ମାଟି, ପାଣି, ଲୋକ ବା ସ୍ଥାନୀୟ ଜ୍ଞାନ କୌଶଳ, ଜଙ୍ଗଲ, ଗୋପାଳନ ବ୍ୟବସ୍ଥା ତଥା ପରିବେଶ ଛଡ଼େଇ ନେଇ ଆମକୁ ବିକଳ୍ପହୀନ କରୁଛି। ଏ ବ୍ୟବସ୍ଥାର ବିପଦଜନକ ଦିଗ ସଂପର୍କରେ ଆଲୋଚନା କଲେ ଆମକୁ ବିକଳ୍ପହୀନ କରୁଥିବା ଏ ବ୍ୟବସ୍ଥାର ସ୍ତାବକମାନେ ଓଲଟା କହୁଛନ୍ତି ବିକଳ୍ପ ନାହିଁ। ପ୍ରଶ୍ନ କରୁଛନ୍ତି କଣ ବିକଳ୍ପ ଅଛି କୁହ ?

ଦେଶର ଖାଦ୍ୟସୁରକ୍ଷା. ନିରାପତ୍ତା, ଜନସଂଖ୍ୟା ତୁଳନାରେ ଆବଶ୍ୟକ ଉତ୍ପାଦନ ପାଇଁ ରାସାୟନିକ କୃଷି, ଅତ୍ୟାଧୁନିକ ଟେକ୍ନୋଲୋଜିଜନିତ ଯାନ୍ତ୍ରିକୀକରଣ, ବୃହତ ଜଳସେଚନର ଯୋଜନା, ଜିନ ପରିବର୍ତ୍ତିତ ବିହନର ବ୍ୟବହାର ଛଡ଼ା ଅନ୍ୟ ବାଟ ନାହିଁ ବୋଲି ବିଶ୍ୱାସ କରିବା ପାଇଁ ଆମକୁ ଗୋଟେ ରକମର ବାଧ୍ୟ କରାଯାଉଛି। ଦେଶର ଖାଦ୍ୟସୁରକ୍ଷା, ନିରାପତ୍ତାର ଅର୍ଥ କଣ ସାମଗ୍ରିକ ଭାବେ ଦେଶର ସବୁ ବର୍ଗର ଲୋକଙ୍କ ପାଇଁ ସମାନ ଅର୍ଥ ବହନ କରେ ? ଦେଶର ଖାଦ୍ୟ ଭଣ୍ଡାରରେ ଖାଦ୍ୟଶସ୍ୟ ମହଜୁଦ ଥିଲାବେଳେ ଦେଶରୁ କୋଟି କୋଟି ଲୋକ ଭୋକରେ ଅନାହାରରେ, ଅର୍ଦ୍ଧାହାରରେ, ପୁଷ୍ଟିହୀନତାରେ କାହିଁକି ? ଉଦାହରଣ ସ୍ୱରୂପ କଳାହାଣ୍ଡିରେ ଜନସଂଖ୍ୟାର ଆବଶ୍ୟକତାରୁ ଅଧିକ ଉତ୍ପାଦନ ହୁଏ। କିନ୍ତୁ ସେଠି ଅନାହାର ଏବଂ ଦାଦନ ସମସ୍ୟା ଗମ୍ଭୀର ସ୍ତରରେ ଅଛି। ତା ଅର୍ଥ ଏକ ଛୋଟ ସଂପନ୍ନ ବର୍ଗ ବାହାରେ ଏକ ବଡ଼ ସମୂହ ଅନାହାରରେ ଓ ଅର୍ଦ୍ଧାହାରରେ ରହିଛନ୍ତି। ସେମାନେ କିଏ ? (୧) ଭୂମିହୀନ, କୃଷି ଓ ଜଙ୍ଗଲ ଶ୍ରମିକ, (୨) ନାମମାତ୍ର ଚାଷୀ, (୩) ଛୋଟଚାଷୀ ଓ ଭାଗ ଚାଷୀ, (୪) କୃଷି ସହ ଅସଂଗଠିତ କ୍ଷେତ୍ରରେ କର୍ମରତ ଶ୍ରମିକ। ଏମାନଙ୍କ ଭିତରେ ସିଂହ ଭାଗ ଲୋକ ହେଲେ ଆଦିବାସୀ, ଦଳିତ ଓ ପଛୁଆ ବର୍ଗର। ଏମାନଙ୍କର ଖାଦ୍ୟ ସୁରକ୍ଷା ହିଁ ଅସଲରେ ଦେଶର ଖାଦ୍ୟ ସୁରକ୍ଷା। ଏମାନଙ୍କୁ ଖାଦ୍ୟ ଅଧିକାର ସୁରକ୍ଷିତ ରହିଲେ ହିଁ ଦେଶର ଖାଦ୍ୟ ନିରାପତ୍ତା ସମ୍ଭବ। ଏମାନଙ୍କ ଖାଦ୍ୟ ସୁରକ୍ଷା ଦିନକୁ ଦିନ ବିପନ୍ନ ହୋଇ ଚାଲିଛି। ଅବିଚାରିତ ଶିଳ୍ପାୟନ, ନଗରାୟନ, ବ୍ୟବସାୟିକ ପ୍ଲାଣ୍ଟେସନ, ଅଣ ଖାଦ୍ୟ ଫସଲର ବ୍ୟାପକ ଚାଷ, ଅଣକୃଷି କାମରେ ଜମିର ବ୍ୟବହାର ତଥା ପୁଞ୍ଜିଭିତ୍ତିକ କୃଷି ତାଙ୍କ ହାତରୁ ଛଡ଼େଇ ନେଉଛି ଜମି, ଜଙ୍ଗଲ, କୃଷିପାଇଁ ଆବଶ୍ୟକ ପରିବେଶ ଓ ପାରଂପାରିକ ରୋଜଗାର। ବିଫଳ ଭୂସଂସ୍କାର, ଜମି ସିଲିଙ୍ଗ୍‌ରେ ଠକାମି, ମଦ ଓ ବନ୍ଧାଛଦାର ଖେଳରେ ଜମି ହଡ଼ପ ତଥା ଜମି ବନ୍ଦୋବସ୍ତ ବେଳେ ଏମାନଙ୍କ ଅଧିକାରକୁ ମାନ୍ୟତା ନ

ଦେବା କାରଣରୁ ଏ ବର୍ଗଟି ଅନେକ ଦଶନ୍ଧି ହେଲା ଅଭାବୀ ଜୀବନ ବିତାଉଛି । (୧) ଏମାନଙ୍କର ଖାଦ୍ୟ ସୁରକ୍ଷା ସମ୍ଭବ ଯଦି ଜମି, ଜଙ୍ଗଲ ଓ ଜଳ ଉପରେ ତାଙ୍କ ଅଧିକାରକୁ ମାନ୍ୟତା ଦେଇ ତାର ସୁରକ୍ଷା କରାଯିବ, (୨) ଅସମାପ୍ତ ଭୂସଂସ୍କାରକୁ ସଂପୂର୍ଣ୍ଣ କରାଯିବ, (୩) ଭୂମିହୀନଙ୍କୁ ସରକାରୀ ଜମି ପ୍ରଦାନ, (୪) ୩୦ ଡଗ୍ରୀ ସ୍ଲୋପ୍‌ରେ ଥିବା ପାହାଡ଼ି ଜମିର ଅଧିକାର, (୬) ଭାଗଚାଷ ଆଇନ ଲାଗୁ କରିବା, (୭) ଦୁଇ ତିନି ଦଶନ୍ଧି ଧରି ଗାଁର ଅନୁପସ୍ଥିତ ଥିବା ଓ କୃଷି କାମରେ ପ୍ରତ୍ୟକ୍ଷ ଭାବରେ ଚାଷ କାମ ସହିତ ଜଡ଼ିତ ନଥିବା ଜମି ମାଲିକଙ୍କ ହାତରୁ ସରକାର ଜମି କିଣି ବା ଲିଜ୍ ନେଇ ଚାଷପାଇଁ ଆଗ୍ରହୀ ଚାଷୀଙ୍କୁ ପ୍ରଦାନ, (୮) ବ୍ୟକ୍ତିଗତ ଓ ଶିଳ୍ପ ନାଁରେ ହଡ଼ପ କରାଯାଇଥିବା ଜମିକୁ ଫେରସ୍ତ । ଏସବୁ ସମ୍ଭବ ଯଦି ଆମେ ଅବିଚାରିତ ଖଣି ଭିତ୍ତିକ ବୃହତ ଶିଳ୍ପାୟନକୁ ବନ୍ଦ କରିବା । କୃଷି ଓ କୃଷକ ସହ ଶତ୍ରୁତା କଲା ପରି ଶିଳ୍ପାୟନର ଧାରା ବନ୍ଦ ନ ହେଲେ ନା ରହିବ ଜମି, ନା ରହିବ ଚାଷ ପାଇଁ ଆବଶ୍ୟକ ଜଳସ୍ରୋତ (ନଦୀ, ଝରଣା, ଭୂତଳ ଜଳ, ନଦୀବନ୍ଧ) ନା ରହିବ ଚାଷ ପାଇଁ ଆବଶ୍ୟକ ପରିବେଶ, ଜଳବାୟୁ ।

ଧରି ନିଆଯାଉ ଜମି, ଜଙ୍ଗଲଜମି, ପାହାଡ଼ ତଳି ଜମି, ଏସବୁ ଲୋକଙ୍କୁ ମିଳିବ । ଭୂସଂସ୍କାର ଓ ଭାଗଚାଷ ଆଇନ ଲାଗୁ ହେବ । ହଡ଼ପ ଜମି ପୁଣି ଫେରିବ ଚାଷୀମାନଙ୍କ ହାତକୁ । ତା ପରେ ବି କଣ ଏ ଜମିରେ ଚାଷ କରି ଏମାନେ ନିଜର ଖାଦ୍ୟ ସୁରକ୍ଷା କରିପାରିବେ ? ଉତ୍ତର ହେବ ନା । ଏଥିପାଇଁ କ୍ଷୁଦ୍ର ଚାଷୀ କେନ୍ଦ୍ରିକ କୃଷି ଅର୍ଥନୀତିର ଆବଶ୍ୟକ ରହିଛି । ପ୍ରଶ୍ନ ହେଲା - ଆଜିର ନଗର ଭିତ୍ତିକ ଶିଳ୍ପ ବିକାଶର ଧାରା ଚାଲୁଥିବା ବେଳେ ଗାଁ ଓ କୃଷିକୁ ଜାତୀୟ ନୀତିରେ ଅଗ୍ରାଧିକାର ଦିଆଯିବ କି ? ଯଦି ମିଳେ ନିମ୍ନଲିଖିତ ପଦକ୍ଷେପ ଅଗ୍ରାଧିକାର ଭିତ୍ତିରେ ନିଆଯିବା ଆବଶ୍ୟକ । (୧) ଜୈବ କୃଷି ଓ ଗୋପାଳନକୁ ଅଗ୍ରାଧିକାର । ସମୟକ୍ରମେ ତାକୁ ଜାତୀୟ କୃଷିନୀତିରେ ପରିଣତ କରିବା, (୨) କ୍ଷୁଦ୍ର ଓ ବିକେନ୍ଦ୍ରିତ ଜଳସେଚନ ବ୍ୟବସ୍ଥା, ଅନ୍ତତଃ ସବୁ କ୍ଷେତକୁ ଗୋଟିଏ ଫସଲ ପାଇଁ ଜଳସେଚନ ନିଶ୍ଚିତ କରାଯାଉ । (୩) ସମବାୟ ଭିତ୍ତିକ କୃଷି, (୪) କୃଷି ଓ କୃଷି ଶ୍ରମିକଙ୍କୁ କୁଶଳୀ ଶ୍ରମିକର ମାନ୍ୟତା, ଚାଷୀ ଓ କୃଷିଶ୍ରମିକର ମଜୁରୀ, ଆୟ ଓ କୃଷିଜାତ ଦ୍ରବ୍ୟର ଦର ସ୍ଥିର ବେଳେ ତାର ପରିବାର ସଂଖ୍ୟାକୁ ୬ (ଛଅ) ବୋଲି ଧରାଯିବ, (୫) ସରଳ ସୁଧରେ ଦୀର୍ଘ ମିଆଦି ସଂସ୍ଥାଗତ ଋଣର ପ୍ରବନ୍ଧ । ଚକ୍ରବୃଦ୍ଧି ସୁଧ ଅସୁଲ ବ୍ୟବସ୍ଥା ବନ୍ଦ । ବେକିଂ ଅଧିନିୟମ ୨୧ (କ) ଧାରାର ଉଚ୍ଛେଦ । ମହାଜନୀ ଓ ମାଇକ୍ରୋ ଫାଇନାସ୍ ମାଧମରେ ଚାଲିଥିବା ଅମାନବୀୟ ଋଣ ବ୍ୟବସ୍ଥା ଉପରେ କଟକଣା, (୬) କୃଷକକୁ ବୀମା ୟୁନିଟ୍ ରୂପେ ଗ୍ରହଣ କରି ପ୍ରତି ଫସଲରେ ତାକୁ ଲାଗୁ କରାଯଉ । ଆଶା କରାଯାଉଥିବା ଉତ୍ପାଦନରୁ

କେତେ କମ୍ ଉତ୍ପାଦନ ହେଉଛି ତାର ଆକଳନ ଓ ବଢ଼ନ୍ତା କୃଷି ଖର୍ଚ୍ଚକୁ ହିସାବକୁ ନେଇ ବୀମାରାଶି ପ୍ରଦାନ । ବର୍ଷାଭିତ୍ତିକ ବୀମାକୁ ବିଭିନ୍ନ ଫସଲପାଇଁ ବିଭିନ୍ନ ମାସରେ ଆବଶ୍ୟକ ହେଉଥିବା ବର୍ଷାରୁ କେତେ କମ୍ ବର୍ଷା ହେଉଛି ତାର ଆକଳନ କରି ବୀମା କ୍ଷତି ପୂରଣ ପ୍ରଦାନ, (୭) ଭାଗମାପ ଠିକ୍ ରଖି ଚାଷ ପାଇଁ ପ୍ରୋତ୍ସାହନ । ଶସ୍ୟ, ଡାଲି, ତେଲ, ମସଲା, ପନିପରିବା ଓ ସ୍ଥଳବିଶେଷରେ ଫଳଚାଷ । ସବୁ ରକମର ଚାଷ କିଛି କିଛି କରିବା ପାଇଁ ଚାଷୀକୁ ଉତ୍ସାହିତ କରିବା । ଅନ୍ତତଃ ନିଜ ପରିବାରର ଆବଶ୍ୟକତା ଅନୁରୂପ ଶସ୍ୟ, ଡାଲି, ତେଲ, ମସଲା ଓ ପନିପରିବା ଫଳଚାଷ ପାଇଁ ଚାଷୀଙ୍କ ଭିତରେ ଆଗ୍ରହ ସୃଷ୍ଟି । ଅର୍ଥକାରୀ ଫସଲର ପ୍ରଲୋଭନରେ ବାକି ଫସଲକୁ ଅବହେଳା ନ କରିବା, ସଂପୂର୍ଣ୍ଣ ଛାଡ଼ି ନ ଦେବା ଏପରିକି ଅଧିକାଂଶ ଜମିରେ ଅର୍ଥକାରୀ ଫସଲ ନ କରିବା । ନିଜର ସବୁ ସାର, ଖତ ଓ ପୁଞ୍ଜିକୁ ଅର୍ଥକାରୀ ଫସଲ ପଛରେ ଖର୍ଚ୍ଚ ନକରି ନିଜ ଖାଦ୍ୟ ଆବଶ୍ୟକତା ପୂରଣ ଦୃଷ୍ଟିରୁ କରାଯାଉଥିବା ଚାଷରେ ବ୍ୟବହାରକୁ ଅଗ୍ରାଧିକାର (୮) ପ୍ରତିଟି ଫସଲ ପାଇଁ ଆବଶ୍ୟକ ସଂରକ୍ଷଣ ବ୍ୟବସ୍ଥା (ଶୀତଳ ଭଣ୍ଡାର, ଗୋଦାମ ଘର), ପ୍ରକ୍ରିୟାକରଣ ଉନ୍ନତ ମାନର ତେଲ କଳ, ଲୁଗାଶିଳ୍ପ, ଚିନି କାରଖାନା, ପେକେଜିଂ, କପା, ଟସରକୁ ନେଇ ଆବଶ୍ୟକ ଶିଳ୍ପ) । ଏସବୁ ପାଇଁ କଡ଼ାକଡ଼ି ଭାବେ ପ୍ରୋତ୍ସାହନମୂଳକ ସର୍ବନିମ୍ନ ସହାୟକ ମୂଲ୍ୟ ଓ ବଜାର ବ୍ୟବସ୍ଥା, (୯) ଜମିର ଉନ୍ନତୀକରଣ ୮ ପାହାଡ଼ି ଜମିରେ ବଣ୍ଡିଂ । ୩୦% ଜଙ୍ଗଲ ସୃଷ୍ଟି ଏଥିରେ ନିଶ୍ଚିତ କର୍ମନିଯୁକ୍ତି ଯୋଜନାକୁ ବ୍ୟବହାର କରାଯାଇ ପାରିବ । (୧୦) ଜଳବାୟୁ ପରିବର୍ତ୍ତନକୁ ଆଖି ଆଗରେ ରଖି ଫସଲ ଚୟନ, ଫସଲ ଅଗ୍ରାଧିକାରରେ ପରିବର୍ତ୍ତନ, ବୃଷ୍ଟିଛାୟା ଓ ସ୍ୱଳ୍ପ ବୃଷ୍ଟି ଅଞ୍ଚଳ ପାଇଁ କ୍ଷୁଦ୍ର ଶସ୍ୟ (Small Millets) କୁ ପ୍ରୋତ୍ସାହନ । କୀଟ ମୁକ୍ତ, ରାସାୟନିକ ସାର ଓ ଜଳସେଚନ ଦରକାର କରୁନଥିବା ମାଣ୍ଡିଆ; କୁଦୋ, ସୁଆଁ, କାନ୍ଦୁଲ, ଗୁରୁଜି, ଗଙ୍ଗେଇ, ଜୁଆର, ବାଜରା, ଆଦି ଫସଲକୁ ପ୍ରୋତ୍ସାହନ । ସେଥିପାଇଁ ପ୍ରୋତ୍ସାହନମୂଳକ ସହାୟକ ମୂଲ୍ୟ ଓ ବଜାର ବ୍ୟବସ୍ଥା । ତା ସହ ଏସବୁ ଫସଲର ବିହନର ଉତ୍ପାଦନ କ୍ଷମତା ବୃଦ୍ଧିପାଇଁ ବୈଜ୍ଞାନିକ କୌଶଳର ବ୍ୟବହାର ଜନିତ ସହଯୋଗ ଜରୁରୀ । ବେକ୍ କ୍ରସିଂର ସାଧାରଣ ଜ୍ଞାନ କୌଶଳ ଚାଷୀଙ୍କୁ ଶିଖାଇ ଦେଲେ ସେମାନେ ଅଧିକ ଉତ୍ପାଦନ କ୍ଷମତା ବହନ କରୁଥିବା ବିହନ ନିଜେ ନିଜ ହାତରେ ତିଆରି କରିପାରିବେ । (୧୧) ଦେଶୀ ଓ ପାରମ୍ପରିକ ବିହନର ସଂରକ୍ଷଣ ଓ ସମ୍ବର୍ଦ୍ଧନ ।

ମୋଟାମୋଟି କଥା ହେଲା ବିକାଶ ଓ ସମୃଦ୍ଧିର ପ୍ରଚଳିତ ଧାରାର ବିପରୀତରେ ଏକ ନୂଆ ଧାରାକୁ ପ୍ରତିଷ୍ଠା କରିବା । କିଏ କରିବ ? ଆମ ସରକାର ଏ ଧାରାକୁ ଗ୍ରହଣ

କରୁ ଏକଥା କହିବା ଭଳି ରାଜନୈତିକ ଶକ୍ତି ବା ତତ୍ତ୍ୱ କାହିଁ ? ମୁଖ୍ୟ ଧାରାର ରାଜନୈତିକ ଦଳ ସେ ଦକ୍ଷିଣ ହେଉ କି ବାମ ତାଙ୍କ ଦଳୀୟ ଏଜେଣ୍ଡାରେ ହେଉ କି ଅନ୍ତର୍ମନରେ ଗାଁ ଓ ଚଷୀର ଭବିଷ୍ୟତ ନାହିଁ। ସେଥିପାଇଁ ଭୂସଂସ୍କାର, ଜମି ହଡ଼ପ, ଭୂମିହୀନଙ୍କୁ ଜମି, ଭାଗ ଚଷୀ ଅଧିକାରକୁ ନେଇ ଏମାନଙ୍କର କୌଣସି କାର୍ଯ୍ୟକ୍ରମ ଦେଖିବାକୁ ମିଳୁନାହିଁ। ଠିକା ଚଷ ଆଇନ, ବିହନ ବିଲ୍ ୨୦୦୪ ଜିନ ପରିବର୍ତ୍ତିତ ବିହନ ପ୍ରଚଳନ, ପୂର୍ଣ୍ଣରଣ ଓ ବୀମା ନୀତି ଖାଦ୍ୟ ଶସ୍ୟ ଆମଦାନୀ ରପ୍ତାନୀ ନୀତି, ଶିଳ୍ପାୟନ ନାଁରେ କୃଷକ ହାତରୁ ଜମି, ଜଳ, ଜଙ୍ଗଲ ଛଡ଼େଇ ନେବା, ଚଷୀକୁ ଅଣକୁଶଳୀ କରି ରଖିବା, ବଜେଟ୍‌ରେ କୃଷିପ୍ରତି ଜାରି ରହିଥିବା ଅବହେଳାକୁ ନେଇ ଏମାନେ କୌଣସି କାର୍ଯ୍ୟକ୍ରମ ଆନ୍ତରିକତାର ସହ ନିଅନ୍ତି ନାହିଁ। ଏସବୁ ପ୍ରସଙ୍ଗରେ ଦେଶର ଲୋକସଭା ଏବଂ ଅଧିକାଂଶ ରାଜ୍ୟର ବିଧାନ ସଭାରେ ଗମ୍ଭୀରତାର ସହ ଆଲୋଚନା କି ବିତର୍କ ହେଉନାହିଁ। ଚଷୀ ଆତ୍ମହତ୍ୟାର ମୂଳ କାରଣ ଖୋଜି ତାର ନିଦାନ ପାଇଁ ଆନ୍ତରିକାର ସହ କୌଣସି ପଦକ୍ଷେପ ନିଆଯାଉ ନାହିଁ। ଏପଟେ ଉଦାରୀକରଣ ପରବର୍ତ୍ତୀ ସମୟରେ କୃଷିକ୍ଷେତ୍ରରେ ସରକାରୀ ପୁଞ୍ଜି ନିବେଶ କମି ଚଲିଛି। କେବେ କେମିତି କୃଷିଜାତ ଦ୍ରବ୍ୟର ଦର ସାମାନ୍ୟ ବୃଦ୍ଧି କିମ୍ବା ଆଠ ଦଶ ବର୍ଷରେ ଥରେ କୃଷି ଋଣ ଛାଡ଼ କରି ସରକାରମାନେ ତାଙ୍କ ଦାୟିତ୍ୱ ସାରି ଦେଉଛନ୍ତି। ଅନ୍ୟ ଦିଗରେ କୃଷି ସମସ୍ୟାକୁ ନେଇ ହେଉଥିବା କୃଷକ ଆନ୍ଦୋଳନକୁ ଆମେ ଦୁଇଟି ଶିବିରରେ ବିଭକ୍ତ କରିପାରିବା। ମୁଖ୍ୟ ଧାରା ରାଜନୈତିକ ଦଳର ବାହାରେ ଥିବା ପ୍ରଗତିଶୀଳ ବାମପନ୍ଥୀଙ୍କ ଆନ୍ଦୋଳନ ଜମି ଅଧିକାର ସାବ୍ୟସ୍ତ ଭିତରେ ସୀମିତ। ଭୂମିହୀନଙ୍କୁ ଜମି, ହଡ଼ପ ଜମି ଫେରସ୍ତ, ସରକାରୀ ଜମି ଉପରେ ଚଷୀଙ୍କ ଅଧିକାର ସାବ୍ୟସ୍ତ ଭଳି କାମ ସହ ଏମାନେ ଜଡ଼ିତ କିନ୍ତୁ କୃଷି ସହ ଜଡ଼ିତ ବାକି ସମସ୍ୟା ଓ ଆସୁଥିବା ନୂତନ କୃଷି ସଂକଟକୁ ନେଇ ତାଙ୍କର କୌଣସି ଆନ୍ଦୋଳନ ନାହିଁ। ତାଙ୍କ ସଂଗଠନରେ ଏସବୁକୁ ନେଇ ବିଶେଷ ଆଲୋଚନା ହେଉନାହିଁ। ଯେଉଁଠି ଚଷର ମୂଳରେ ଥିବା ଜମି ବା କ୍ଷେତ ଉପରେ ଅଧିକାରକୁ ମାନ୍ୟତା ମିଳିନାହିଁ ସେଠି କୃଷିର ବାକି ସମସ୍ୟା ସମ୍ପର୍କରେ ଆଲୋଚନା କି ଆନ୍ଦୋଳନ କ'ଣ ସମ୍ଭବ ? ଜମି ଆନ୍ଦୋଳନ ଉପରେ ସରକାରୀ ଦମନ ଗୋଟେପଟେ, ଅନ୍ୟପଟେ ସେମାନଙ୍କ ଆନ୍ଦୋଳନ ପ୍ରତି ମଧ୍ୟବିତ୍ତ ଚଷୀଙ୍କ ନିସ୍ପୃହତା। କିନ୍ତୁ ଏକଥା ମଧ ସତ ଯେ, ଜମି ଅଧିକାର ଆନ୍ଦୋଳନ ସହ କୃଷି ଓ କୃଷକର ବାକି ସମସ୍ୟା ଯୋଡ଼ି ଆନ୍ଦୋଳନ କଥା ବିଚାର କରିବାକୁ ପଡ଼ିବ ନ ହେଲେ କାଲି ଜମି ମିଳିଲା ପରେ ବି ଚଷୀ ଚଷ କରିପାରିବ ନାହିଁ। ଠିକ୍ ସେମିତି ଭାରତରେ ବିଭିନ୍ନ ପ୍ରାନ୍ତରେ ସକ୍ରିୟ ଥିବା ଚଷୀ ଆନ୍ଦୋଳନରେ ମୂଳ ଦାବୀ ଗୁଡ଼ିକ ହେଲା କୃଷିଜାତ ଦ୍ରବ୍ୟର ଦରବୃଦ୍ଧି, ବୋନସ, କୃଷିଋଣ ଛାଡ଼, ବୀମାଜନିତ କ୍ଷତିପୂରଣ ପ୍ରଦାନ, ସବ୍‌ସିଡ଼ିରେ ସାର ଓ କୀଟନାଶକ ଉପଲବ୍ଧ

କରାଇବା । ଏଭଳି ସଂଗଠନରେ କୃଷି ଓ କୃଷକର ବିଭିନ୍ନ ସମସ୍ୟା ଉପରେ ଆଲୋଚନା ହୁଏ କିନ୍ତୁ ଛୋଟ, ନାମମାତ୍ର ଭାଗ ଚାଷୀ ଓ ସେମାନେ ସାମ୍ନା କରୁଥିବା କୃଷି ସମସ୍ୟାକୁ ନେଇ ଏମାନେ ସଂପୂର୍ଣ୍ଣ ଉଦାସୀନ । ଆଜି ଭାରତରେ ହେଉ କି ଓଡ଼ିଶାରେ ଜମି ଅଧିକାର ଆନ୍ଦୋଳନର ଆବଶ୍ୟକତା ରହିଛି । ସର୍ବନିମ୍ନ ଖର୍ଚ୍ଚରେ ସମସ୍ତଙ୍କୁ ଶିକ୍ଷା ଓ ସ୍ୱାସ୍ଥ୍ୟ ଯୋଗାଇଦେବା (ଶିକ୍ଷା ଓ ସ୍ୱାସ୍ଥ୍ୟକୁ ଘରୋଇକରଣରୁ ମୁକ୍ତ ରଖିବା) ଓ ଦରଦାମ ନିୟନ୍ତ୍ରଣ ବିନା କୃଷି ଓ କୃଷକର ଭବିଷ୍ୟତ ସଜାଡ଼ିବା ସମ୍ଭବ ନୁହେଁ ।

ମୁଖ୍ୟଧାରା ରାଜନୈତିକ ଦଳ ବାହାରେ ଥିବା ପ୍ରଗତିଶୀଳ ବାମପନ୍ଥୀ, ସମାଜବାଦୀ, ଜନଆନ୍ଦୋଳନକାରୀ ସମୂହ, ବିସ୍ଥାପନ ବିରୋଧୀ ଜନସଂଗଠନ, ପ୍ରଗତିଶୀଳ କୃଷକ ସଂଗଠନ ଓ ପରିବେଶ ଆନ୍ଦୋଳନ ସହ ଜଡ଼ିତ ବର୍ଗକୁ ମିଳିତ ଭାବେ ପ୍ରଚଳିତ ବିକାଶଧାରାର ବିକଳ୍ପ ଖୋଜିବାକୁ ହେବ । ତାକୁ ପ୍ରତିଷ୍ଠିତ କରିବା ଲାଗି କୃଷି ଓ କୃଷି ସଂକଟକୁ ନିଜ ରାଜନୈତିକ ଗତିବିଧିର କେନ୍ଦ୍ରରେ ରଖି ତାଙ୍କ ସମସ୍ୟା ସମାଧାନର ରାସ୍ତାରେ ଥିବା ବାଧକ ଶକ୍ତି ଓ ତତ୍ତ୍ୱ ଗୁଡ଼ିକ ବିରୋଧରେ ନିରନ୍ତର ଆନ୍ଦୋଳନ କରିବାକୁ ହେବ । ଏ ଆନ୍ଦୋଳନର ଦୁଇଟି ଦିଗ ରହିଛି ।

(୧) ନୀତିଗତ ପରିବର୍ତ୍ତନ ଲାଗି ଆନ୍ଦୋଳନ

(୨) ପ୍ରଚଳିତ ରାସାୟନିକ କୃଷିର ବିକଳ୍ପ ଭାବେ ଜୈବକୃଷିକୁ ପ୍ରତିଷ୍ଠିତ କରିବା ପାଇଁ ପ୍ରୟୋଗ, ସଫଳ ମୋଡ଼େଲ ନିର୍ମାଣ ଏବଂ ତାର ବ୍ୟାପକ ପ୍ରଚାର ପ୍ରସାର କରି ରାସାୟନିକ ଚାଷର ଅଭ୍ୟାସ ଯୋଗୁଁ କୃଷକର ମୁଣ୍ଡରେ ବା ଅକଳରେ ପଡ଼ିଥିବା ପଥରକୁ ହଟାଇବାର କାମ ହାତକୁ ନେବାକୁ ପଡ଼ିବ ।

ଦେଶର ରାଜନୈତିକ ଅର୍ଥନୀତି, ପ୍ରଚଳିତ ବିକାଶ ଧାରାକୁ ପ୍ରଶ୍ନ ନ କରି ଏକକ ଭାବେ କୃଷି ସମସ୍ୟାର ବିଶ୍ଳେଷଣ କି ସମାଧାନ ସମ୍ଭବ ନୁହେଁ । ଦେଶରେ ଚାଲିଥିବା ପୁଞ୍ଜିବାଦୀ ବ୍ୟବସ୍ଥା ଏବଂ ଜଗତୀକରଣ ପର ସାମ୍ରାଜ୍ୟବାଦୀ ଶକ୍ତି, ତତ୍ତ୍ୱ, ତାର ସମର୍ଥକ ଦେଶ, ନେତୃବୃନ୍ଦଙ୍କ ବେପାରୀ ଷଡ଼ଯନ୍ତ୍ରରୁ ମୁକ୍ତିସଂଘର୍ଷର ଅନ୍ୟତମ ବିନ୍ଦୁ ଭାବରେ କୃଷିସଂକଟ ଓ ତାର ସମାଧାନକୁ ଦେଖିବାକୁ ହେବ । ସଂକଟର ଏ ବ୍ରହ୍ମକୁ ପରାଜିତ କରି ନ ପାରିଲେ ସେ ବ୍ରହ୍ମ ରାକ୍ଷସ ହେଇ ଆମ ସଭିଙ୍କୁ ଦିନେ ଗିଳି ପକେଇବ ।



# ଖାଦ୍ୟ ଥାଳିରେ ବିଷ

"ଯଦି ଲୋକେ କ'ଣ ଖାଇବେ ପିଇବେ ତାର ନିଷ୍ପତ୍ତି ସରକାରଙ୍କ ହାତରେ ଛାଡ଼ିଦିଆଯାଏ ତେବେ ସେମାନଙ୍କ ଦେହର ଅବସ୍ଥା ସେଇଭଳି ହେବ ଯେମିତିକି ଅତ୍ୟାଚାରରେ ପ୍ରପୀଡ଼ିତ ଆତ୍ମାମାନଙ୍କର ହୋଇଥାଏ" । (ଥମାସ୍ ଜେଫରସନ୍ ପୂର୍ବତନ ରାଷ୍ଟ୍ରପତି ଆମେରିକା, ଡିକ୍‌ଲେୟାର ଅଫ୍ ଇନ୍‌ଡ଼ିପେଣ୍ଡେନସ୍‌ର ଲେଖକ) ।

ପସନ୍ଦ ମୁତାବକ ଖାଦ୍ୟର ଅର୍ଡ଼ର ଦେଇ ଆପଣ କୌଣସି ହୋଟେଲ ବା ରେଷ୍ଟୋରାଁରେ ବସିଛନ୍ତି କିମ୍ବା କୌଣସି ବିଗ୍ ବଜାର ବା ସପିଙ୍ଗ୍ ମଲସ୍‌ରୁ କିଛି ଖାଦ୍ୟ ପେକେଟ୍ (Packaged Food) କିଣୁଛନ୍ତି, ଆପଣ ନିଶ୍ଚିନ୍ତ ହୋଇପାରିବେକି ଯେ ସେତକ ବିଷମୁକ୍ତ ବା ଆପଣଙ୍କ ସ୍ୱାସ୍ଥ୍ୟ ପାଇଁ ନିରାପଦ । ସ୍ୱାସ୍ଥ୍ୟର ନିରାପତ୍ତା ଦୃଷ୍ଟିରୁ ଆଜି ପଶ୍ଚିମୀ ଦେଶର ସଚେତନ ଖାଉଟୀ ଖାଇବା କି କିଣିବା ପୂର୍ବରୁ ପଚାରୁଛି ଏହା ଜିଏମ୍ ଫ୍ରି ବା ଗୁଣପରିବର୍ତ୍ତନକାରୀ ତତ୍ତ୍ୱରୁ ପ୍ରସ୍ତୁତ ନୁହେଁ ତ ? ଜଗତୀକରଣ ପରର ବିଶ୍ୱଗ୍ରାମ ବ୍ୟବସ୍ଥାରେ ଅନେକ ଖାଦ୍ୟଶସ୍ୟ ଓ ପ୍ୟାକେଜଡ଼୍‌ଫୁଡ଼୍ ଉପରୁ ଆମଦାନୀ-ରପ୍ତାନୀର କଟକଣା ଉଠିଯାଇଛି । ତା ଛଡ଼ା ଆମ ଦେଶକୁ ଆମଦାନୀ ହେଉଥିବା ଖାଦ୍ୟଶସ୍ୟ କି ଖାଦ୍ୟ ପ୍ୟାକେଟଟି ଜି.ଏମ୍. ମୁକ୍ତ କି ନୁହଁ ଜାଣିବା ପାଇଁ ନୀତିଗତ ବ୍ୟବସ୍ଥା ଥିବା ସତ୍ତ୍ୱେ ଲେବେଲିଙ୍ଗ୍‌କୁ ବାଧ ବାଧତାମୂଳକ କରାଯାଇନାହିଁ । ଜିନ୍ ପରିବର୍ତ୍ତନ ବିହନ ଅନୁମୋଦନ କମିଟୀ (GEAC) ଏ ଦିଗରେ ନୀତିକୁ କାର୍ଯ୍ୟକାରୀ କରିବାକୁ ପଛଘୁଞ୍ଚା ଦେଇ ଆମ ଦେଶର ଲୋକଙ୍କର ସୁରକ୍ଷିତ ଖାଦ୍ୟ ଓ ସୂଚନା ପାଇବା ଅଧିକାରର ଅବମାନନା କରିଆସିଛି । ଏପରିକି ପ୍ରାକୃତିକ ବିପର୍ଯ୍ୟୟ ବେଳେ ରିଲିଫ୍ ବା ସାହାଯ୍ୟ (AID) ନାଁରେ ପାଶ୍ଚାତ୍ୟ ଦେଶରୁ ଆସୁଥିବା ଖାଦ୍ୟଶସ୍ୟ ଜିଏମ୍ ମୁକ୍ତ କି ନୁହଁ ଜାଣିବା ଲାଗି ଭାରତ ସରକାର ଏଯାଏଁ କୌଣସି ପରୀକ୍ଷା ବ୍ୟବସ୍ଥାର କରିନାହାଁନ୍ତି । ନିକଟରେ ଜାମ୍ବିଆ ଭଳି ଦେଶ ରିଲିଫ୍ ନାଁରେ ଆସୁଥିବା ଖାଦ୍ୟଶସ୍ୟ ଜି.ଏମ୍ ମୁକ୍ତ ନ ହେଲେ ତାକୁ ଗ୍ରହଣ କରାଯିବ ନାହିଁ ବୋଲି ଆମେରିକାକୁ ଜଣେଇଦେଲା । ଆପଣ ଭାବୁଥିବେ ମୁଁ କି ଜି.ଏମ୍. କଥା

କହୁଛି । ଗତ ଜାନୁୟାରୀ ୨୦୦୯ ଶେଷ ସପ୍ତାହରେ ଜେନିଟିକ୍ ରୁଲିଟି (Genetic Roulette) ଓ ସିଡ଼ସ୍ ଅଫ ଡିସେପସନ୍ (Seeds of deception) ଭଳି ବହୁପଠିତ ବହୁଚର୍ଚ୍ଚିତ ପୁସ୍ତକର ବିଶ୍ୱପ୍ରସିଦ୍ଧ ଆମେରିକୀୟ ଲେଖକ ଜେଫ୍ରି ସ୍ମିଥ୍ ଜିନ୍ ପରିବର୍ତ୍ତିତ ଫସଲ ଓ ଖାଦ୍ୟର ବିପଦ ସଂପର୍କରେ ଓଡ଼ିଶା ସରକାରଙ୍କ ବିଭିନ୍ନ ବିଭାଗରେ ଥିବା ଉଚ୍ଚପଦସ୍ଥ ଅଧିକାରୀ ଓ କୃଷି ବିଶ୍ୱବିଦ୍ୟାଳୟର ଉପକୁଳପତି ଓ ବୈଜ୍ଞାନିକମାନଙ୍କ ସହ ଆଲୋଚନା କରି ଥିଲେ । ଗୁଣପରିବର୍ତ୍ତନକାରୀ ବା ଜିଏମ୍ (Genetically modified) ବିହନ ଓ ଖାଦ୍ୟକୁ ମଣିଷ ସଭ୍ୟତାର ସବୁଠୁ ବଡ଼ ବିପର୍ଯ୍ୟୟ ବୋଲି ବର୍ଣ୍ଣନା କରି ଯୁବରାଜ ଚାର୍ଲସ ବିବାଦକୁ ଟାଣି ଆସିଛନ୍ତି । ଏ ବିବାଦ ସହ ଯୋଡ଼ି ହୋଇଛି ତିନୋଟି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ । ପ୍ରଥମଟି ହେଲା କୃଷି ଓ କୃଷକ ପ୍ରତି ସଂକଟ । ଦ୍ୱିତୀୟରେ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଖାଉଟିର ଖାଦ୍ୟ ନିରାପତ୍ତା । ଅନ୍ୟଟି ହେଲା ଜୈବ ବିବଧତାର ସୁରକ୍ଷା । ଆମେରିକା ସରକାରଙ୍କ ନିୟମ ଅନୁଯାୟୀ ଜି.ଏମ୍. ବିହନ ହେଉକି ଖାଦ୍ୟ ପଦାର୍ଥ ଅନ୍ୟ ଯେ କୌଣସି ଫସଲ ବା ଖାଦ୍ୟଶସ୍ୟ ପରି ତେଣୁ ତାକୁ ଜି.ଏମ୍ ନାଁରେ ଚିହ୍ନିତ କରିବା ଜରୁରୀ ନୁହେଁ । ଆମେରିକାର ଏ ଦାବୀକୁ ଆଖିବୁଜି ବିଶ୍ୱାସ ନ କରି ଏଯାଏଁ ମିଳିଥିବା ଗବେଷଣାଲବ୍ଧ ତଥ୍ୟ ଓ ଜି.ଏମ୍. ଫସଲ ଜନିତ ଅନୁଭବକୁ ବିଚାରକୁ ନେବା ବିଧେୟ ।

ଜି.ଏମ୍. ଖାଦ୍ୟଶସ୍ୟ ପ୍ରଥମେ ୧୯୭୦ ମସିହାରେ ଆସିଲା ଯାହା ଗୋଟିଏ ପ୍ରଜାତିର ଜିନ୍‌କୁ ଅନ୍ୟ ବା ବିଷମ ପ୍ରଜାତିର ଡି.ଏନ୍.ଏ ଭିତରେ ପ୍ରବେଶ କରି ତିଆର୍ ହେଲା । ଉଦାହରଣତଃ ମାଟିରେ ଥିବା ଏକ ପ୍ରକାର ଜୀବାଣୁ 'ବେସିଲସ୍ ଥୁରେନ୍ ଜେନେସିସ୍'ର ଜିନ୍‌କୁ କପା, ଭେଣ୍ଡି, ବାଇଗଣ ଓ ଧାନ ବିହନରେ ପ୍ରବେଶ କରେଇ ବିଟି କପା, ବିଟି ଭେଣ୍ଡି, ବିଟି ବାଇଗଣ ଓ ବିଟି ଧାନ କରାଯାଉଛି । ଠିକ୍ ସେଭଳି ବରଫରେ ରହୁଥିବା ମାଛର ଜିନ୍ ଟମାଟୋରେ, ଗାଈର ଜିନ୍‌କୁ ମକାରେ, ଡ଼େଫୋଡ଼ିଲ୍ ଫୁଲର ଜିନ୍ ଧାନରେ ଏମିକି କେତେ କ'ଣ । ଜି.ଏମ୍. ଫସଲ ଓ ଖାଦ୍ୟକୁ ନିରାପଦ କହିବା ପୂର୍ବରୁ ଏକ ଲମ୍ବା ଅବଧିର ନିରପେକ୍ଷ ଗବେଷଣା ଦରକାର । ଗବେଷଣାର ପରଂପରା ଦୃଷ୍ଟିରୁ ଖାଦ୍ୟକୁ ପ୍ରଥମେ ମୂଷା ଓ ଠେକୁଆ ଉପରେ ପରୀକ୍ଷା କଲାପରେ ଅନ୍ୟଗୃହପାଳିତ ପଶୁପକ୍ଷୀ ଓ ଶେଷରେ ମଣିଷର ବ୍ୟବହାର ଲାଗି ସବୁଜ ସଂକେତ ଦିଆଯାଇଥାଏ । ବିଭିନ୍ନ ଫସଲରେ ବିଭିନ୍ନ ଜିନ୍‌ର ପ୍ରବେଶର ପ୍ରଭାବ ନିରୀକ୍ଷଣ ପାଇଁ ଅନେକ ବର୍ଷର ଗବେଷଣା ଜରୁରୀ । ତାର ପ୍ରଭାବ ମୂଷା, ଠେକୁଆ ଗୃହପାଳିତ ପଶୁପକ୍ଷୀ ମଣିଷ ଓ ପରିବେଶ ଉପରେ ସମାନ ରୂପରେ ହେବ ବୋଲି କୁହାଯାଇ ନପାରେ । କିନ୍ତୁ ଗୋଟିଏ କଥା ସ୍ପଷ୍ଟ ଯେ ମୂଷା, ଠେକୁଆ କିମ୍ବା ଗୃହପାଳିତ ପଶୁ ଉପରେ ଯଦି ନକାରାତ୍ମକ

ପ୍ରଭାବ ପଡୁଛି ତେବେ ତାକୁ ଅନ୍ତତଃ ମଣିଷର ବ୍ୟବହାର ଆଣିବା ଆଦୌ ସମୀଚୀନ ନୁହଁ । ଆମେ ଏବେ ଏ ସଂପର୍କୀତ କୋଡୋଟି ଗବେଷଣା ସଂବଧରେ ଚର୍ଚ୍ଚା କରିବା ।

'ଜି.ଏମ୍. ଆଳୁ' ଯିଏ ପ୍ରଖ୍ୟାତ ବୈଜ୍ଞାନିକ ଅରପଦ୍ ପୁସ୍ତାଇଙ୍କ ଚାକିରୀ ଖାଇଗଲା, ତା'ରି ଚର୍ଚ୍ଚା ପ୍ରଥମେ । ୧୯୯୬ରେ ବ୍ରିଟିଶ ସରକାର ଖାଉଟିର ନିରାପତ୍ତା ଓ ଖାଦ୍ୟର ଗୁଣବତ୍ତା ଦୃଷ୍ଟିରୁ ଜି.ଏମ୍. ଖାଦ୍ୟକୁ ନେଇ ଗବେଷଣା ପାଇଁ ୧.୬ ମିଲିଅନ୍ ପାଉଣ୍ଡ ଅର୍ଥ ବରାଦ କଲେ । ବିଶ୍ୱବିଖ୍ୟାତ 'ରୋଅଟ ଇନ୍‌ଷ୍ଟିଚ୍ୟୁଟ'ରେ ଡ଼.ଃ ଅରପଦ୍ ପୁସ୍ତାଇଙ୍କ ନେତୃତ୍ୱରେ ଗବେଷଣା ଆରମ୍ଭ ହେଲା । ସ୍ନୋଡ୍ରପ୍ ନାମରେ ଏକ ଉଦ୍ଭିଦ ଅଛି ଯାହା ଜି.ଏନ୍.ଏ ଲେକ୍ଟିନ ନାମକ କୀଟନାଶକର ଜନ୍ମଦାତା । ମୂଷାଙ୍କୁ ଏ ଲେକ୍ଟିନ ଖୁଏଇ ସାତବର୍ଷର ଗବେଷଣା କରାଗଲା । ମୂଷା ଉପରେ ଏ ଲେକ୍ଟିନର କୌଣସି କ୍ଷତିକାରକ ପ୍ରଭାବ ପଡ଼ିନଥିଲା । ଏଇ ଲେକ୍ଟିନ ଜିନ୍ ଆଳୁରେ ପ୍ରବେଶ କରେଇଲେ ତାର କୌଣସି ଖରାପ ପ୍ରଭାବ ମୂଷା ଉପରେ ପଡ଼ିବ ନାହିଁ ବୋଲି ଆଶା କରି ବ୍ରିଟିଶ ସରକାର ଓ ରୋଅଟ ଗବେଷଣା କେନ୍ଦ୍ର ଏ ଆଳୁର ବ୍ୟବସାୟିକ ଉତ୍ପାଦନ ପାଇଁ ଏକ ଚୁକ୍ତି କଥା ଚିନ୍ତା କଲେ । ମୂଷାଙ୍କୁ ତାଙ୍କ କ୍ଷମତା ଅନୁସାରେ ଜି.ଏମ୍. ଆଳୁ ଖାଇବାକୁ ଦିଆଗଲା । ଗବେଷଣା ପାଇଁ ପଚାଶଟି ନମୁନା ନିଆଗଲା । ୨୦୦୩ରେ ଗବେଷଣା ଲବ୍‌ଧ ତଥ୍ୟର ଆଧାରରେ ଏକ ଲେଖା 'ନିୟୁଟ୍ରିସନ ଏଣ୍ଡ ହେଲ୍‌ଥ' ଶୀର୍ଷକରେ ପ୍ରକାଶିତ ହେଲା । ମୂଷାର ପ୍ରତିଟି ଅଙ୍ଗ ଉପରେ ଜି.ଏମ୍ ଆଳୁର ପ୍ରଭାବ ଅତି ସ୍ପଷ୍ଟ ରୂପେ ବାରି ହେଲା । ମସ୍ତିଷ୍କ, ଲିଭର, ଟେଷ୍ଟିକ୍ଲିସ୍‌ର ଆକାର ଛୋଟ ହୋଇଯିବା ତା ମାନେ ସ୍ୱାଭାବିକ ଅଭିବୃଦ୍ଧି ନ ହେବା, ଶ୍ୱେତ ରକ୍ତ କଣିକା ମନ୍ଦ ହେବା ମାନେ ରୋଗ ପ୍ରତିରୋଧକ ଶକ୍ତି ଦୁର୍ବଳ ହୋଇଯିବା, ଥାଇମସ ଓ ସ୍ପ୍ଲିନ୍‌ରେ ପରିବର୍ତ୍ତନ, ପେଟରେ, ଅନ୍ତନଳୀରେ ନୂଆ ସେଲ୍‌ର ବୃଦ୍ଧି ତା ମାନେ କେନ୍‌ସରର ପୂର୍ବାବସ୍ଥା ପରି ବିପଦ୍‌ଜନକ ପ୍ରଭାବ ଦେଖିବାକୁ ମିଳିଲା । ଏଥିରୁ ଗୋଟିଏ କଥା ସ୍ପଷ୍ଟ ହୋଇଗଲା ଯେ, ଲେକ୍ଟିନ ନୁହେଁ ଜିନ୍ ପରିବର୍ତ୍ତନର ପ୍ରକ୍ରିୟାରେ ହିଁ ସମସ୍ୟାଟି ନିହିତ । ଏ ପ୍ରକ୍ରିୟାରେ ବ୍ୟବହାର କରାଯାଇଥିବା ଚିହ୍ନଟକାରୀ, ବାହକ, କାର୍ଯ୍ୟକାରୀ ସହଯୋଗୀ ଓ ସମାପ୍ତକାରୀ ଜିନ୍‌ର କି ପ୍ରଭାବ ମଣିଷର ସ୍ୱାସ୍ଥ୍ୟ ଉପରେ ପଡ଼ିବ ତାହା କହିବା ସମ୍ଭବ ନୁହେଁ । ଏଇ ଗବେଷଣାଲବ୍‌ଧ ତଥ୍ୟ ଜିଏମ୍. ଫସଲ ଓ ଖାଦ୍ୟର ଗୁଣବତ୍ତା ଉପରେ ପ୍ରଶ୍ନ ଚିହ୍ନ ଆଙ୍କି ଦେଲା ।

ଦୂରଦର୍ଶନରେ ଏ ଗବେଷଣା ସଂବଧରେ ନିଜର ବକ୍ତବ୍ୟ ରଖିବା ପାଇଁ ଡଃ ପୁସ୍ତାଇଙ୍କୁ ଡକାଗଲା । ବକ୍ତବ୍ୟ ପରେ ମାତ୍ର ଦୁଇଦିନ ପାଇଁ ସେ ହେଲେ ଏ ନୂଆ ଗବେଷଣାର ହିରୋ । ଦୁଇ ଦିନ ପରେ ଦୁଇଟି ଫୋନ କଲ୍ । ସେ କଲ ଆସି ଥିଲା,

ବ୍ରିଟେନର ପ୍ରଧାନମନ୍ତ୍ରୀଙ୍କ କାର୍ଯ୍ୟାଳୟରୁ ଗବେଷଣାଗାରର ମୁଖ୍ୟଙ୍କ ପାଖକୁ । ୩୫ ବର୍ଷର ଚାକିରୀ ଓ ଗବେଷଣାରୁ ବାଧ୍ୟତାମୂଳକ ଭାବେ ପୁଷ୍ଟାଇଙ୍କୁ ବିଦା କରିଦିଆଗଲା । ତାଙ୍କ ସହ ସେଇ ପ୍ରୋଜେକ୍ଟରେ କାମ କରୁଥିବା ୨୦ ଜଣ ବିଜ୍ଞାନୀ ବି ହରେଇଲେ ନିଜର ବୃତ୍ତି । ଜି.ଏମ୍. ଆଳୁର ପ୍ରୋଜେକ୍ଟକୁ ସବୁଦିନ ପାଇଁ ବନ୍ଦ କରିଦିଆଗଲା । ତଥାପି ଏ ଗବେଷଣାର କିଛି ଅଂଶ 'ଲେନ୍‌ସେଟ୍' ରେ ପ୍ରକାଶିତ ହୋଇ ସାରିଥିଲା । ଦୁର୍ଭାଗ୍ୟଜନକ କଥା ହେଲା ଯେ ଜି.ଏମ୍ ଖାଦ୍ୟଶସ୍ୟର ନିରାପଦତ୍ୱ ଓ ଗୁଣବତ୍ତାକୁ ନେଇ ଆଉ ଏତେ ଲମ୍ବା ଅବଧି ଧରି ଏଭଳି ନିରପେକ୍ଷ ଗବେଷଣା ହୋଇନାହିଁ । 'ଜିନ୍ ପରିବର୍ତ୍ତିତ ଟମୋଟୋ'କୁ ନେଇ ଆଉ ଏକ ପରୀକ୍ଷା ଆମେରିକାରେ ହୋଇଥିଲା । ଜିନ୍ ପରିବର୍ତ୍ତିତ ଟମାଟୋର ନାଁ ଥିଲା ଫ୍ଲେଭର ସେଭ୍‌ର । ଏ ଥିଲା ଆମେରିକାର ପ୍ରଥମ ଅନୁମୋଦିତ ଜିନ୍ ଫସଲ । ୨୮ ଦିନ ଧରି ୨୦ଟି ମୂଷାଙ୍କୁ ଏହା ଖାଇବାକୁ ଦିଆଯାଇଥିଲା । ୨୦ଟି ମଧ୍ୟରୁ ୭ଟି ମୂଷାର ପେଟରେ ରକ୍ତ କ୍ଷରଣ ଦେଖିବାକୁ ମିଳିଲା । ଆମେରିକାର 'ଫୁଡ୍ ଏଣ୍ଡ ଡ୍ରଗ୍ ଏଡ଼ମିନିଷ୍ଟ୍ରେସନ୍'ର ନିର୍ଦ୍ଦେଶକ ରବର୍ଟ ଜେ. ଚୁଫେଲିନ୍‌ଙ୍କ ମତରେ ଏହି ଟମାଟୋ ସ୍ୱାସ୍ଥ୍ୟ ପାଇଁ ନିରାପଦ ନୁହେଁ । ଆଉ ଏକ ପରୀକ୍ଷାରେ ୧୪ ଦିନ ଫ୍ଲେଭର ସେଭ୍‌ର ଟମାଟୋ ଖାଇବାପରେ ୪୦ ଟି ମୂଷାରୁ ୭ ଟି ମୂଷା ମୃତ୍ୟୁବରଣ କରିଥିଲେ । ଅଳ୍ପଦିନ ପରେ ଏହି ଟମାଟୋକୁ ଆମେରିକା ବଜାରରୁ ପ୍ରତ୍ୟାହାର କରିନିଆଗଲା ।

ମନସେଣ୍ଟୋ କମ୍ପାନୀ ଦ୍ୱାରା ଏମ୍ ଓ ଏନ୍ ୮୬୩ ନାମ ଏକ ଜିନ୍ ପରିବର୍ତ୍ତିତ ମକା ଉଭୟ ମାଈ ଓ ଅଣ୍ଡିରା ମୂଷାଙ୍କୁ ୯୦ ଦିନ ଧରି ଖୁଆଇବା ପରେ ସେମାନଙ୍କ ରକ୍ତ କଣିକାରେ ଅସ୍ୱାଭାବିକ ବୃଦ୍ଧି, ରକ୍ତ ଚାପ ବୃଦ୍ଧି, କିଡନୀରେ ଜ୍ୱଳନ, ଯକୃତରେ ରକ୍ତକ୍ଷରଣ, ଏମିନିଆ, ବ୍ଲଡ଼ ସୁଗର ବୃଦ୍ଧି ଭଳି ଅନେକ ବିପଦଜନକ ପ୍ରତିକ୍ରିୟା ଦେଖିବାକୁ ମିଳିଥିଲା, ଜର୍ମାନରେ ବିଟି ମକା ଖାଇଥିବା ୧୦ ଟି ଗାଈର ରହସ୍ୟଜନକ ମୃତ୍ୟୁ ହୋଇଥିବା ବେଳେ ଏହି ମକା ଅଧିକାଂଶ ଗାଈଙ୍କ ସ୍ୱାସ୍ଥ୍ୟରେ ଅବନ୍ନତି ପରିଲକ୍ଷିତ ହୋଇଥିଲା । 'ରାଉଣ୍ଡ ଅପ ରେଡ଼ି ସୋୟା' ଖାଇଥିବା ମୂଷାର ଯକୃତରେ ଅସ୍ୱାଭାବିକ ପରିବର୍ତ୍ତନ, ହଜମ ପ୍ରକ୍ରିୟାରେ ସମସ୍ୟା, କିଡ୍‌ନୀ, ହୃଦୟ ଓ ଯକୃତରେ ଥିବା କିଛି ଏନ୍‌ଜାଇମ୍‌ସରେ ଦୃଷ୍ଟାନ୍ତମୂଳକ ପରିବର୍ତ୍ତନ, ତିନି ସପ୍ତାହ ଭିତରେ ମୂଷା ଛୁଆଙ୍କ ମୃତ୍ୟୁ, ଏଲେର୍ଜି ଓ ଯକୃତ ଭାରି ହେବା ଭଳି ଘଟଣା ଦେଖିବାକୁ ମିଳିଥିଲା । ଆଉ ଏକ ପରୀକ୍ଷାରେ ଜିନ୍ ପରିବର୍ତ୍ତିତ 'ଲିବର୍ଟି ଲିଙ୍କ ମକା' ଖାଇ ବ୍ରିଟେନରେ କୁକୁଡ଼ାଙ୍କ ମୃତ୍ୟୁ ଘଟିଥିଲା ।

ଇତି ମଧ୍ୟରେ ଶ୍ରୀ ଅରପଦ ପୁଷ୍ଟାଇଙ୍କ ସହ ଆଉ ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବୈଜ୍ଞାନିକ ପ୍ରଫେସର ସୁବର୍ଟ ମିଳିତ ଭାବେ ସୁପ୍ରିମ କୋର୍ଟରେ ଏକ ଅଭିଯୋଗ ପତ୍ର

ଦାଖଲ କରିଛନ୍ତି । ତାର ସାର କଥା ହେଲା ଆମେରିକାରେ ଜିନ୍ ପରିବର୍ତ୍ତିତ ଫସଲର ସୁରକ୍ଷା ଦିଗ ପରୀକ୍ଷା କରିବା ବାଧ୍ୟତାମୂଳକ ନୁହେଁ ତେଣୁ ଏ ଫସଲରୁ ପ୍ରସ୍ତୁତ ଖାଦ୍ୟ ଯେ ନିରାପଦ ଏହା ପ୍ରମାଣ କରିବାପାଇଁ କିଛି ବିଜ୍ଞାନ ପ୍ରସ୍ତୁତ ଆଧାର ନାହିଁ । ବିଭିନ୍ନ ଗବେଷଣାରୁ ମିଳିଥିବା ତଥ୍ୟକୁ ସମ୍ମଳିତ କରି ସେ ଲେଖିଛନ୍ତି ଯେ, "ବିଟି ବିଷ ମଣିଷର ଅନ୍ତନଳୀ ଉପରେ ପ୍ରଭାବ ପକାଏ ଓ ରୋଗ ପ୍ରତିରୋଧକ ଶକ୍ତି ନଷ୍ଟ କରେ ।" ପୁଣିଆଇ ଲେଖିଛନ୍ତି, ଭାରତ ବର୍ତ୍ତମାନ ଗ୍ଲାଇଫୋସେଟ୍ ସହ୍ୟ କରିପାରୁଥିବା ସୋୟା ତେଲ ଆମଦାନୀ କରୁଛି । ୧୯୮୦ ମସିହାରେ ଏପରି ରିଫାଇନ ତେଲ ଖାଇ ଆମେରିକାରେ ବହୁ ଲୋକ ଏକ ନୂଆ ରୋଗରେ ଆକ୍ରାନ୍ତ ହେବା ଓ ଶତାଧିକ ମୃତ୍ୟୁମୁଖରେ ପଡ଼ିଥିବା କଥା ଲିପିବଦ୍ଧ ହୋଇ ରହିଛି । ଉତ୍ପାଦିତ ସୋୟା ତେଲର ବିଷାକ୍ତ ପ୍ରତିକ୍ରିୟା ସଂବଂଧିୟ ତଥ୍ୟ ଅନୁସାରେ ଏହା ଏଫ.ଏ.ଓ ଏବଂ ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥା ଦ୍ୱାରା ସ୍ଥିର କରାଯାଇଥିବା ମାନକ ମୁତାବକ ସୁରକ୍ଷିତ ନୁହେଁ । ଏହାର ଆମଦାନୀ ଆମ ଦେଶରେ ବେଆଇନ ହୋଇଥିବା ସତ୍ତ୍ୱେ ଆମ ସରକାର ତାକୁ ଆଇନଗତ ସୁରକ୍ଷା ଦେଉଛନ୍ତି ।

ଆମ ଦେଶରେ ଜିନ୍ ପରିବର୍ତ୍ତିତ ବିଟି କପାର ପ୍ରଚଳନ ହୋଇସାରିଛି । ବିଦର୍ଭ, ଆନ୍ଧ୍ରପ୍ରଦେଶ, ମହାରାଷ୍ଟ୍ର ଓ ମଧ୍ୟପ୍ରଦେଶର ଚାଷୀଙ୍କ କ୍ଷେତ୍ରରେ ଏହା ଆତ୍ମହତ୍ୟାର ବୀଜ ପ୍ରମାଣିତ ହୋଇଛି । ଆତ୍ମହତ୍ୟା କରିଥିବା ଲକ୍ଷାଧିକ ଚାଷୀଙ୍କ ମଧ୍ୟରୁ ବଡ଼ ଭାଗ ହେଲେ ବିଟି କପା ଚାଷୀ । ଅନିଶ୍ଚିତ ଉତ୍ପାଦନ, ପ୍ରତିକୂଳ ପରିବେଶକୁ ସହ୍ୟ କରିବାର ଶକ୍ତିର ଅଭାବ, ମାତ୍ରାଧିକ ଖର୍ଚ୍ଚ ଜନିତ ଋଣ ହେଲା ଚାଷୀ ଆତ୍ମହତ୍ୟାର କାରଣ । ବି.ଟି କପାର ଅସଲ ସମସ୍ୟା ହେଲା ବି.ଟି. ବିଷ । ଆନ୍ଧ୍ରପ୍ରଦେଶ ଓ ମଧ୍ୟପ୍ରଦେଶରେ ବିଟି କପା ଗଛ ପତ୍ର ଖାଇ ହଜାର ହଜାର ସଂଖ୍ୟାରେ ଛେଳି ଓ ମେଣ୍ଢା ମଲା ପରେ ପଶୁ ସ୍ୱାସ୍ଥ୍ୟ ବିଭାଗ ତରଫରୁ ଚାଷୀଙ୍କୁ ବିଟି କ୍ଷେତରେ ଗୃହପାଳିତ ପଶୁ ନ ଛାଡ଼ିବା ପାଇଁ ପରାମର୍ଶ ଦିଆଯାଇଥିଲା । ଅନ୍ୟ ଦିଗରେ ବି.ଟି. କପା କ୍ଷେତରେ କାମ କଲେ ଦେହ ହାତ କୁଣ୍ଡାଇ ହେବା, ନାକରୁ ପାଣି ଗଡ଼ିବା, ଆଖି ଲାଲ ହୋଇଥିବାର ଅଭିଯୋଗ ଆସୁଛି । ଏପରିକି ବିଟି କପାରେ କୀଟନାଶକ ଲାଗିବ ନାହିଁ, ଅନ୍ୟ କପା ବିହନ ତୁଳନାରେ ଅଧିକ ଉତ୍ପାଦନ ହେବା ବୋଲି କରାଯାଉଥିବା କମ୍ପାନୀ ପ୍ରଚାର ଯେ ମିଛ ସେକଥା ଭାରତ, ଚୀନ, ଆମେରିକା ଓ ଆର୍ଜେଣ୍ଟିନା ସମେତ ଅନେକ ଦେଶରେ ପ୍ରମାଣିତ ହୋଇସାରିଛି । କପା ଏକ ଅଣଖାଦ୍ୟ ଫସଲ । ଭାରତ ସରକାର ଓ ବିଭିନ୍ନ ରାଜ୍ୟର ସରକାର ଜି.ଏମ୍. ବାଇଗଣର ପରୀକ୍ଷାମୂଳକ ଚାଷ ଓ ବ୍ୟବସାୟିକ ଉତ୍ପାଦନ କଥା ଚିନ୍ତା କରୁଛନ୍ତି । କେବଳ ଜି.ଏମ୍. ବାଇଗଣ ନୁହେଁ, ଜିନ୍ ପରିବର୍ତ୍ତିତ ଭେଣ୍ଡି, କୋବି, ଆଳୁ, ଟମାଟୋ ଓ ଧାନ ଉତ୍ପାଦନର

ଯୋଜନା ରହିଛି । ଜି.ଏମ୍. ଖାଦ୍ୟ ଶସ୍ୟ ପ୍ରଚଳନର ଅର୍ଥ ଖାଦ୍ୟଥାଳିରେ ବିଷ । ଜାତି, ଧର୍ମ ବର୍ଗ ଓ ଦେଶ ନିର୍ବିଶେଷରେ ସଭିଏଁ ଏ ବିଷର ଶିକାର ହେବେ । କେବଳ ସେତିକି ନୁହଁ ଜିନ୍ ପରିବର୍ତ୍ତିତ ଫସଲ, ଅନ୍ୟ ଫସଲ ଓ ବିହନକୁ ପ୍ରଦୂଷିତ କରିଦେବାର କ୍ଷମତା ରଖେ । ପ୍ରଦୂଷଣକାରୀ ଏ ଫସଲ ପ୍ରଚଳନର ଅର୍ଥ ଜୈବ ବିବିଧତା ଉପରେ ଆକ୍ରମଣ । ସେଥିପାଇଁ ବୋଧହୁଏ ପ୍ରିନ୍ସ ଚାର୍ଲସ ଏହାକୁ ସଭ୍ୟତାର ସବୁଠୁ ବଡ଼ ବିପର୍ଯ୍ୟୟ କହି ବହୁରାଷ୍ଟ୍ରୀୟ କମ୍ପାନୀ ଓ ବାଇଓଟେକ୍ ଶିଳ୍ପ ଲବିର ଏ ଅମାନବୀୟ ପ୍ରଚେଷ୍ଟାକୁ ତୀବ୍ର ନିନ୍ଦା କରିଛନ୍ତି । ଜି.ଏମ୍. ଖାଦ୍ୟ ଓ ଫସଲକୁ ନିରାପଦ କହିବାର ବୈଜ୍ଞାନିକ ଆଧାର ନଥିବା ହେତୁ ୟୁରୋପ, ଭୂମଧ୍ୟସାଗର, ଲାଟିନ୍ ଆମେରିକାର ଅଧିକାଂଶ ଦେଶରେ ଉଭୟ ଜି.ଏମ୍. ଫସଲ ଓ ଖାଦ୍ୟର ଉତ୍ପାଦନ ଓ ଆମଦାନୀକୁ ଆପାତତଃ ବନ୍ଦ କରିଦିଆଯାଇଛି । ଭାରତର ପ୍ରଖ୍ୟାତ ବୈଜ୍ଞାନିକ ଡ଼ଃ. ପୁଷ୍ପା ଭାର୍ଗବଙ୍କ ମତରେ ଏଇ ପ୍ରଯୁକ୍ତିକୁ ମଣିଷ ଏବଂ ସାମଗ୍ରିକ ଭାବେ ଆମ ସଭ୍ୟତା ପାଇଁ ନିରାପଦ ବୋଲି ଦାବୀ କରିବା ଭଳି ଗବେଷଣା ଏ ପର୍ଯ୍ୟନ୍ତ ହୋଇନାହିଁ । ଏଥିପାଇଁ ଅତି କମ୍‌ରେ ୨୦ ବର୍ଷର ଗବେଷଣା ଜରୁରୀ । ଦୁର୍ଭାଗ୍ୟର କଥା ଯେ, ଲାଭ ଓ ଲୋଭ ସର୍ବସ୍ୱ ବାଇଓଟେକ୍ ଓ ବିହନ ଶିଳ୍ପ ସହ ଜଡ଼ିତ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଏତେ ଲମ୍ବା ସମୟ ଧରି ଅପେକ୍ଷା କରିବାକୁ ପ୍ରସ୍ତୁତ ନୁହଁନ୍ତି । କୃଷକର ଆତ୍ମନିର୍ଭରଶୀଳତା ଓ ଖାଉଟିର ଖାଦ୍ୟ ତଥା ସ୍ୱାସ୍ଥ୍ୟ ନିରାପତ୍ତା ଏବଂ ସାମଗ୍ରିକ ଭାବେ ବିଶ୍ୱର ପରିବେଶ ଓ ଜୈବ ବିବିଧତାକୁ ନେଇ ସେମାନେ ଆଦୌ ଚିନ୍ତିତ ଥିଲା ପରି ଜଣାପଡୁନାହିଁ । ଦୁର୍ଭାଗ୍ୟ ଯେ ବିଭିନ୍ନ ଦେଶରେ ଥିବା ସରକାର ଓ ଶାସକବର୍ଗ ଏଇ ବହୁରାଷ୍ଟ୍ରୀୟ ପୁଞ୍ଜିର ସ୍ୱାର୍ଥକୁ ପ୍ରାଥମିକତା ଦେଇ ଆସୁଛନ୍ତି । ଆମ ଦେଶରେ ସୁପ୍ରିମ୍‌କୋର୍ଟର ନିର୍ଦ୍ଦେଶନାମା ଅନୁସାରେ ଜିନ୍ ପରିବର୍ତ୍ତିତ ବିହନ ସମ୍ବନ୍ଧୀୟ ଆଗତ ସମସ୍ତ ମାମଲାର ଶୁଣାଣି ନ ହେବା ପର୍ଯ୍ୟନ୍ତ ଜି.ଇ.ଏ.ସି. ଆଉ କୌଣସି ଫସଲ ପାଇଁ ସ୍ୱୀକୃତି ଦେଇପାରିବ ନାହିଁ (୨୦୦୭) । ଏପରିକି ଜି.ଇ.ଏ.ସି. ନିୟମ ଅନୁସାରେ ଜିନ୍ ପରିବର୍ତ୍ତିତ ଫସଲ ପରୀକ୍ଷାମୂଳକ ଚାଷ ପାଇଁ ସଂପୃକ୍ତ ଅଞ୍ଚଳର ପଞ୍ଚାୟତର ଅନୁମତି ନିହାତି ଆବଶ୍ୟକ (୨୦୦୬) । ଏସବୁର ଖୋଲା ଉଲଂଘନ ଚାଲିଛି ଓ ଆମ ଦେଶର କେନ୍ଦ୍ର ତଥା ରାଜ୍ୟ ସରକାରମାନେ ସବୁ ଜାଣିଶୁଣି ନଜାଣିଲା ପରି ନୀରବ ରହିଛନ୍ତି । ଏ ଉଲଂଘନକୁ ସୁପ୍ରିମକୋର୍ଟର ଅବମାନନା ବୋଲି ଦର୍ଶାଇ ଅରୁଣା ରଡ଼୍‌ରିଗ୍ସ ଓ ପି.ଭି. ସତିସ୍ ୩୧.୧୦.୨୦୦୭ରେ ଏକ ପିଟିସନ୍ ଦାୟର କରିଛନ୍ତି । ଏମାନଙ୍କର କହିବା ଅନୁଯାୟୀ ସେପ୍ଟେମ୍ବର ୨୨, ୨୦୦୬ ପରଠାରୁ ସୁପ୍ରିମକୋର୍ଟରେ ଜିନ୍ ପରିବର୍ତ୍ତନ ସଂପର୍କିତ ନିର୍ଦ୍ଦେଶ ଅନୁଯାୟୀ ଅଧିକ ଜମିରେ ବିଟି ବାଇଗଣର ଖୋଲା ପରୀକ୍ଷାମୂଳକ ଚାଷ, ଜିନ୍ ପରିବର୍ତ୍ତିତ ନୂଆ ଖାଦ୍ୟଫସଲ ଚାଷ, ଜିନ୍ ପରିବର୍ତ୍ତିତ ଫସଲରୁ ପ୍ରସ୍ତୁତ ଖାଦ୍ୟଦ୍ରବ୍ୟ

ପ୍ରଚଳନ ଏବଂ ନୂଆ କିସମର ବିଟି କପା ପରୀକ୍ଷା ଇତ୍ୟାଦି ଉପରେ କଟକଣା ଜାରି କରାଯାଇଛି । ଦେଶବ୍ୟାପୀ ବିରୋଧ ପରେ ବି.ଟି. ବାଇଗଣ ଉପରେ ସାମୟିକ ପ୍ରତିବନ୍ଧକ ଲାଗିଛି ସତ କିନ୍ତୁ ସେ ପ୍ରତିବନ୍ଧକୁ ହଟାଇବା ପାଇଁ ଲୋକସଭାରେ ସଂଶୋଧନ ବିଲ୍ ଆଗତ ହେବାକୁ ଯାଉଛି । ଏ ଭଳି ପରିସ୍ଥିତିରେ ଦେଶର କୃଷକ, ଖାଉଟି, ପରିବେଶବିଦ୍ ଏବଂ ସାମଗ୍ରିକ ଭାବେ ନାଗରିକ ସମାଜ ଜି.ଏମ୍. ବିହନ ଖାଦ୍ୟଶସ୍ୟ ପ୍ରଚଳନ ତଥା ଆମଦାନୀରୁ ଭାରତ ତଥା ବିଭିନ୍ନ ରାଜ୍ୟ ସରକାର ବିରତ ରୁହନ୍ତୁ ବୋଲି ଚାପ ପକାଇବାର କଠିନ ବିକଳ୍ପଟି ଏଯାଏଁ ଖୋଲାରହିଛି ।



# ବିଚାରର ଲଢ଼େଇ, ଲଢ଼େଇର ବିଚାର

ଅନ୍ତତଃ କିଛି ଫୁଲ ପତ୍ର ହିଁ ବଞ୍ଚେଇ ରଖିବେ ପୃଥିବୀକୁ
ଅନ୍ତତଃ କିଛି ନିରୀହ ଶିଶୁ ହିଁ ବଞ୍ଚେଇ ରଖିବେ ହସକୁ
ଅନ୍ତତଃ କିଛି ପକ୍ଷୀ ହିଁ ବଞ୍ଚେଇ ରଖିବେ ସକାଳକୁ
ଅନ୍ତତଃ କିଛି ପ୍ରେମପତ୍ର ହିଁ ବଞ୍ଚେଇ ରଖିବେ ଅନୁଭବକୁ
ଅନ୍ତତଃ କିଛି ମଣିଷ ହିଁ ବଞ୍ଚେଇ ରଖିବେ ବିଚାରକୁ
ବିଚାର ଶୂନ୍ୟ ଯଦି ହୁଏ କେବେ ଏ ପୃଥିବୀ
ଗୋଟିଏ ବି ମଣିଷ ବଂଚିବେ ନହିଁ
ଅନ୍ତତଃ କିଛି ମଣିଷ ହିଁ ବଞ୍ଚେଇ ରଖିବେ
ଆଉ କିଛି ମଣିଷଙ୍କୁ । (କବି - ଅବିନାଶ)

ବିଚାର ବଞ୍ଚି ରହିଲେ ମଣିଷ ବଞ୍ଚି ରହିବ । କିଛି ମଣିଷ ହିଁ ବଞ୍ଚେଇ ରଖିବେ ସେଇ ବିଚାରକୁ, ଯେଉଁ ବିଚାରରେ ପ୍ରତିଟି ବର୍ଗର ମଣିଷ ଲାଗି ସାମ୍ୟତା ଓ ସ୍ୱାଧୀନତାର ଜୀବନ ପାଇଁ ଯଥେଷ୍ଟ ପରିସର ଥାଏ । ଅନେକ କୁହନ୍ତି ବିଚାରର ମୃତ୍ୟୁ ନାହିଁ । ଏଠି ମନେ ରଖିବାକୁ ହେବ ଜୀବନ ଯେମିତି ଏକ ପ୍ରବାହ, ବିଚାର ସେମିତି ଏକ ଧାରା । କୌଣସି ସ୍ଥିର କି ଜଡ଼ବସ୍ତୁ ନୁହଁ । ଅନେକ ଘଟଣା, ଦୁର୍ଘଟଣା, ସଂଘାତ, ସଂଘର୍ଷ ଦେଇ ମଣିଷର ଜୀବନ ଆଜି ଏମିତି ଏକ ସମୟର ଅଗଣାରେ ଛିଡ଼ା ହୋଇଛି, ଯେଉଁଠି 'ଜାତିରାଷ୍ଟ୍ର'ର ଉପସ୍ଥିତି ସହ ଅନେକ 'ବାଦର' ବୋଲହାକ ରହିଛି । ପ୍ରତି 'ବାଦ' ପଛରେ ଏକ ବିଚାର ଧାରା, ଏକ ମୂଲ୍ୟବୋଧ ଥାଏ । ବାଦ ଗୁଡ଼ିକ ଅନେକ ସମୟରେ ପରସ୍ପରବିରୋଧୀ । ପରସ୍ପରବିରୋଧୀ ବିଚାରଧାରା ମଧ୍ୟରେ ସଂଘାତ, ସଂଘର୍ଷ ଅନିବାର୍ଯ୍ୟ । ବିଚାରଧାରାର ତ ନିଜର ହାତ ଗୋଡ଼ ନଥାଏ, ଥାଏ ସେଇ ବିଚାରର ପ୍ରତିନିଧିତ୍ୱ ଓ ସମର୍ଥନ କରୁଥିବା ମଣିଷଙ୍କର । ସେମାନଙ୍କ ଦ୍ୱନ୍ଦ୍ୱରେ କେତେବେଳେ କିଏ ଦୁର୍ବଳ ପଡ଼ିଯାଏ କିଏ ହାରିଯାଏ । କା'ର ଉତ୍‌ଥାନ ହୁଏତ କା'ର ପତନ ହୁଏ । ସେଇମାନଙ୍କ ଜୟ ପରାଜୟକୁ ନେଇ

ସମାଜରେ, ଦେଶରେ ବା ବିଶ୍ୱରେ ସେଇ ନିର୍ଦ୍ଦିଷ୍ଟ ବର୍ଗର ବିଚାରଧାରାର ପ୍ରଭାବ କମ ବେଶି ହୋଇଥାଏ । ଏଇ ଯେମିତି ପୁଞ୍ଜିବାଦୀ, ସାମ୍ରାଜ୍ୟବାଦୀ ଚିନ୍ତାଧାରା ସହ ସାମ୍ୟବାଦୀ, ସମାଜବାଦୀ ବିଚାରଧାରାର ଦ୍ୱନ୍ଦ୍ୱ ଓ ସଂଘାତ । ବିଚାରଧାରା ଗୋଟିଏ କଥା ତାକୁ କାର୍ଯ୍ୟରୂପେ ଦେବା ଆଉ ଗୋଟିଏ । ସମାଜରେ ଯେହେତୁ ବିଜ୍ଞାନଗାର ପରି ପରୀକ୍ଷା ନିରୀକ୍ଷା ସମ୍ଭବ ନୁହେଁ ତଥା ଏଠି ଯେହେତୁ ଜୀବନ୍ତ ମଣିଷ ସହ ଏସବୁ, ତେଣୁ ତାର ପରିଣତିଟି ରସାୟନର ଫର୍ମୁଲା ପରି ହୁଏନା । ତାକୁ ସଫଳ ବ୍ୟବହାରରେ ଆଣିବାର ଦାୟିତ୍ୱ କାନ୍ଧେଇ ଥିବା ନେତୃବର୍ଗର ଆବିଳତା ବି ବେଳେ ବେଳେ ଆଶାନୁରୂପ ପରିଣତି ପାଇବାରେ ଅନ୍ତରାୟ ହୋଇଥାଏ । ଅନେକ ଐତିହାସିକ ଘଟଣା, ଦୁର୍ଘଟଣା ବି ବେଳେ ବେଳେ ଇତିହାସର ମୋଡ଼ ବଦଳେଇବାରେ ସାହାଯ୍ୟ କରେ ।

ଗୋଟିଏ ସମୟ ଥିଲା ସାମ୍ରାଜ୍ୟବାଦୀ ଚିନ୍ତାଧାରା ଯାହା ଉପନିବେଶବାଦ ଉପରେ ନିର୍ଭର କରି ଶକ୍ତିଶାଳୀ ହୋଇଥିଲା, ସେଇ ଉପନିବେଶିକ ଶୋଷଣରୁ ସୃଷ୍ଟି ହୋଇଥିଲା ପ୍ରଥମ ବିଶ୍ୱ ଓ ପ୍ରଥମ ବିଶ୍ୱର ଅପର୍ଯ୍ୟାପ୍ତ ମନେ ହେଉଥିବା ପୁଞ୍ଜି । ଗୋଟିଏ ସମୟ ଥିଲା ଆଜି ପ୍ରଥମ ବିଶ୍ୱର, କୁହାଯାଉ କିଛି ଦେଶର ବ୍ୟବସାୟ ଓ ଶାସନ ପ୍ରତିଷ୍ଠିତ ହୋଇଥିଲା, ଆଜିର ତୃତୀୟ ବିଶ୍ୱ କୁହାଯାଉଥିବା ଦେଶଗୁଡ଼ିକରେ । ମନେ ହେଉଥିଲା ଏ ସାମ୍ରାଜ୍ୟବାଦର ପରାଜୟ କି ପତନ କେବେ ହେବନି । ଠିକ୍ ସେମିତ ଧର୍ମକୁ କେନ୍ଦ୍ରକରି ଯେଉଁ ବିଚାରଧାରା ଥିଲା, ତାର ସମର୍ଥକଙ୍କ ପ୍ରଭାବ ବି କେବେ ଦୁର୍ବଳ ହେବ ସେକଥା ମଧ କେହି ଭାବୁ ନଥିଲେ । ଯୁଗଦୃଷ୍ଟି, ସମୟ ସହ ବଦଳେ । ଚର୍ଚ୍ଚ ଗୁଡ଼ିକର ଆଧିପତ୍ୟ ସରିଲା, ରାଜତନ୍ତ୍ରର ମୃତ୍ୟୁଘଣ୍ଟି ବାଜିବା ଆରମ୍ଭ ହେଲା । କୌଣସି କଥା ଅଚାନକ ଘଟେନା । ତା ପଛରେ ଏକ ପ୍ରକ୍ରିୟା ଥାଏ । ଧର୍ମରୁ ଶାସ୍ତ୍ର, ଶାସ୍ତ୍ରରୁ ଏକ ନିର୍ଦ୍ଦିଷ୍ଟ ବିଚାରଧାରା ଏବଂ ତା ଉପରେ ଲୋକଙ୍କ ଗଭୀର ଆସ୍ଥା, ବିଶ୍ୱାସ ଥିବାରୁ ସମାଜ ଓ ମଣିଷ ଜୀବନ ଉପରେ ତାର ଗଭୀର ପ୍ରଭାବ ଓ ନିୟନ୍ତ୍ରଣ ରହୁଥିଲା ।

ଉନବିଂଶ ଶତାବ୍ଦୀର ଶାସ୍ତ୍ରରୁ ଏକ ପ୍ରକ୍ରିୟା ଆରମ୍ଭ ହୋଇ 'ବିଂଶ ଶତାବ୍ଦୀ' ପରିଣତ ହେଲା ପ୍ରଚଳିତ ସାମ୍ରାଜ୍ୟବାଦ, ଫାଶୀବାଦ, ତା ଭିତରର ପୁଞ୍ଜିବାଦୀ ଚରିତ୍ର ବିରୋଧରେ ପ୍ରତିବାଦ ହେଇ ଜନ୍ମିଥିବା ବିଚାରଧାରାର ଯୁଗ । ରାଷ୍ଟ୍ରବାଦ, ଉଦାରବାଦ, ସାମ୍ୟବାଦ ଓ ସମାଜବାଦ ପ୍ରଭୃତି ସାମାଜିକ ରାଜନୈତିକ ବିଚାରଧାରା ପ୍ରଭାବଶାଳୀ ହେବାକୁ ଲାଗିଲା । ସେହି 'ବାଦ'ଗୁଡ଼ିକ ଲୋକଙ୍କ ଭିତରେ ଆଶାବାଦ ଓ ଉତ୍ତେଜନା ସୃଷ୍ଟି କରିଥିଲା । ଏହି ବାଦଗୁଡ଼ିକୁ ନେଇ ଭବିଷ୍ୟତକୁ ନୂଆକରି ଗଢ଼ିବାର, ସ୍ଥିତାବସ୍ଥାକୁ ବଦଳେଇବାର ଏକ ସମ୍ଭାବନା ସୃଷ୍ଟି ହୋଇଥିଲା । ପ୍ରତିଟି ବ୍ୟବସ୍ଥା ସହ ଏକ ବିଚାରଧାରା

ଥାଏ । ଗୋଟିଏ ନିର୍ଦ୍ଦିଷ୍ଟ ପ୍ରକାରର ବିଚାରଧାରା ବଞ୍ଚି ରହିବା ପାଇଁ ଏକ ନିର୍ଦ୍ଦିଷ୍ଟ ପ୍ରକାରର ରାଜନୈତିକ ଅର୍ଥନୀତି ତଥା ସାଂସ୍କୃତିକ ପରିବେଶ ଆବଶ୍ୟକ ହୋଇଥାଏ । ଯେମିତି ସାମ୍ରାଜ୍ୟବାଦୀ ଶାସନ ବଞ୍ଚି ରହିବା ପାଇଁ ଉପନିବେଶିକ ରାଜନୈତିକ ଅର୍ଥନୀତିର ଆବଶ୍ୟକତା ରହିଛି । ଏହାର ଅସଲ ଅଭୀପ୍ସା ହେଲା, ସମ୍ପତ୍ତି ବର୍ଦ୍ଧନ ବା ପୁଞ୍ଜି ବର୍ଦ୍ଧନ । ଅନ୍ୟ ଶବ୍ଦରେ ଏହା ପୁଞ୍ଜିବାଦ । ବିଂଶ ଶତାବ୍ଦୀର ବିଚାର ଜଗତରେ ଦେଖାଯାଇଥିବା ଆନ୍ଦୋଳନ ମଣିଷ ମନକୁ ଆନ୍ଦୋଳିତ କଲା । ଜନ୍ମିଲା ଏକ ପ୍ରଗତିଶୀଳ ଚିନ୍ତାଧାରା ଯାହା ଅନୁପ୍ରାଣିତ କଲା ଜନ ସମୂହକୁ । ଅନେକ ଲୁହ, ଲହୁ, ଦ୍ୱନ୍ଦ୍ୱ, ସଂଘାତ, ଯୁଦ୍ଧ ହେଲା, ଜୟ ପରାଜୟ ଘଟିଲା । ଏମିତି ଏକ ଆବେଦନରୁ ଋଷିଆ ଓ ଚୀନ ପରି ଦେଶରେ ଆସେ ସାମ୍ୟବାଦ । ତୃତୀୟ ବିଶ୍ୱର ଅଧିକାଂଶ ଦେଶରୁ ତଡ଼ା ଖାଆନ୍ତି ପ୍ରଥମ ବିଶ୍ୱର ରାଷ୍ଟ୍ରଗୁଡ଼ିକର ଶାସକ ଓ ବ୍ୟବସାୟୀ ବର୍ଗ । ଦେଶଗୁଡ଼ିକରେ ଗଣତାନ୍ତ୍ରିକ ସମାଜବାଦର ଆଦର୍ଶକୁ ନେଇ ଗଠନ ହେଲା ଦେଶୀ ଲୋକଙ୍କ ସରକାର ।

ସାମ୍ୟବାଦ, କେତେ ସଫଳ ହେଲା, ବିଫଳ ହେଲା, କେତେ ଜନକଲ୍ୟାଣ କରିପାରିଲା ସମାଜବାଦ, ସେ ଭିନ୍ନ କଥା କିନ୍ତୁ ପୁଞ୍ଜିବାଦୀ ତଥା ଉପନିବେଶିକ ଶୋଷଣ ଓ ଅତ୍ୟାଚାରରୁ ମୁକ୍ତିର ସ୍ୱପ୍ନ ଦେଖିଥିଲେ ଜନସମୂହ ଏବଂ ସେ ସ୍ୱପ୍ନ ସାକାର କରିବା ପାଇଁ ସାମ୍ୟବାଦ ଓ ସମାଜବାଦ ଏକ ବିଚାରର ଭିତ୍ତି ଦେଇଥିଲା । ପୁଞ୍ଜିର ଜୟଯାତ୍ରା ବେଶ କିଛି କାଳ ପାଇଁ ଥମି ଯାଇଥିଲା, ତାର ସଂପ୍ରସାରଣର ଗତି ମନ୍ଥର ହୋଇଯାଇଥିଲା । ସାମ୍ୟବାଦୀ, ସମାଜବାଦୀ ବିଚାରଧାରା ପଛରେ ବିଶାଳ ଜନ ସମୁଦାୟର ସମର୍ଥନ ଯୋଗୁଁ ପୂର୍ବର ରାଜ୍ୟ ଓ ଆଜିର ଜାତିରାଷ୍ଟ୍ରଗୁଡ଼ିକ ନିଜ ଦେଶର ସାଧାରଣ ଜନତାକୁ ଆଗଭଳି ଉପେକ୍ଷା କରି ପାରିଲେ ନାହିଁ । ମାତ୍ର ଲୋକ ସମର୍ଥନରେ ରାଷ୍ଟ୍ର ଶକ୍ତିଶାଳୀ ହେବାକୁ ଲାଗିଲା । କୃଷକ, ଶ୍ରମିକ ବର୍ଗ ଅନେକ ଅଧିକାର ହାସଲ କରି ପାରିଥିଲେ । ତାଙ୍କର ଉନ୍ନତି ଓ ସୁରକ୍ଷାର ଅନେକ ନୀତି, ଯୋଜନା ହୋଇଥିଲା । ଅନେକ ଆଇନ୍‌ର 'ସୁରକ୍ଷାକବଚ' ପିନ୍ଧିଲେ ଶ୍ରମଜୀବୀମାନେ । ଶ୍ରମିକ ଶ୍ରେଣୀର ସ୍ୱାର୍ଥକୁ ଆଖି ଆଗରେ ରଖି ଶିଳ୍ପନୀତି, ଶ୍ରମନୀତି ତିଆରି ହୋଇଥିଲା । ମହିଳାମାନଙ୍କୁ ମଧ ବ୍ୟାପକ ଅଧିକାର ଓ ସ୍ୱାଧୀନତା ହାସଲ ହୋଇଥିଲା । ସମାଜବାଦୀ ଗଣତାନ୍ତ୍ରିକ ରାଷ୍ଟ୍ରଗୁଡ଼ିକ ଅନେକ ଜନମଙ୍ଗଳକାରୀ ପଦକ୍ଷେପମାନ ନେଇଥିଲେ । ରାଜନୀତିରେ, ଅର୍ଥନୀତିରେ ସାଧାରଣ ଜନତାଙ୍କ ଏକ ନିଶ୍ଚିତ ଭୂମିକା ରହିଲା । ସମ୍ପତ୍ତି ବା ପୁଞ୍ଜି ଠୁଳୀକରଣ ଉପରେ ଅଙ୍କୁଶ ଲାଗିଲା, ଉତ୍ପାଦନ ପ୍ରକ୍ରିୟାରେ, ଶିଳ୍ପ ପରିଚାଳନାରେ କୃଷକ, ଶ୍ରମିକର ସକ୍ରୀୟ ଭାଗିଦାରୀ କଥା ଆସିଲା । ଏମିତି ଅନେକ କଥା ହେଲା । ଅବଶ୍ୟ ଆମକୁ ମାନିନେବାକୁ ହେବ ଯେ

ଋଷିଆ, ଫ୍ରାନ୍ସ, ଚୀନରେ ଶୋଷିତ ଶ୍ରେଣୀ ଯେଉଁ ସ୍ତରର ସ୍ୱପ୍ନ ଦେଖିଥିଲେ ସେ ତୁଳନାରେ ଉପରୋକ୍ତ ରାଷ୍ଟ୍ରୀୟ ଅନୁଗ୍ରହଗୁଡ଼ିକ ମୋଟେ ସନ୍ତୋଷଜନକ ହେଲା ନାହିଁ ।

ପ୍ରଥମ କେତୋଟି ଦଶକ ପରେ ସାମ୍ୟବାଦ ନାଁରେ ଶାସନ ଗାଦୀରେ ବସିଥିବା ଶାସକ ଗୋଷ୍ଠୀ, ରାଜନୈତିକ ଦଳ, ନିଜ କ୍ଷମତା ଓ ପ୍ରତିପତ୍ତିକୁ ବଢ଼େଇବା ଓ ତାକୁ ସ୍ଥାୟିତ୍ୱ ଦେବାରେ ବ୍ୟସ୍ତ ରହିଲା । କୃଷକ, ଶ୍ରମିକ ସଂଗଠନ ବା ଟ୍ରେଡ଼ ୟୁନିୟନ ଗୁଡ଼ିକର କର୍ତ୍ତୃତ୍ୱକୁ, ଦଳୀୟ ସ୍ୱେଚ୍ଛାଚାରିତା ନଷ୍ଟ କରିବାରେ ଲାଗିଲା । ଆଳ ହେଲା ପୁଞ୍ଜିବାଦୀ ରାଷ୍ଟ୍ରର ଆକ୍ରମଣରୁ ଦେଶର ପ୍ରତିରକ୍ଷା । ପୁଞ୍ଜିବାଦୀ ରାଷ୍ଟ୍ରଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା (ଅସ୍ତ୍ରଶସ୍ତ୍ର, ପ୍ରଯୁକ୍ତିଜନିତ ସମୃଦ୍ଧି) ପାଇଁ ଅଧିକ ପୁଞ୍ଜି ଆବଶ୍ୟକ ହେଲା । ଶ୍ରମିକ ବର୍ଗ, କୃଷକ ବର୍ଗଙ୍କୁ, ତାଙ୍କ ଉତ୍ପାଦନ ଓ ଲାଭର ସିଂହଭାଗରୁ ବଂଚିତ କରିବା ବିନା ଏତେ ପୁଞ୍ଜି କୋଉଠୁ ଆସିଥାନ୍ତା । ପୁଞ୍ଜି ବିନିଯୋଗର ଶିକ୍ଷା, ସ୍ୱାସ୍ଥ୍ୟ ବା ସାମାଜିକ ସୁରକ୍ଷା ପାଇଁ ନ ହୋଇ ହେଲା, ଅସ୍ତ୍ରଶସ୍ତ୍ର ନିର୍ମାଣ ଓ ସେ ଜନିତ ଗବେଷଣାରେ । ନୂତନ ପ୍ରଯୁକ୍ତି ଉଦ୍ଭାବନରେ । ଶ୍ରମଜୀବୀ ଓ ମହିଳାଙ୍କୁ ମିଳିଥିବା ସୁରକ୍ଷା, ସ୍ୱାଧୀନତା ଓ ଅଧିକାରର କ୍ଷେତ୍ରଗୁଡ଼ିକୁ ସଂକୁଚିତ କରି ଦିଆଗଲା । ଗଣମାଧ୍ୟମ, ସାହିତ୍ୟ, କଳା ସବୁ କ୍ଷେତ୍ରରେ ରାଜନୈତିକ ଦଳ ଓ ସରକାରର ନିୟନ୍ତ୍ରଣ ବଢ଼ିଲା । ପୁଞ୍ଜିବାଦୀ ରାଷ୍ଟ୍ର ସହ ପ୍ରତିଦ୍ୱନ୍ଦ୍ୱିତାର ଚାପରେ ନେତୃବର୍ଗ ନିଜେ ପୁଞ୍ଜିବାଦୀ ହେବାକୁ ଲାଗିଲେ, ଦେଶକୁ ପୁଞ୍ଜିବାଦୀ ରାସ୍ତାରେ ଚଳେଇବା ଆରମ୍ଭ କଲେ । ନିଜ ନିଜ ଦେଶରେ ଏକ ପୁଞ୍ଜିବାଦୀ ଶ୍ରେଣୀର ଉଦ୍‌ଭବ ହେଲା । ଦେଶରେ କିଛି କିଛି ଭବ୍ୟ ନଗର ବା ରାଜଧାନୀମାନ ସୃଷ୍ଟି ହେଲା । ସାମ୍ୟବାଦର ଫମ୍ପା ସ୍ଲୋଗାନ ଭିତରେ ରାଷ୍ଟ୍ର ସମର୍ଥିତ ପୁଞ୍ଜିବାଦ ଆରମ୍ଭ ହୋଇଗଲା । ସମାଜବାଦର ମାଳା ଜପୁ ଥିବା, ଭାରତ ପରି ତୃତୀୟ ବିଶ୍ୱର ଦେଶମାନ ତଥାକଥିତ ଭୋଟ ଗଣତନ୍ତ୍ରକୁ ବଂଚେଇ ରଖି, ତାକୁ ପୁଞ୍ଜିବାଦର ଉତ୍‌ଥାନ ଦିଗରେ ବ୍ୟବହାର କଲେ । ସମାଜବାଦର ମୁଖାତଳେ ଏଠି ବି ଚାଲିଲା ରାଷ୍ଟ୍ର ସମର୍ଥିତ ପୁଞ୍ଜିବାଦ । ଶାସକ ବର୍ଗରେ ସାମ୍ୟବାଦୀ ବିଚାରକୁ ନେଇ ବିଶ୍ୱାସହୀନତା, ଦ୍ୱନ୍ଦ୍ୱ, ପୁଞ୍ଜିବାଦୀ ରାଷ୍ଟ୍ରସମୂହର ଅହୋରାତ୍ର ଷଡ଼ଯନ୍ତ୍ର, ପୁଞ୍ଜିବାଦୀ ରାଷ୍ଟ୍ରରେ, ସମାଜରେ ବିକାଶ ଓ ସମୃଦ୍ଧିର ଯେଉଁ ସଜ୍ଜା, ଆଖି ଝଲସା ରୂପ ତାଠୁ ଭିନ୍ନ ଏକ ବିକଳ୍ପ ଖୋଜିବାରେ ବିଫଳତା, ଆଦର୍ଶବାଦ ନାଁରେ ଲୋକଙ୍କ ସ୍ୱାଧୀନତା, ସୃଜନଶୀଳତା ଉପରେ ଅହେତୁକ ଅଙ୍କୁଶ ଓ ତତ୍ ଜନିତ ଜନ ଅସନ୍ତୋଷ, ପୁଞ୍ଜିବାଦୀ ରାଷ୍ଟ୍ରସହ ଅଯଥା ପ୍ରତିଦ୍ୱନ୍ଦ୍ୱିତା, ପୁଞ୍ଜିବାଦୀଙ୍କ ଆକ୍ରମଣକୁ ପ୍ରତିହତ କରିବା ପାଇଁ ଯେତିକି ପ୍ରସ୍ତୁତି ରହିବା କଥା ତା'ର ଅଭାବ, ବିଚାରଧାରାକୁ କାର୍ଯ୍ୟ ରୂପ ଦେବାରେ ଯେତିକି ଆବିଳହୀନତା ନେତୃବର୍ଗଠୁ ଆଶା କରାଯାଉଥିଲା ତା'ର ଅଭାବ, ଏମିତି ଅନେକ

କାରଣରୁ ସତୁରୀ ପରଠୁ ସାମ୍ୟବାଦ ଓ ସମାଜବାଦର ପତନ ଦେଖାହେଲା ପରେ ଆରମ୍ଭ ହୋଇଗଲା । ପ୍ରକ୍ରିୟାତ କେବେଠୁ ଆରମ୍ଭ ହୋଇସାରିଥିଲା ।

ସୋଭିଏତ୍ ଋଷ ଭାଙ୍ଗିଗଲା, ତା'ପରେ ଗୋଟିଏ ଗୋଟିଏ ହୋଇ ଆଉ କିଛି କମ୍ୟୁନିଷ୍ଟ ସରକାର । ଅନେକ କହିଲେ ସାମ୍ୟବାଦର ମୃତ୍ୟୁ ଘଟିଲା । ବିଚାରକୁ, ଏକ ନିର୍ଦ୍ଦିଷ୍ଟ ଆଦର୍ଶକୁ କାର୍ଯ୍ୟରୂପ ଦେବାରେ ନେତୃବର୍ଗର ବିଫଳତାକୁ ସେ ଆଦର୍ଶର ମୃତ୍ୟୁ ବା ପରାଜୟ ବୋଲି ଧରିନିଆଯାଏ । ନେତୃବର୍ଗ ପ୍ରତି କେବଳ ଲୋକଙ୍କ ଆସ୍ଥା ଭାଙ୍ଗିଯାଏ ତା ନୁହଁ ସେହି ମତବାଦ ପ୍ରତି ମଧ୍ୟ ଏକ ନକାରାତ୍ମକ ଭାବନା ଆସେ ଯାହା ବିପଦ ଜନକ । ମଝି ମଝିକିଆ ବାଟ ଧରିଥିବା (ନା ସେକୂଳର ହେଲୁ ନା ଏ କୂଳର ହେଲୁ) ତୃତୀୟ ବିଶ୍ୱର ଦେଶଗୁଡ଼ିକ ସମାଜବାଦର ଯେଉଁ ଟିକକ ଧାର ଧାରିଥିଲେ ତାକୁ କୂଳରେ ଛାଡ଼ିଦେଇ ପୁଞ୍ଜିବାଦର ଗଭୀର ନଈକୁ ପାଦ ବଢ଼େଇଲେ । ନବେ ଦଶକ ବେଳକୁ ନଈର ଗଭୀରତା, ବେଗ କଥା ଚିନ୍ତା ନକରି ପଶି ତ ଗଲେ ଏବେ ଉଭୟ ନାକ ବାଟେ,ମୁହଁ ବାଟେ ପାଣି ପିଉଛନ୍ତି । ପୁଞ୍ଜିର ନଈରେ ପୁଣି ବଡ଼ ମାଛଙ୍କ ସହ ଏ କୁତୁରି, କେରାଣ୍ଡିଙ୍କ ବା କି ବହପ ଯେ ତିଷ୍ଠିବେ । ସମାଜବାଦର ମିଛ ଆବରଣ ତଳେ ଚାଲିଥିବା ରାଷ୍ଟ୍ର ସମର୍ଥିତ ପୁଞ୍ଜିବାଦରୁ ଜନ୍ମିଥିବା ଏକ ପୁଞ୍ଜିପତି ଶ୍ରେଣୀର, ରାଷ୍ଟ୍ର ଉପରେ ନିୟନ୍ତ୍ରଣ ବଢ଼ି ବଢ଼ି ଚାଲିଲା । ଜଗତୀକରଣ, ଉଦାରୀକରଣ, ଘରୋଇକରଣର ମହାମନ୍ତ୍ର ଜପ ଆରମ୍ଭ ହୋଇଗଲା । ତଥାକଥିତ ସମାଜବାଦୀ, ସାମ୍ୟବାଦୀ ଦେଶମାନେ ଭିକ୍ଷାଥାଳ ଧରି ଛିଡ଼ା ହେଲେ ମହାଜନଙ୍କ ଦେଶ ସାମ୍ନାରେ ତାଙ୍କ ଦ୍ୱାରା ସୃଷ୍ଟ, ତାଙ୍କ ସ୍ୱାର୍ଥର ପ୍ରତିନିଧିତ୍ୱ କରୁଥିବା ଆନ୍ତର୍ଜାତୀୟ ଋଣପ୍ରଦାନକାରୀ ସଂସ୍ଥା ( ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତୀୟ ମୁଦ୍ରାପାଣ୍ଠିର)ର ଦପ୍ତରରେ । ଆସନ୍ତୁ ଏଥର ଦେଖିବା ସାମ୍ୟବାଦୀ, ସମାଜବାଦୀଙ୍କ ବିଫଳତାର କି ପ୍ରଭାବ ପଡ଼ିଲା ବିଶ୍ୱ ରାଜନୀତି ଓ ଅର୍ଥନୀତି ଉପରେ । ଦେଖିବା କାହାର ହେଲା ପୁଷ ମାସ, କାହାର ହେଲା ସର୍ବନାଶ ।

ପୁଞ୍ଜିବାଦୀ ରାଷ୍ଟ୍ର ଓ ବିଭିନ୍ନ ରାଷ୍ଟ୍ରରେ ସୃଷ୍ଟିହୋଇଥିବା ପୁଞ୍ଜିପତି ଶ୍ରେଣୀ, ବହୁରାଷ୍ଟ୍ରୀୟ କମ୍ପାନୀ ଏବଂ ତାଙ୍କ ନିୟନ୍ତ୍ରଣରେ ଥିବା ସରକାର, ରାଜନୈତିକ ଦଳର ନେତୃବୃନ୍ଦ, ପୁଞ୍ଜି ବଳରେ ଖରିଦି ନିଆଯାଇଥିବା ଗଣମାଧ୍ୟମ ଓ ବୁଦ୍ଧିଜୀବୀ ବର୍ଗ୍ର କଂଠରେ ଘୋଷଣା କଲେ - ''ବଜାର, ପୁଞ୍ଜିବାଦ ହେଉଛି ସର୍ବୋପରି, ଅନମନୀୟ, ଅପ୍ରତିହତ । ଏହାର କୌଣସି ବିକଳ୍ପ ନାହିଁ କି ତାକୁ ଏବେ କୌଣସି ଚିନ୍ତାଧାରା, ଆଦର୍ଶ ଚ୍ୟାଲେଞ୍ଜ ଦେଇପାରିବ ନାହିଁ । ତା'ର ଗତି ତା'ର ସଂପ୍ରସାରଣକୁ କେହି ରୋକି ପାରିବେ ନାହିଁ । ସାମୟିକ ସଂକଟର ସାମ୍ନା କରିପାରେ ମାତ୍ର ତା'ର ପରାଜୟ ନାହିଁ । ବିଚାରଧାରାର

ଅନ୍ତ, ଆଦର୍ଶର ଅନ୍ତ, ଇତିହାସର ଅନ୍ତ ଘୋଷଣା ହେଲା । ତାମାନେ ଏହାରି ବିରୋଧରେ ଆଉ କୌଣସି ଆନ୍ଦୋଳନ ହେବ ନାହିଁ । ତା' ସାଙ୍ଗକୁ ସମସ୍ତ ମାନବ କଲ୍ୟାଣକାରୀ, ସମାନତା, ସ୍ୱତନ୍ତ୍ରତାର ବିଚାରକୁ ବଡ଼ ଧକ୍କା ଲାଗିଲା । ଆଧୁନିକତା ଯାହା ଦେଇଥିଲା, ଉତ୍ତର ଆଧୁନିକତା ତାହା ଛଡ଼େଇ ନେଉଛି ।

ଜଗତୀକରଣ ସହ ଯୋଡ଼ି ହୋଇଛି ଉଦାରୀକରଣ ଓ ଘରୋଇକରଣ । ଏହା ପୁଞ୍ଜିବାଦର ନୂତନ ନାମକରଣ ମାତ୍ର । ଉପନିବେଶବାଦର ନୂତନ ସଂସ୍କରଣ ମାତ୍ର । ଏହା ଆଗ ଅପେକ୍ଷା ଅଧିକ ସଂଗଠିତ, ଅଧିକ ଆକ୍ରାମକ, ସଂପ୍ରାସରଣଶୀଳ । ଜଗତୀକରଣ ସହ ପୁଞ୍ଜିବାଦରେ ଆସିଥିବା ପରିବର୍ତ୍ତନ କିଛି ନୁହଁ, କେବଳ ପୁଞ୍ଜିବାଦୀ ପୁନଃଗଠନର ହିଁ ରୂପାୟନ । ଏହି ପୁନଃଗଠନକୁ ଆହୁରି ବହୁ ଦିଗରୁ ଆଲୋଚନା କରାଯାଇପାରେ । ତା'ର କେତୋଟି ମୂଳ ଚରିତ୍ରର ଆଲୋଚନା ସଂକ୍ଷେପରେ କରିବା ।

ପରୋକ୍ଷ ଶାସନର ସଂସ୍କୃତି - ଆମ ଦେଶରେ ଆଗରୁ ପରୋକ୍ଷ ଶାସନର ପରମ୍ପରା ରହିଛି । ବ୍ରିଟେନ୍ ମହାରାଣୀ, ସରକାର, ସ୍ଥାନୀୟରାଜା, ଜମିଦାର, ଜନତାର ସମ୍ପର୍କ ହେଲା ତାର ଉଦାହରଣ । ଏବେ ଆମ ଦେଶରେ ଭୋଟ ରାଜନୀତି ରହିଛି, ଗଣତନ୍ତ୍ର ଚାଲିଛି । ଲୋକସଭା ବିଧାନସଭା ରହିଛି । ନିର୍ବାଚିତ ପ୍ରତିନିଧିଙ୍କ ନାଁରେ ଶାସନ ଚାଲିଛି । ମାତ୍ର ତାଙ୍କର ଶାସନ ଚାଲି ନାହିଁ, କାରଣ ସେମାନେ ଆଉ କା'ର ପ୍ରତିନିଧି । ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତୀୟ ମୁଦ୍ରାପାଣ୍ଠି, ଆମ ରାଜ୍ୟ କଥା ଉଠିଲେ ଆସିବ ଡି.ଏଫ.ଆଇ. ଡି ଓ ଏସିଆନ୍ ଡେଭେଲପମେଣ୍ଟ ବ୍ୟାଂକ କଥା । ଋଣ ଦେଉଥିବା ମହାଜନଙ୍କ ପ୍ରତିନିଧି ଏମାନେ, ତାଙ୍କ ସର୍ତ୍ତରେ ବନ୍ଧା ଏମାନେ, ସେମାନଙ୍କ ପରାମର୍ଶରେ, ନିର୍ଦ୍ଦେଶରେ ଟିକିଏ ନିଷ୍ଠୁର ହୋଇ କହିଲେ ଧମକରେ ଏମାନେ ଉଠବସ୍ ।

ଋଣର ସର୍ତ୍ତ ହିଁ ଆମ ଦେଶର ଅର୍ଥନୀତି - ଆମ ପରି ଦେଶଗୁଡ଼ିକର ନିଜସ୍ୱ ଅର୍ଥନୀତି ବୋଲି କିଛି ନାହିଁ । ଋଣ ପ୍ରଦାନକାରୀ ଦେଶ ଓ ସେଇ ପୁଞ୍ଜିବାଦୀ ରାଷ୍ଟ୍ରଙ୍କ ସ୍ୱାର୍ଥକୁ ପ୍ରତିନିଧିତ୍ୱ କରୁଥିବା ଋଣ ପ୍ରଦାନକାରୀ ସଂସ୍ଥାର ସର୍ତ୍ତ ହିଁ ଆମର ନୀତି, ଆମର ବଜେଟ, ଆମର ଯୋଜନା । ମହାଜନ ଋଣ ଦେଲାବେଳେ ଦେଖିନିଏ ଋଣ ନେଉଥିବା ଲୋକର ଋଣ ଫେରେଇବାର କ୍ଷମତା ଅଛି ନା ନାହିଁ । ଋଣ ବଦଳରେ କ'ଣ ବନ୍ଧା ରଖାଯାଇପାରେ, ଋଣର ଭରଣା ନହୋଇ ପାରିଲେ କ'ଣ ସବୁ ହଡ଼ପ କରିହେବ । କିନ୍ତୁ ଏଇ ମହାଜନମାନେ ସେତିକିରେ ବି ସନ୍ତୁଷ୍ଟ ନୁହଁନ୍ତି । ସୁଧ ସହ ଋଣ ଫେରି ପାଇବାଟାକୁ ନିଶ୍ଚିତ କରିବା ପାଇଁ ସେମାନେ ଆମ ଭଳି ଦେଶଗୁଡ଼ିକରେ କରିଥିବା ପୁଞ୍ଜି ନିବେଶକୁ ସୁରକ୍ଷିତ ଭାବରେ ବଢ଼େଇବା ପାଇଁ ପରାମର୍ଶ ଦିଅନ୍ତି, ଏମିତି ଖର୍ଚ୍ଚ କର, ଏଠି କର,

ସେଠି କର ନାହିଁ । ଏତିକି ସେଠି ଲଗାଅ, ସେଠୁ ଏତିକି କାଟ । ଏଇ ଯେମିତି ସବ୍‌ସିଡ଼ି କାଟ, ଶ୍ରମିକଙ୍କୁ ଛଟେଇ କର, ନୂଆ ନିଯୁକ୍ତି ବନ୍ଦକର, ଶିକ୍ଷା, ସ୍ୱାସ୍ଥ୍ୟ, କୃଷିରେ ସରକାରଙ୍କ ପୁଞ୍ଜି ନିବେଶ କମ୍ କର, ବନ୍ଦ କର, କୃଷିଜାତ ଦ୍ରବ୍ୟରେ ଆତ୍ମନିର୍ଭରଶୀଳତା ଅନାବଶ୍ୟକ । ଖାଦ୍ୟନିଗମ ଓ ସାଧାରଣ ବିତରଣ ବ୍ୟବସ୍ଥା ବନ୍ଦ କର । ସରକାରୀ ଉଦ୍ୟୋଗଗୁଡ଼ିକ ବିକ୍ରି କରିଦିଅ । କ୍ଷତିରେ ଚାଲୁଥିବା ଶିଳ୍ପକୁ ସଳଡ଼ା ସଳଡ଼ି ଛାଡ଼ି, ବନ୍ଦ କରିଦିଅ । ଆମଦାନୀ ରପ୍ତାନୀ ନୀତି କୋହଳ କରିଦିଅ । ଉପଭୋଗର ସମାଗ୍ରୀର ଆମଦାନୀ କରି ଦେଶର କ୍ଷୁଦ୍ର, ଗୃହ ଶିଳ୍ପ ଗୁଡ଼ିକ ବନ୍ଦ କରିଦିଅ । ଏଥିରେ ଯଦି ପୁଞ୍ଜିବାଦୀଙ୍କ ଧନଶୋଷ ମେଣ୍ଟୁନି ତେବେ ଦେଶର ନଦୀ, ନାଳ, ମାଟି, ଜମି, ଜଙ୍ଗଲ, ଖଣିଜ, ବିଦ୍ୟୁତ ସବୁକୁ ଲିଜ୍, ଠିକା ଦେଇଦିଅ, ନ ହେଲେ ବିକ୍ରି କରିଦିଅ ।

ପୁଞ୍ଜିବାଦୀ ରାଷ୍ଟ୍ରର ପୁନଃ ସଂରଚନା-ଜନମଙ୍ଗଳ ରାଷ୍ଟ୍ରର ଦିଟି କାମ ହେଲା ସେବା ଓ ଶାସନ । ଏବର ରାଷ୍ଟ୍ର ନିଜକୁ ସେବାରୁ ପ୍ରତ୍ୟାହାର କରି ନେଉଛି । କେବଳ ଶୃଙ୍ଖଳା ନାଁରେ ଶାସନ କାମଟି ହାତରେ ରଖିଛି । ରାଷ୍ଟ୍ର ସାଧାରଣ ଜନତା ପାଇଁ ଉତ୍ତରଦାୟିତ୍ୱରୁ ନିଜକୁ ମୁକ୍ତ କରି ନେଉଛି । କିନ୍ତୁ ପୁଞ୍ଜିର ଜୟଯାତ୍ରାକୁ ବାଧାମୁକ୍ତ କରିବାରେ ବା ଏସବୁର ବିରୋଧକୁ ଦମନ କରିବାରେ ରାଷ୍ଟ୍ର ବେଶ ସକ୍ଷମ ମନେ ହେଉଛି । ତୃତୀୟ ବିଶ୍ୱର ରାଷ୍ଟ୍ର ପାଇଁ ଏକଥାଟି ଅଧିକ ସତ୍ୟ । ଆମ ଭଳି ଦେଶର ସରକାରମାନେ ସ୍ୱୟଂଚାଳନରେ କ୍ଷମତା ହରାଉଛନ୍ତି । କିନ୍ତୁ ଲୋକଙ୍କ ବିରୋଧରେ ହିଂସା କରିବାରେ ଶକ୍ତି ତାଙ୍କର କମୁ ନାହିଁ ।

ରାଷ୍ଟ୍ରର ଚରିତ୍ର ଅଧିକରୁ ଅଧିକ ଲୋକ ବିରୋଧୀ ହେଉଛି ।

ଦେଶର ରାଷ୍ଟ୍ରର ସମ୍ପଦ ବନାମ ସାଧାରଣଙ୍କ ସମ୍ପଦ ଭଳି ସମୀକରଣକୁ ନେଇ ରାଷ୍ଟ୍ରଶକ୍ତି ଓ ଲୋକ ମୁହାଁମୁହିଁ ହେଉଛନ୍ତି ।

ଲୋକଙ୍କ ବିନା ସମ୍ମତିରେ, ଅନେକ ନିଷ୍ପତ୍ତି ନିଆଯାଉଛି ।

ପ୍ରାକୃତିକ ସମ୍ପଦର ଅନ୍ଧାଧୂନ ପଣ୍ୟକରଣ ଯୋଗୁଁ ସାଧାରଣଙ୍କ ମୁଖ୍ୟତଃ ଚାଷୀ, ଆଦିବାସୀ, ଦଳିତ, ଜଙ୍ଗଲ ଶ୍ରମିକର ଜୀବନ ଜୀବିକା ବିପନ୍ନ ହୋଇଛି । ତା'ର ବିରୋଧ ହେଉଛି । ତାକୁ ଦେଶବିରୋଧୀ, ବିକାଶବିରୋଧୀ ଗତିବିଧି ନାଁ ଦେଇ ସେ ପ୍ରକାର ବିରୋଧର ନେତୃତ୍ୱ ନେଉଥିବା ନେତୃବର୍ଗଙ୍କୁ ଜାତୀୟ ସୁରକ୍ଷା ଆଇନ୍ ବଳରେ, ବିନା ବିଚାରରେ ଜେଲ ଭିତରେ ପକେଇ ଦିଆଯାଉଛି । ଆନ୍ଦୋଳନ ଚାଲୁଥିବା ଅଞ୍ଚଳକୁ ଉପଦ୍ରୁତ ଅଞ୍ଚଳ, ନକ୍ସଲଙ୍କ ଯାଗା କହି ପୋଲିସ୍, ସି.ଆର.ପି.ଏଫ୍, ପାରାମିଲଟାରୀ ଫୋର୍ସ ଦ୍ୱାରା

ଦମନ ଚାଲିଛି । ଓଡ଼ିଶାର ଜନଆନ୍ଦୋଳନଗୁଡ଼ିକ ଉପରେ ଦମନର ଏ ପ୍ରକ୍ରିୟା ଜାରି ରଖିଛି ରାଷ୍ଟ୍ରଶକ୍ତି । ଗଣହତ୍ୟା ଚାଲିଛି, ରାଷ୍ଟ୍ର ହିଂସାତ୍ମକ ହେଉଛି । ପ୍ରକୃତି ଓ ତାର ସମ୍ପଦକୁ ନେଇ ପୁଞ୍ଜିପତି ଓ ସାଧାରଣଙ୍କ ଭିତରେ ଲଢ଼େଇ ଆରମ୍ଭ ହୋଇଯାଇଛି ଏବଂ ରାଷ୍ଟ୍ରଶକ୍ତି ପୁଞ୍ଜିପତିଙ୍କ ସହ ଛିଡ଼ା ହୋଇଛି । ସେ ଜମି, ଡଙ୍ଗର ହେଉ, ଚିଲିକାର ମାଛଚାଷ ହେଉ, ନଦୀର ପାଣି ହେଉ କି ବିଦ୍ୟୁତ୍ ଶକ୍ତି ହେଉ ।

ଦେଶର ଗଣତାନ୍ତ୍ରିକ ଅନୁଷ୍ଠାନଗୁଡ଼ିକୁ ନେତୃତ୍ୱ ଦେଉଥିବା ରାଜନୈତିକ ନେତୃବର୍ଗ, ଅମଲା ବର୍ଗ, ବୁଦ୍ଧିଜୀବୀ ବର୍ଗଟି ତଥାକଥିତ 'ବିଶ୍ୱ ନାଗରିକ' ଶ୍ରେଣୀର । ତେଣୁ ଦେଶର ଅନୁଷ୍ଠାନଗୁଡ଼ିକୁ ପୁଞ୍ଜି ନିର୍ଦ୍ଦେଶିତ କରିବାରେ କିଛି ଅସୁବିଧା ନାହିଁ । ଓଲଟି ପୁଞ୍ଜି ମୁହଁର ଭାଷାକୁ ଦେଶର ଲୋକସଭା, ରାଜ୍ୟସଭା, ବିଚାର ବିଭାଗ, ଗବେଷଣା ପ୍ରତିଷ୍ଠାନ ମାଧ୍ୟମରେ କୁହାଯାଉଛି । ଏସବୁ ପଦକ୍ଷେପ ପଛରେ ଦେଶବାସୀଙ୍କ ସମ୍ମତି, ସ୍ୱୀକୃତି ରହିଛି ବୋଲି ଏକ ପ୍ରତ୍ୟୟ ସୃଷ୍ଟି ପାଇଁ ଗଣମାଧ୍ୟମ ଗୁଡ଼ିକୁ ବ୍ୟବହାର କରାଯାଉଛି । ଭୁଲ ସିଦ୍ଧାନ୍ତ ଓ ଅବଧାରଣାଗୁଡ଼ିକର ଘନ ଘନ ପ୍ରଚାର ପ୍ରସାର ଚାଲିଛି ଏବଂ ସେଗୁଡ଼ିକର କେମିତି ବିକଳ୍ପ ନାହିଁ ସେକଥା ମଧ୍ୟ ଆମ ମୁଣ୍ଡରେ ପଶା ଚାଲିଛି । ଆମେରିକାର ନୋମ୍ ଚମସ୍କି ତାଙ୍କ ଲେଖାରେ ସ୍ପଷ୍ଟ ଦେଖେଇଛନ୍ତି ଗଣତନ୍ତ୍ରକୁ ପୁଞ୍ଜିବାଦୀମାନେ କେମିତି ନିଜ ବ୍ୟବସାୟିକ ସ୍ୱାର୍ଥ ପାଇଁ ବ୍ୟବହାର କରି ପାରନ୍ତି, କେମିତି ଦେଶର ଅନେକ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ-ଅର୍ଥନୈତିକ ନିଷ୍ପତ୍ତି ଜନସାଧାରଣଙ୍କ ବିନା ସମ୍ମତିରେ ନିଆଯାଏ । ଆମେରିକାର ଶାସକଶ୍ରେଣୀ ଦଳମତ ନିର୍ବିଶେଷରେ କେମିତି ଆମେରିକାର କଂଗ୍ରେସକୁ କର୍ପୋରେଟ୍ ସେକ୍ଟରର ସ୍ୱାର୍ଥରେ ବ୍ୟବହାର କରିଛନ୍ତି । ଗଣମାଧ୍ୟମକୁ କବଜା କରି, ଜନମତ ସର୍ବେକ୍ଷଣ ମାଧ୍ୟମରେ, ନିଜ ନିଷ୍ପତ୍ତି ସପକ୍ଷରେ ଜନମତ ଅଛି ବୋଲି ଦେଖଉଛନ୍ତି । ଯେଉଁ ଦେଶରେ ନିଜର ପୁଞ୍ଜି ନିବେଶ ହୋଇଛି, ସେ ଦେଶରେ କି ପ୍ରକାର ସରକାର ରହିଲେ, ନିବେଶକୁ ଅଧିକ ଲାଭ ମିଳିପାରିବ, ସେଇଥିପାଇଁ ସରକାରକୁ ଭାଙ୍ଗିବା, ଗଢ଼ିବା, ଅସ୍ତ୍ରଶସ୍ତ୍ର, ଅର୍ଥ ଦେଇ ସାମରିକ ଷଡ଼ଯନ୍ତ୍ର କରିବା, ଆବଶ୍ୟକ ହେଲେ ରାଷ୍ଟ୍ରାଧ୍ୟକ୍ଷଙ୍କୁ ହତ୍ୟା କରେଇବା ଯାଏଁ କଥା ଯାଇଛି । ଠିକ୍ ସେଇକଥା ଭାରତରେ ଘଟୁଛି । ବଜେଟ୍ ପୂର୍ବରୁ ଦର ବଢ଼େଇବା, ଅର୍ଡ଼ିନାଂସ ମାଧ୍ୟମରେ ନୀତି ପ୍ରଣୟନ କରିବା, ଜନମତକୁ ଭ୍ରୁକ୍ଷେପ ନକରି କୃଷି ସବସିଡ଼ି କାଟିବା, ଗ୍ୟାଟ୍ ଚୁକ୍ତିରେ ସାକ୍ଷର କରିବା, ଏନ୍‌ରନ୍ ପ୍ରକଳ୍ପକୁ ମଞ୍ଜୁରି ଦେବା, ବାଲ୍‌କୋକୁ ଘରୋଇ କମ୍ପାନୀ ହାତରେ ବିକିଦେବା, ପରମାଣୁ ପରୀକ୍ଷଣ କରିବା, ଶ୍ରମିକଙ୍କୁ ସୁରକ୍ଷା କବଚ ପିନ୍ଧେଇଥିବା ଶ୍ରମ ଓ ଶିଳ୍ପ ଆଇନ୍‌ରେ ସଂଶୋଧନ ଆଣିବା ପରି ଅନେକ ନୀତିଗତ ନିଷ୍ପତ୍ତି ନିଆଯାଉଛି । ସମ୍ମତି ବିନା ସ୍ୱୀକୃତି ବିରୋଧରେ ଯେତେବେଳେ ଜନ ଅସନ୍ତୋଷ

ଦେଖାଦେଉଛି ତାକୁ ଦମନପାଇଁ ରାଷ୍ଟ୍ରଶକ୍ତି ହିଂସାକୁ ଉତୁରି ଆସୁଛି । ରାଷ୍ଟ୍ରର ପ୍ରତିନିଧି ବୋଲାଉଥିବା ଶ୍ରେଣୀ, କରପୋରେଟ୍ ସେକ୍ଟରରୁ ଦଳୀୟ ଚାନ୍ଦା, ବ୍ୟକ୍ତିଗତ ଚାନ୍ଦା ଅସୁଲିରେ ବ୍ୟସ୍ତ । ସେଇଥିରୁ ରାଷ୍ଟ୍ରରେ ଦୁର୍ନୀତିର ମାତ୍ରା ବଢ଼ିଚାଲିଛି । ବାଲ୍କୋ ବିକ୍ରୀ, ୟୁ.ଟି.ଆଇ, ତେହେଲକା, ବୋଫର୍ସ ଖଣିଲିଜ୍ ପରି ଅନେକ ଦୁର୍ନୀତିର ଭାଣ୍ଡାଫୋଡ଼ ଆମକୁ ବ୍ୟସ୍ତ କରି ରଖୁଛି । ଅବଶ୍ୟ ସମୟକ୍ରମେ ଏସବୁ ଦିହସୁହା ହେଇଗଲାଣି ।

ବ୍ୟବସାୟୀମାନେ ନିଜ ଶୋଷଣକୁ ସହଜ, ଗ୍ରହଣୀୟ କରିବା ପାଇଁ ମନ୍ଦିର ତିଆରି କରନ୍ତି, ପିମ୍ପୁଡ଼ିକୁ ଚିନି ଦେଲା ଭଳି ପ୍ରାକୃତିକ ବିପର୍ଯ୍ୟୟ ବେଳେ ଭଣ୍ଡାରରୁ କିଞ୍ଚିତ ଦାନ ଦକ୍ଷିଣା ଦେଇଥାନ୍ତି । ଠିକ୍ ସେମିତି ବିକାଶମୂଳକ କାମ ନାଁରେ (କୋଉଠି ରାସ୍ତା କି କୋଉଠି ସ୍ଥାନୀୟ ହିରୋଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା କରିବା) 'ଲୋକ ଶିକ୍ଷା' ନାଁରେ ନିଜ ସପକ୍ଷରେ ପାଠ ଘୋଷେଇବା ପାଇଁ ଖର୍ଚ୍ଚ କରନ୍ତି ଶିଳ୍ପପତି, ପୁଞ୍ଜିପତିମାନେ । ସାଧାରଣ ଲୋକ, ଗଣମାଧ୍ୟମ ଓ ଦେଶର ବୁଦ୍ଧିଜୀବୀଙ୍କ ମୁଣ୍ଡ କିଣାହୁଏ । ରାଜନେତା ତ ଆଗରୁ କିଣା ସେ ସମ୍ପର୍କରେ ଦିଟି ଉଦାହରଣ ନେବା । 'ଏନରନ୍' ଲୋକଶିକ୍ଷା ନାଁରେ ୬୬ କୋଟି ଟଙ୍କା ଖର୍ଚ୍ଚ କରିବା, କାଶୀପୁରରେ ଉତ୍କଳ ଆଲୁମିନା ୫୧ କୋଟି ଟଙ୍କା ଖର୍ଚ୍ଚ କରିଛି ବୋଲି ଦାବି କରିବା । ସେ ସବୁର ଖର୍ଚ୍ଚର ହିସାବ କିନ୍ତୁ ସେମାନେ ଦେଇ ପାରୁ ନାହାନ୍ତି । ଅବଶ୍ୟ ଏତିକି ଜଣାପଡୁଛି ନେତା, ଅମଲା, ରାଜନୈତିକ ଦଳ, ଗଣମାଧ୍ୟମକୁ ନିଜ ସପକ୍ଷକୁ ଆଣିବା ପାଇଁ ଏତକ ଖର୍ଚ୍ଚ ହେଉଛି । କର୍ପୋରେଟ୍ ସେକ୍ଟର ଉଭୟ ଆଗ ଓ ପଛ ବାଟରେ କିଛି କିଛି ଦିଆଥୁଆ କରି ଏକ 'ବିଶ୍ୱ ନାଗରିକ' ଶ୍ରେଣୀ ସୃଷ୍ଟି କରିଛି । ସେମାନଙ୍କୁ ନିଜ ସମର୍ଥକ କରି, ତାଙ୍କ ମାଧ୍ୟମରେ ସାଧାରଣଙ୍କୁ ଶୋଷଣ କରୁଛି । ଅଧିକାଂଶଙ୍କ ଜୀବନ ଜୀବିକା,ମାନବିକ ଅଧିକାର ଛଡ଼େଇ ନେଉଛି, ଏ ପୁଞ୍ଜିବାଦୀ ପ୍ରକ୍ରିୟା । ବିଦେଶୀ ପୁଞ୍ଜିନିବେଶକୁ ଡାକି ଆଣିବା ନାଁରେ, ବୈଦେଶିକ ମୁଦ୍ରାର ଆବଶ୍ୟକତା ନାଁରେ ଦେଶର ଜମି, ଜଳ, ଜଙ୍ଗଲ, ପାହାଡ଼, ପବନ କଉଡ଼ି ଦାମରେ ବିକା ଚାଲିଛି । ତେହେଲକା ଓ ମ୍ୟାଚ୍ ଫିକ୍ସିଙ୍ଗ୍ ପାଇଁ କାନ୍ଦ କାନ୍ଦ ହେଉଥିବା ଏ ମଧ୍ୟବିତ୍ତଙ୍କ ସେ ଆଡ଼କୁ ନଜର ପଡୁନି ନା ମୁକ୍ତ ଅର୍ଥନୀତି, ମୁକ୍ତ ବାଣିଜ୍ୟ ତାଙ୍କ ଭୋଗବାଦ ପାଇଁ ଅନେକ ସମ୍ଭାବନା ଆଣି ଦେଇଛି ବୋଲି ସେଇଥି ପାଇଁ ଚୁପ୍ ରହିଛନ୍ତି ? ଦେଶ ସ୍ୱାର୍ଥ ପାଇଁ ନୁହଁ, ଲୋକଙ୍କ ସ୍ୱାର୍ଥପାଇଁ ନୁହଁ, ଏକ ନିର୍ଦ୍ଦିଷ୍ଟ ବର୍ଗ ମହାପେଟ ହେଉଥିବା ହେତୁ ।

କିଛି ମୂଳ ସମ୍ପଦ ଓ ତାର ପ୍ରକ୍ରିୟାକରଣ ପରେ, ତାକୁ ନେଇ ଉତ୍ପାଦିତ ଚିଜର ବଜାର ଓ ବଜାରରେ କିଣି ପାରୁଥିବା ଏକ ସ୍ୱଚ୍ଛଳବର୍ଗ ଆବଶ୍ୟକ କରେ ଏଇ ପୁଞ୍ଜିବାଦୀ ପ୍ରକ୍ରିୟା । ପ୍ରାକୃତିକ ସମ୍ପଦ, ଶସ୍ତା ଶ୍ରମ, ତଥା ଉନ୍ନତ ପ୍ରଯୁକ୍ତିପ୍ରସୂତ ଯନ୍ତ୍ରକୁ ନେଇ ଏକ

ଶସ୍ତା ଉତ୍ପାଦନ ପ୍ରକ୍ରିୟା ଓ ଉଦାର ଅର୍ଥନୀତି ନାଁରେ ବ୍ୟବସାୟର ଆନ୍ତର୍ଜାତୀକରଣ ପାଇଁ ବଜାର, ଶ୍ରମ, ଉତ୍ପାଦନ ପ୍ରକ୍ରିୟା ଉପରେ ରାଷ୍ଟ୍ରର ନିୟନ୍ତ୍ରଣ କରି, କର୍ପୋରେଟ୍ ସେକ୍ଟରର ପ୍ରଭାବ ବୃଦ୍ଧି କରିବା ବିନା ପୁଞ୍ଜିବାଦ ତିଷ୍ଠି ପାରିବ ନାହିଁ । ସେଇଥିପାଇଁ ଜଗତଟା ଯାକ ଗୋଟିଏ ଗାଁ କହି ସେମାନେ ନିଜ ଚିଜର ବଜାର ପାତି ବସିଲେଣି ସବୁଠି । ଉତ୍ତର ଉପନିବେଶବାଦ ।

ଉତ୍ପାଦନ ପ୍ରକ୍ରିୟାରେ ପରିବର୍ତ୍ତନ ଓ ସେଥିରେ ସୂଚନା ଓ ପ୍ରଯୁକ୍ତି ବିଦ୍ୟାର ଭୂମିକା ଆଜିର ଜଗତୀକରଣ ପ୍ରକ୍ରିୟାର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ଉତ୍ପାଦନ ପ୍ରକ୍ରିୟା ପୂର୍ବପରି ଗୋଟିଏ ଯାଗାରେ କେନ୍ଦ୍ରୀଭୂତ ନହୋଇ ବିଭିନ୍ନ ସ୍ଥାନରେ, ଦେଶରେ, ବିଚ୍ଛିନ୍ନଭାବରେ ହେଉଛି ଏବଂ ତାକୁ ଗୋଟିଏ ଯାଗାରେ ବସି ପରିଚାଳନା କରାଯାଇ ପାରୁଛି, ପ୍ରଯୁକ୍ତି ବିଦ୍ୟାର ଆଶ୍ରୟ ନେଇ । ଏହା ପୁଣି ସମ୍ଭବ ହୋଇଛି ପୁଞ୍ଜିର ଜଗତୀକରଣ ଯୋଗୁଁ । ଆନ୍ତର୍ଜାତୀୟ ବ୍ୟାଙ୍କ ମାଧ୍ୟମରେ, ଋଣଦାନକାରୀ ସଂସ୍ଥା ମାଧ୍ୟମରେ । ଆନ୍ତର୍ଜାତୀୟ ମୁଦ୍ରାପାଣ୍ଠି, ବିଶ୍ୱବ୍ୟାଙ୍କ ଏବଂ ଓଇସିଡ଼ିକୁ ମଧ୍ୟ ଏ ଦିଗରେ ବ୍ୟବହାର କରାଯାଉଛି, ଯେଉଁମାନେ ବିଦେଶୀ ପୁଞ୍ଜିନିବେଶକୁ ଆକର୍ଷିତ କରିବାର ବାଟ ବତଉଛନ୍ତି ।

ସମୃଦ୍ଧି ଓ ବିକାଶର ସ୍ୱପ୍ନ ଅନେକ ପାର୍ଥିବ ସତ୍ୟ ଓ ସୀମିତତାକୁ ଭୁଲେଇ ଦେବାକୁ ଚାହେଁ । ପଶ୍ଚିମା ସମୃଦ୍ଧି ସେ ଏକ ନାରକୀୟ ସମୃଦ୍ଧି, ଉପନିବେଶିକ ଶୋଷଣର ସୃଷ୍ଟ ଏବଂ ତାହା ସଂଖ୍ୟାଗରିଷ୍ଠଙ୍କ ପାଇଁ ନରକ ଡାକି ଆଣୁଛି, ଏ ନିଷ୍ଠୁର ସତ୍ୟକୁ କେମିତି ସାଧାରଣ ଲୋକେ ନ ବୁଝନ୍ତୁ କିମ୍ବା ବୁଝିକି ଅବୁଝା ରହନ୍ତୁ ସେ ଆଗ୍ରହ ନେଇ ଧନୀଦେଶମାନଙ୍କ ଭୋଗ ଓ ବିଳାସର ଚିତ୍ର ପରସା ହୁଏ ଆମକୁ । ଆମ ଦୃଷ୍ଟିଟି ଟେରା ହୋଇଯାଏ । ସେ ଦିଗରେ ଇଣ୍ଟରନେଟ୍, ଶହେ ଚ୍ୟାନେଲ୍‌ବାଲା କେବୁଲର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସେ ଚିତ୍ର ସବୁ ଆମ ଆଗରେ ଆଦର୍ଶ ହୋଇ ଛିଡ଼ାହୁଏ । ସେ ସ୍ୱପ୍ନରେ ଆମେ ଭୁଲିଯାଉ ଯେ ପ୍ରାକୃତିକ ସମ୍ପଦ ସୀମିତ ଏବଂ ମଣିଷ ଜାତି ହଜାର ହଜାର ବର୍ଷ ଜୀଇଁ ରହିବାର ଅଭୀପ୍ସା ରଖିଛି । ପ୍ରଚଳିତ ଢଙ୍ଗରେ, ଗତିରେ ଯଦି ତା'ର ବ୍ୟବହାର ଚାଲେ ସେ ସବୁ ଅଚିରେ ଶେଷ ହୋଇଯିବ । ତା'ଛଡ଼ା ଅନେକଙ୍କ ପାଇଁ ଏସବୁ ଜୀବନ ଜୀବିକାର ଏକମାତ୍ର ସମ୍ବଳ ।

ମୂଳବସ୍ତୁଗୁଡ଼ିକର ଅବକ୍ଷୟର ତୀବ୍ରତାରୁ ଯେଉଁ ସମୃଦ୍ଧି ଆସୁଛି ତାହା ମଣିଷ ସମାଜର ସ୍ଥାୟୀ ବିକାଶର ପରିପନ୍ଥୀ । ପ୍ରଚଳିତ ଢଙ୍ଗରେ ଧନବୃଦ୍ଧି, ପ୍ରତିଦେଶରେ ଗୋଟିଏ ଅତିଧନୀ ଶ୍ରେଣୀ ଓ ଗୋଟିଏ ଲେଖାଏଁ ଧନୀ ମଧ୍ୟବିତ୍ତ ଶ୍ରେଣୀ ସୃଷ୍ଟି କରୁଛି । ଯେଉଁମାନେ ବଜାରରେ କିଣାବିକା କରିପାରିବେ । ଅନ୍ୟ ଦିଗରେ ଏ ପ୍ରକ୍ରିୟା ଯୋଗୁଁ ଜୀବନ ଜୀବିକା

ହରାଉଥିବା ବର୍ଗକୁ ବିସ୍ଥାପନ, ସ୍ଥାନାନ୍ତରଣ, ବେରୋଜଗାରର ସାମ୍ନା କରିବାକୁ ପଡୁଛି । ତାପରେ ନିଜ ଶ୍ରମକୁ ଅତି ଶସ୍ତାରେ ବିକିବାକୁ ବାଧ ହୁଅନ୍ତି ସେମାନେ । ମୂଲଚାଲର କ୍ଷମତା ହରେଇ ବସନ୍ତି ସେମାନେ । ଏତିକି ବି ବଜାର ସଂପ୍ରସାରଣ ପାଇଁ ଯଥେଷ୍ଟ ନୁହଁ । କାରଣ ପ୍ରତି ଦେଶରେ, ସମାଜରେ ନିଜ ନିଜର ଏକ ସାଂସ୍କୃତିକ ବିଚାର ଓ ମୂଲ୍ୟବୋଧ ରହିଛି । ସ୍ଥାନୀୟ ସଂସ୍କୃତି ତଥା ସ୍ଥାନୀୟ ଆଗ୍ରହର ଭିତ୍ତିରେ ଉତ୍ପାଦିତ ସମାଗ୍ରୀଗୁଡ଼ିକ ପ୍ରତି ମୋହ ରହିଛି । ଏଣୁ ଏଠି ନୂଆ ଏକ ସାଂସ୍କୃତିକ ବିଚାରଧାରା ଓ ମୂଲ୍ୟବୋଧ ସୃଷ୍ଟି କରିବାକୁ ହେବ, ଯାହା ବଜାରର ମୂଲ୍ୟବୋଧ ସହ ଖାପ ଖାଉଥିବ । ସେଇଠୁ କଥା ଉଠେ ସାଂସ୍କୃତିକ ସାମ୍ରାଜ୍ୟବାଦର କଥା । ଯାହା ଦମନ ମାଧ୍ୟମରେ ହୋଇପାରେ, ବିଦେଶୀ ସଂସ୍କୃତି ଓ ବସ୍ତୁର ଆଞ୍ଚଳିକୀକରଣ କିମ୍ବା ଆଞ୍ଚଳିକ ସଂସ୍କୃତିର ବିଦେଶୀକରଣ, ଆମେରିକୀକରଣ ମାଧ୍ୟମରେ ହୋଇପାରେ ।

ସମାଜବିଜ୍ଞାନୀ ଓ ନୃତତ୍ତ୍ୱବିଦ୍‌ମାନେ ସଂସ୍କୃତିର ସଂଜ୍ଞା ନିରୂପଣ କଲାବେଳେ ଅନେକ ସମୟରେ ରାଜନୀତିବିମୁଖ ମନେ ହୁଅନ୍ତି । ଜ୍ଞାନ, ସୂଚନା, କ୍ଷମତା ଓ ସଂସ୍କୃତି ଭିତରର ଅନ୍ତଃସମ୍ପର୍କକୁ ବିଚାରକୁ ନ ନେଲେ ସଂସ୍କୃତିକୁ ଠିକ୍ ଅର୍ଥରେ ବୁଝିବା ମୁସ୍କିଲ । କିନ୍ତୁ ମନେ ରଖିବାକୁ ହେବ ଯେ ପ୍ରତିଟି ସଂସ୍କୃତି ବଞ୍ଚି ରହିବା ପାଇଁ ଏକ ନିର୍ଦ୍ଦିଷ୍ଟ ପ୍ରକାରର ରାଜନୈତିକ - ଅର୍ଥନୀତି ଓ ଉତ୍ପାଦନ ପ୍ରକ୍ରିୟା ଆବଶ୍ୟକ କରେ । ଶାସକ ଗୋଷ୍ଠୀର ଆଗ୍ରହ ସହ ସଂସ୍କୃତିର ସମ୍ପର୍କ, ମୁଖ୍ୟଧାରାର ସଂସ୍କୃତି ତା ବାହାରର ସଂସ୍କୃତି, ସଂଖ୍ୟାଗରିଷ୍ଠ ଓ ସଂଖ୍ୟାଲଘୁଙ୍କ ସଂସ୍କୃତିକୁ ମଧ୍ୟ ବିଚାରକୁ ନିଆଯିବା ବିନା ସଂସ୍କୃତିକୁ ବୁଝିବା ଅଧିକ କଷ୍ଟ ହେବ । ସାଂସ୍କୃତିକ ସାମ୍ରାଜ୍ୟବାଦର ତିନିଟି ଦିଗ ସମ୍ପର୍କରେଏଠି ଆଲୋଚନା କରିବା । ଉପଭୋଗର ସଂସ୍କୃତିକୁ ବଞ୍ଚାଇବା ପାଇଁ ବଜାରୀ ବିଚାର ଓ ମୂଲ୍ୟବୋଧର ପ୍ରଚାର ପ୍ରସାର ହେଉଛି, ବିଜ୍ଞାପନ ମାଧ୍ୟମରେ । ଆବଶ୍ୟକତା ଅପେକ୍ଷା ଇମେଜ ସଚେତନତାକୁ ପ୍ରୋତ୍ସାହନ ଦେଉଛି । ନିର୍ଦ୍ଦିଷ୍ଟ ସାମଗ୍ରୀର ବ୍ୟବହାର ସହିତ, ଫେସନ୍ ସହିତ ନିଜର ଏକ ନିର୍ଦ୍ଦିଷ୍ଟ ପରିଚୟକୁ ଜାହିର କରିବାର ପାଗଳାମିକୁ ଉତ୍ସାହିତ କରୁଛି ବିଜ୍ଞାପନ । ତା ସହିତ ଜଡ଼ିତ ହେଉଛି 'ଏକକ ସଂସ୍କୃତିର ଦାଦାଗିରି, ଦମନର କଥା । କି ସୁଟ୍, କଲମ, ଘଡ଼ି, ପିନ୍ଧୁଛ, ଘରେ କି କାର୍ପେଟ ବିଛାଇଛ, କି ବିସ୍କୁଟ ଖାଉଛ, ଷ୍ଟିକର ଲଗା ଅଷ୍ଟ୍ରେଲିଆ ସେଓ ଖାଉଛ ନା ବିନା ଷ୍ଟିକରର ଦେଶୀ ସେଓ, କି ବ୍ରାଣ୍ଡର କାର ଚଢୁଛ, ତାକୁ ନେଇ ନିଜ ପରିଚୟ ତିଆରିର ଆକାଂକ୍ଷା ବଜାରକୁ ସାହାଯ୍ୟ କରୁଛି । ଯେଉଁ ଆକାଂକ୍ଷା ବଜାର, ବିଜ୍ଞାପନ ମାଧ୍ୟମରେ ତିଆରି କରୁଛି । ସୁଜୁକୀ ସହ ମାରୁତି ଉଦ୍ୟୋଗର ମିଳନ, ବିଦେଶୀ କାର ଓପେଲ, ଫୋର୍ଡ୍, ଦେବୁ, ବେଂଜେର ଆମଦାନୀ, ଷ୍ଟକ ବଜାରରେ ଏରଗ୍ରନ୍, ଷ୍ଟେନଲୀ,

ବୋଷ୍ଟନର ଅନୁପ୍ରବେଶ, ରାଜୀବ ଯୁଗରୁ ଆରମ୍ଭ ହୋଇଥିବା ଟେଲିକମ୍ ଯୁଗରୁ ଆଜିର ସେଲୁଲାର, ମୋବାଇଲ ଫୋନ୍‌ର ଦିନ ଆସିବା, ଦେଶରେ ଚାଇନିଜ୍, ଆମେରିକାନ୍, କୋରିଆନ୍ ଖାଦ୍ୟର ଚାହିଦା ବୃଦ୍ଧି ହେବା, ଫାଷ୍ଟ ଫୁଡ୍‌ର ଚାହିଦା, ଇଣ୍ଟରନେଟ୍ ଓ ଚବିଶ ଘଣ୍ଟିଆ ଦୂରଦର୍ଶନ ଚେନେଲ୍ ସହ ବିଦେଶୀ ନାଚ, ଗୀତ, ବସ୍ତ୍ରର ଚାହିଦା ବୃଦ୍ଧି - ଏସବୁକୁ ଆମେ 'ଏକକ ସଂସ୍କୃତି' ବା 'ମନୋକଲଚର' ପ୍ରଭାବ କହିପାରିବା । ଯୋଉଠି ଗୋଟିଏ ସଂସ୍କୃତି, ଅନ୍ୟସବୁ ସଂସ୍କୃତିକୁ ଗିଳି ପକାଉଛି ।

ସ୍ଥାନୀୟ ସଂସ୍କୃତି, ପରମ୍ପରା, ସହ ସ୍ଥାନୀୟ ଆବଶ୍ୟକତା, ଲୋକରୁଚି ଓ ଚାହିଦାକୁ ଆଖି ଆଗରେ ରଖି ଗ୍ଲୋବାଲାଇଜେସନ୍ - ଜଗତ ଓ ସ୍ଥାନୀୟ ସଂସ୍କୃତିର ଫେଣ୍ଟାଫେଣ୍ଟି ଫ୍ୟୁଜନ୍ । ଏହା ମଧ୍ୟ ବଜାରର ଏକ ଚାଲ୍ । ସ୍ଥାନୀୟ ରୁଚିକୁ ପ୍ରାଧାନ୍ୟ ଦେଇ ନିଜ ସାମଗ୍ରୀର ରୂପକୁ ବଦଳେଇବା ।

ବିଶେଷକରି ଖାଦ୍ୟ, ବସ୍ତ୍ର, ସଙ୍ଗୀତ, ଗୀତ, ନାଚ ପରିବେଷଣରେ । ଘୁସୁରୀ, ଗାଈମାଂସ ବଦଳରେ, 'ମେକ୍‌ଡୋନାଲଡ୍'ର କୁକୁଡ଼ା ମାଂସ ବା ଶାକାହାରୀ ଭୋଜନ ବିକ୍ରୀ କରିବା, ନାଚ, ଗୀତ ସଙ୍ଗୀତରେ ସ୍ଥାନୀୟ ସଂସ୍କୃତିର ସ୍ପର୍ଶ (ବାହ୍ୟିକ, ମୋଟେ ଆତ୍ମିକ ନୁହଁ), ଲୋକଗୀତ, ନାଚ, ସଙ୍ଗୀତର ସ୍ପର୍ଶ, ଫ୍ୟୁଜନ୍ କରିବା । ସ୍ଥାନୀୟ ସାଂସ୍କୃତିକ ଆଗ୍ରହର ଆଉଁସା ଥାଇ ବସ୍ତ୍ର ଉତ୍ପାଦନ କରିବା, ବିଭିନ୍ନ ପର୍ବ ପର୍ବାଣୀକୁ ଆଖି ଆଗରେ ରଖି ସାମଗ୍ରୀ ଉତ୍ପାଦନ କରିବା - ଏସବୁ କେବଳ ବିକ୍ରି ବୃଦ୍ଧିର ଫନ୍ଦି ଫିକର । ଅନ୍ୟପଟେ ସ୍ଥାନୀୟ ଲୋକେ ମିଛ ଗର୍ବରେ ମାତନ୍ତି ଯେ ତାଙ୍କ ସଂସ୍କୃତି ଆଜି ବିଶ୍ୱ ଦରବାରରେ । ଅତି ଚାଲାକିରେ କିନ୍ତୁ ସେ ସବୁ ସ୍ଥାନୀୟ ମୌଳିକତାକୁ ନଷ୍ଟ କରିଦିଆଯାଏ । ଲୋକପ୍ରିୟ ସାଲସା,ସୋବା ସଙ୍ଗୀତର ମୌଳିକତାକୁ ନଷ୍ଟକରି ତାର ଆନ୍ତର୍ଜାତିକୀକରଣ କରାଯାଇଛି । ଏହାର ଆଉ ଏକ ନିଷ୍ଠୁର ଦିଗ ରହିଛି । ଆଞ୍ଚଳିକ ଭିତ୍ତିରେ ସ୍ଥାନୀୟ ଚାହିଦାକୁ ଆଖି ଆଗରେ ରଖି ସ୍ଥାନୀୟ ଲୋକେ ଉତ୍ପାଦନ କାରୁଥିବା ସମାଗ୍ରୀର ବଜାରକୁ ମାଡ଼ି ବସିଲେ ବହୁରାଷ୍ଟ୍ରୀୟ କମ୍ପାନୀମାନେ, ଦେଶୀ ପୁଞ୍ଜିପତିମାନେ । ତାଙ୍କର ପ୍ୟାକେଜିଂ,ବିଜ୍ଞାପନ, ସାମ୍ନାରେ ଏମାନେ ବା କ'ଣ ପ୍ରତିଦ୍ୱନ୍ଦ୍ୱିତା କରନ୍ତେ ? ସେସବୁ ଉତ୍ପାଦନ ପ୍ରକ୍ରିୟା ସହ ଜଡ଼ିତ କ୍ଷୁଦ୍ର ଶିଳ୍ପ, ଗୃହ ଶିଳ୍ପଗୁଡ଼ିକ ବନ୍ଦ ହେବାକୁ ଲାଗିଛି । ବେରୋଜଗାରୀ ଓ ଅସହାୟ ଲୋକଙ୍କ ସଂଖ୍ୟା ବଢୁଛି ।

'ବିଜ୍ଞାପନ ଶିଳ୍ପ' ଲୋକଙ୍କୁ ସୀମାହୀନ ଭୋଗର ପାଠପଢ଼ଉଛି । ଉଚ୍ଚ ଧନୀକ ଏବଂ ଧନୀ ମଧ୍ୟବିତ୍ତ ପାଇଁ ଉପଭୋଗର ସମ୍ଭାବନା ଓ ବିବିଧତାକୁ ପ୍ରସାରିତ କରିଛି । ଏସବୁ ସହିତ ଯୋଡ଼ିହୋଇ ରହିଛି ଉତ୍ତର ଆଧୁନିକତାର କଥା, ଇତିହାସ ଓ ଆଦର୍ଶର

ମୃତ୍ୟୁ କଥା । ଏନେଇ ଭାରତର ବୁଦ୍ଧିଜୀବୀ, ରାଜନୈତିକ ଦଳର ପ୍ରତିକ୍ରିୟା ତ ରହିଛି ମାତ୍ର ତାହା ବଡ଼ ଅସ୍ପଷ୍ଟ । ମୁଁ ଏଠି ଦକ୍ଷିଣପନ୍ଥୀଙ୍କ (ଆର.ଏସ୍.ଏସ୍., ବିଜେପି, ବି.ଏଚ୍.ପି) ଦ୍ୱନ୍ଦ୍ୱ କଥା କହିବି । ଏମାନଙ୍କ ପ୍ରତିକ୍ରିୟା ସହ ପରିଚୟ ବା ଅସ୍ମିତା ହରେଇ ବସିବାର (ଏ ଜଗତୀକରଣର ବଜାରୀ ପ୍ରକ୍ରିୟାରେ) ଚିନ୍ତାରେ ମ୍ରିୟମାଣ ମଧ୍ୟବିତ୍ତଙ୍କ ପ୍ରତିକ୍ରିୟାର ସାଦୃଶ୍ୟ ଲକ୍ଷଣୀୟ । ଗୋଟିଏ ଦିଗରେ ମେକ୍-ଡ଼ୋନାଲଡ୍ ଫୁଡ଼ ସେଣ୍ଟର ଭାଙ୍ଗିବା, (ଗାଈ ମାଂସ ବିକ୍ରି ହେଉଥିବା ମିଛି ଆଶଙ୍କାରେ) ସ୍କୁଲ-କଲେଜରେ ଛାତ୍ରୀଙ୍କ ପାଇଁ ବସ୍ତ୍ର କୋର୍ଡ଼ ଧାର୍ଯ୍ୟ କରିବା, 'ମଧୁସାପ୍ରେ' ଓ 'ମିଲନ୍ଦ ସେନ୍'ଙ୍କ ନଗ୍ନ ବିଜ୍ଞାପନକୁ ବନ୍ଦ ପାଇଁ ଦାବି କରିବା ଓ ଅନ୍ୟ ଦିଗରେ ଏସବୁ ପରିବର୍ତ୍ତନ ସହ ଜଡ଼ିତ ରାଜନୈତିକ ଅର୍ଥନୀତିକୁ ସ୍ୱୀକୃତି । ଏମାନଙ୍କ ଆଦର୍ଶ ବା ବିଚାରରେ ''ଆମେରିକା ବା ପଶ୍ଚିମା ପ୍ରସ୍ତୁତ ପ୍ରଯୁକ୍ତି, ପ୍ରଯୁକ୍ତି ପ୍ରସ୍ତୁତ ଯନ୍ତ୍ର, ବସ୍ତୁ ଏବଂ ତାପଛର ରାଜନୈତିକ - ଅର୍ଥନୀତି ସବୁକୁ ସ୍ୱାଗତମ ମାତ୍ର ସେ ସବୁ ଭିତରେ ବି ବ୍ରାହ୍ମଣବାଦୀ ସଂସ୍କୃତି ବଞ୍ଚି ରହୁ । ତା ଉପରେ ଏସବୁର କିଛି ପ୍ରଭାବ ନ ପଡୁ ।'' ଏସବୁର କିଛି ମାନେ ନାହିଁ । କାରଣ ପ୍ରଯୁକ୍ତି କେବଳ ପ୍ରଯୁକ୍ତି ନୁହେଁ, ଯନ୍ତ୍ର କେବଳ ଯନ୍ତ୍ର ନୁହଁ, ଉପଭୋଗର ସମାଗ୍ରୀ କେବଳ ସାମଗ୍ରୀ ନୁହଁ, ତା ସହ ଯୋଡ଼ି ହୋଇଛି ଏକ ଜୀବନ ପ୍ରଣାଳୀ, ଏକ ନିର୍ଦ୍ଦିଷ୍ଟ ବିଚାର ଓ ମୂଲ୍ୟବୋଧ ତଥା ଏକ ରାଜନୈତିକ-ଅର୍ଥନୀତି । ତାକୁ ବିରୋଧ କରିବା ବିନା ସାଂସ୍କୃତିକ ସାମ୍ରାଜ୍ୟବାଦକୁ ବିରୋଧ କରାଯାଇ ପାରିବ ନାହିଁ । ଏଥି ସହିତ ନାରୀମୁକ୍ତିର ସମ୍ପର୍କକୁ ମଧ ବିଚାର କରିବାକୁ ହେବ । ହିନ୍ଦି, ହିନ୍ଦୁ-ହିନ୍ଦୁସ୍ଥାନର ମୌଳବାଦୀ ସଂସ୍କୃତି ଯେ ନାରୀମୁକ୍ତିର ପରିପନ୍ଥୀ ତାହା ଓ୍ୱାଟର, ଫାୟାର ସିନେମାକୁ ଦକ୍ଷିଣପନ୍ଥୀଙ୍କ ବିରୋଧରୁ ସ୍ପଷ୍ଟ ହୁଏ । ଆହୁରି ସ୍ପଷ୍ଟ ହୁଏ ପ୍ରବାସୀ ଭାରତୀୟ (ଏନ୍.ଆର୍.ଆଇ)ଙ୍କ ଜୀବନକୁ ନେଇ ତିଆରି ହୋଇଥିବା ଡି.ଡି.ଏଲ., ପରଦେଶ, ହମଦିଲ୍ ଦେଚୁକେ ସନମ୍, ୟାଦେଁ, ପରି ସିନେମାରୁ । ମାତ୍ର ଜଗତୀକରଣ କ'ଣ ନାରୀମୁକ୍ତି ଓ ସ୍ୱାଧୀନତା ପାଇଁ ଅନୁକୂଳ ପରିବେଶ ତିଆରି କରୁଛି ? ଏଇ ଅର୍ଥନୀତିରେ ନାରୀ ଯେଉଁ ସ୍ୱାଧୀନତା ପାଇବ ସେ କେବଳ ନିଜ ଶ୍ରମକୁ ବିକିବାର ସ୍ୱାଧୀନତା, ସେ ବଜାରକୁ ବ୍ୟବହାର କରିବ । ବଜାର ତାଠୁ ବେଶୀ ବ୍ୟବହାର କରିବ ନାରୀକୁ । ଶ୍ରମ କରିବାର ସ୍ୱାଧୀନତା ବି ତାର ଇଚ୍ଛା ଅନିଚ୍ଛା ଉପରେ ନିର୍ଭର କରିବନି । ଶ୍ରମ କେବଳ ନିଜ ପରିବାରର ଆର୍ଥିକ ଆବଶ୍ୟକତା ପାଇଁ ଏବଂ ବଜାରର ଜିନିଷ କିଣିବା ପାଇଁ । ଅନ୍ୟ ଦିଗରେ ପୁଞ୍ଜିବାଦୀ ବ୍ୟବସ୍ଥାକୁ ଶସ୍ତା ଶ୍ରମଶକ୍ତି ଯୋଗାଇବ । ଅବଶ୍ୟ ଘରୁ ଗୋଡ଼ କାଢ଼ିବାର ସ୍ୱାଧୀନତାଟି ରହିବ । ଅନ୍ୟ ଦିଗରେ ମଣିଷର ସ୍ୱାଧୀନତା ସଂକୁଚିତ ହେଉଛି । ପୁଞ୍ଜି ନିର୍ଦ୍ଦେଶିତ ରାଷ୍ଟ୍ର ଦ୍ୱାରା ସାଧାରଣଙ୍କ ଅଧିକାରର ସଂକୋଚନ ଚାଲିଛି, ସେତେବେଳେ ନାରୀର ସ୍ୱାଧୀନତା ପ୍ରଭାବିତ ହେବ, ସେ କଥା ନିଃସନ୍ଦେହ ।

ସମ୍ପତ୍ତି ବା ପୁଞ୍ଜିବୃଦ୍ଧି ନାଁରେ ପୁଞ୍ଜିବାଦୀ ବିକାଶ, ପୃଥିବୀ ଓ ମଣିଷ ପ୍ରଜାତିର ଆୟୁଷକୁ କମେଇ ଚାଲିଛି । ଧନବୃଦ୍ଧି ଦ୍ୱାରା (ଏଇ ପ୍ରକ୍ରିୟାରେ) ସରକାରଙ୍କ ଆର୍ଥିକ କ୍ଷମତା ବଢୁ ନାହିଁ, କେବଳ ଏକ ଧନୀ ଶ୍ରେଣୀର ଆୟ ବଢୁଛି, ଆଞ୍ଚଳିକ ବୈଷମ୍ୟ ବଢୁଛି, ଧନୀ ଗରିବ ମଧ୍ୟରେ ତାରତମ୍ୟ ବଢୁଛି, ଦାରିଦ୍ର୍ୟ ବଢୁଛି, ଅଧିକାଂଶଙ୍କ କ୍ରୟଶକ୍ତି କମୁଛି । ବିଶେଷ କରି ଚାଷୀ, ଆଦିବାସୀ, ଦଳିତ,ଶ୍ରମିକ ଶ୍ରେଣୀ ତଥା ଶିଶୁ ଓ ମହିଳା ଉପରେ ଏହାର ପ୍ରଭାବ ଅତି ନକାରାତ୍ମକ । ଗତ ପଚାଶ ବର୍ଷ ଭିତରେ ପୃଥିବୀର ମାଟି ସମ୍ପଦର ଏକ ତୃତୀୟାଂଶ ନଷ୍ଟ ହୋଇଥିଲାବେଳେ, ଜଳ ଓ ମତ୍ସ୍ୟ ସମ୍ପଦର ଏକ ଚତୁର୍ଥାଂଶ ଶେଷ ହୋଇଗଲାଣି ।

ଏହାର ସାଦାସିଧା ଉତ୍ତର ହେଲା ଏଇ ପୁଞ୍ଜିବାଦୀ ବ୍ୟବସ୍ଥାକୁ,ତା ପଛର ବିଚାର ଓ ମୂଲ୍ୟବୋଧକୁ ବିରୋଧ କରିବାକୁ ହେବ । ପୁଞ୍ଜିର ଅଗ୍ରଗତିକୁ ପ୍ରତିହତ କରିବାକୁ ହେବ । ଦୁର୍ବଳ ପଡ଼ିଯାଇଥିବା ସାମ୍ୟବାଦୀ, ସମାଜବାଦୀ ବିଚାରକୁ ବଳ ଦେବାକୁ ହେବ । ପୁଞ୍ଜିବାଦ ଯେମିତି ତା ସାମ୍ନାରେ ଆସୁଥିବା ଆହ୍ୱାନ ମାନଙ୍କୁ ଆଖି ଆଗରେ ରଖି ନିଜକୁ ପୁନଃ ସଂଚରିତ, ପୁନଃ ସଂଗଠିତ କରୁଛି, ଠିକ୍ ସେମିତି ସାମ୍ୟବାଦୀ, ସମାଜବାଦୀ ବିଚାରଧାରାକୁ ସଂପ୍ରତି ତା'ର ଆହ୍ୱାନ କ୍ରମେ ପୁନଃସଂଗଠିତ କରିବାକୁ ହେବ । ପୂର୍ବର ଦୋଷ ଦୁର୍ବଳତାରୁ ଶିକ୍ଷା ଗ୍ରହଣ କରିବାକୁ ହେବ । ପୂର୍ବର ବିଫଳତା ଓ ତା'ର ନିରାକରଣ ଖୋଜି ତାକୁ ଆହୁରି ସଂଶୋଧିତ ଓ ପ୍ରଗତିଶୀଳ କରିବାକୁ ହେବ । ପୁଣି ଏକ ବିଚାରଧାରାକୁ ଲୋକଙ୍କ ସାମ୍ନାରେ ଥୋଇବାକୁ ହେବ, ଯାହା ପୁଞ୍ଜିବାଦୀ ବ୍ୟବସ୍ଥାରେ ଅଣନିଃଶ୍ୱାସୀ ଜନତାକୁ ଆଶାବାଡ଼ି ଧରେଇବ । ତାଙ୍କ ମନରେ ଉଦବେଳନ ସୃଷ୍ଟି କରିବ । ସେ ବିଚାରରେ ମୁଖ୍ୟ କେତୋଟି ଦିଗକୁ ଗମ୍ଭୀରୀତାର ସହ ବିଚାରକୁ ନେବାକୁ ହେବ ।

୧. ରାଷ୍ଟ୍ରର ଭୂମିକା / ଲୋକ ନିୟନ୍ତ୍ରଣରେ ରାଷ୍ଟ୍ର ବିକଳ୍ପ ବ୍ୟବସ୍ଥା ।

୨. ଆଧୁନିକ ସମୃଦ୍ଧିର ମିଥ୍ୟା ଆଦର୍ଶକୁ ବର୍ଜନ ଓ ବିକଳ୍ପ ବିକାଶର ସଂଜ୍ଞା ନିରୂପଣ ।

୩. ପ୍ରଯୁକ୍ତି ଓ ପ୍ରଯୁକ୍ତିପ୍ରସୂତ ଯନ୍ତ୍ର ଓ ଉତ୍ପାଦନ ପ୍ରକ୍ରିୟା ପଛର ରାଜନୈତିକ ଅର୍ଥନୀତିକୁ ବୁଝିବା ଓ ତା ଉପରେ ଲୋକ ନିୟନ୍ତ୍ରଣ ।

୪. ପ୍ରାକୃତିକ ସମ୍ପଦର ପଣ୍ୟକରଣକୁ ବନ୍ଦ କରିବା । ସ୍ଥାୟୀ ବିକାଶ ନିମନ୍ତେ ବିକଳ୍ପ ଅର୍ଥନୈତିକ ବିକାଶ ଢାଞ୍ଚାର ନିର୍ମାଣ ।

କିନ୍ତୁ ଏଠି କହି ରଖିବାକୁ ହେବ ଯେ କେବଳ ବୌଦ୍ଧିକ କସରତରୁ ଜନ୍ମୁଥିବା ବିଚାରଧାରା, ଲେଖା ଆକାରରେ ମଲା ଅକ୍ଷର ହୋଇ ପଡ଼ି ରହିଥିବା ଚିନ୍ତାଧାରା ନିଜେ

ନିଜେ କୌଣସି ପରିବର୍ତ୍ତନ ଆଣେ ନାହିଁ । କୌଣସି ବିଚାରଧାରା ଉପରେ ବିଶ୍ୱାସ, ଆସ୍ଥା ରଖିଥିବା କିଛି ମଣିଷଙ୍କୁ ଏଥିପାଇଁ ସଚେତନ ପ୍ରୟାସ କରିବାକୁ ହେବ । ଏ ନେଇ ନିଜ ସାଧମତେ କିଏ କ'ଣ କରିପାରିବ ସେ କଥା ସ୍ଥିର କରିନେବାର ବେଳା ବି ଗଡ଼ି ଚାଲିଛି । ପ୍ରଥମ କାମ ଯାହା ହୁଏତ ପତ୍ର ପତ୍ରିକା, ଲେଖାଲେଖି କରୁଥିବା ବୁଦ୍ଧିଜୀବୀମାନେ କରିପାରିବେ । ସେ କାମଟି ହେଲା ଇତିହାସ ଓ ଆଦର୍ଶର ମୃତ୍ୟୁଘଣ୍ଟି ବଜଉଥିବା ପୁଞ୍ଜିବାଦ ଯେ ଅତୀତରେ ଅନେକ ଥର ପରାଜିତ ହୋଇଛି, ଦୁର୍ବଳ ହୋଇ ପଡ଼ିଛି ଏବଂ ତାକୁ ପରାଜିତ କରାଯାଇ ପାରିବ ଏ ବିଶ୍ୱାସ ଲୋକଙ୍କ ଭିତରେ ସୃଷ୍ଟି କରିବା ପାଇଁ ପ୍ରଚାର ଓ ପ୍ରସାରର ଗଣମାଧ୍ୟମ ଗୁଡ଼ିକୁ ପାରୁପର୍ଯ୍ୟନ୍ତ ବ୍ୟବହାର କରିବା ଓ ଆଧୁନିକ ସମୃଦ୍ଧି ପଛରେ ଥିବା ନାରୀକୟତାକୁ ଲୋକଙ୍କ ସାମ୍ନାରେ ଥୋଇବା । ଅବଶ୍ୟ ମୁଖ୍ୟଧାରାର ଗଣମାଧ୍ୟମ ସବୁ ପୁଞ୍ଜିବାଦୀଙ୍କ ହାତରେ । ଏଣୁ ତା'ର ବିକଳ୍ପ ମାଧ୍ୟମ ଖୋଜିବାକୁ ପଡ଼ିବ । ପୁଞ୍ଜିବାଦୀ ତଥା ବଜାରୀ ବିକାଶ ବିରୋଧରେ ଚାଲିଥିବା ଆନ୍ଦୋଳନକୁ, ପ୍ରକାଶିତ ହେଉଥିବା ସାହିତ୍ୟକୁ ଲୋକଲୋଚନକୁ ଆଣି ଏ ଅବଦମିତ ମନେ ହେଉଥିବା ଶକ୍ତି ବିରୋଧରେ ଲଢ଼େଇ ଚାଲିଛି ଏବଂ ଲଢ଼େଇ ସମ୍ଭବ, ଏ ବିଶ୍ୱାସ ଜନ୍ମେଇବା କାମଟି ହାତକୁ ନିଆଯାଇ ପାରିବ । ଗଣ ଆନ୍ଦୋଳନ, ଗଣ ପ୍ରତିରୋଧ ଗଢ଼ି ତୋଳିବାରେ ଏବଂ ଜନ ଆନ୍ଦୋଳନ ଭିତରେ ଲେଖକର ଭୂମିକା କ'ଣ ହୋଇପାରେ, ସେ ନେଇ ଓଡ଼ିଶାରେ ଚର୍ଚ୍ଚା ଖୁବ୍ କମ୍ ।

ଆମ ଦେଖିବାରେ ଏ ପ୍ରକାର ପୁଞ୍ଜିବାଦୀ ପ୍ରକ୍ରିୟା ପ୍ରତି ଆମ ଦେଶରେ ମୁଖ୍ୟତଃ ଆଜି ଆଦିବାସୀ ଅଞ୍ଚଳରୁ ବିରୋଧ ଆସୁଛି । ତାଛଡ଼ା ଓଡ଼ିଶା, ପୁଞ୍ଜିବାଦ ବିରୋଧୀ ଲଢ଼େଇରେ ଯେ ଏକ ପ୍ରକୃଷ୍ଟ କ୍ଷେତ୍ର ତାହା ଗତ କୋଡ଼ିଏ ବର୍ଷର ଇତିହାସ ପ୍ରମାଣ କରୁଛି । ଚିଲିକା, ଗୋପାଳପୁର ବାଲିଆପାଳ, ନୃସିଂହନାଥର ଆନ୍ଦୋଳନ, କଳିଙ୍ଗନଗର, କାଶୀପୁର, ନିୟମଗିରି ଓ ପୋସ୍କୋ ବିରୋଧରେ ଜଗତସିଂହପୁର ଅଞ୍ଚଳରେ ତୀବ୍ର ଓ ବ୍ୟାପକ ହେଉଥିବା ଜନଆନ୍ଦୋଳନ ଆମ ଆଗରେ ଆଶା ଓ ସମ୍ଭାବନା ଉଦ୍ରେକ କରେ । ଏସବୁ ଲଢ଼େଇର ଲୋକେ ପୁଞ୍ଜିବାଦୀ ପ୍ରକ୍ରିୟାକୁ କି ଭାବେ ଦେଖିଥିଲେ, ଦେଖୁଛନ୍ତି, ସେ ମଧ୍ୟ ଆଲୋଚନାର ବିଷୟ । ଏସବୁ ଲଢ଼େଇରେ ଅନେକ ଦୋଷ ଦୁର୍ବଳତା ରହିଛି ନିଶ୍ଚୟ । କିନ୍ତୁ ଆମ ବୁଝାମଣାରେ ଏସବୁ କେବଳ ଜୀବନ ଜୀବିକା କି ପରିବେଶର ଲଢ଼େଇ ନୁହଁ, ପୁଞ୍ଜିବାଦକୁ ପ୍ରତିହତ କରିବାର ମଞ୍ଜି ବି ରହିଛି ତା ଭିତରେ । ଭଲ ପାଣି, ପବନ, ପରିବେଶ ଦେଇ, କୋଡ଼ା ଖୋସା କରି ତାକୁ ଗଛ କରିବାର ଦାୟିତ୍ୱ କେବଳ ସ୍ଥାନୀୟ ଲୋକଙ୍କର ନୁହଁ । ଆଉ ସଭିଙ୍କର ମଧ୍ୟ, ଯେଉଁମାନେ ଏ ପୁଞ୍ଜିବାଦୀ ବ୍ୟବସ୍ଥାର ବିରୋଧୀ ।

ପୁଞ୍ଜିବାଦୀ ବ୍ୟବସ୍ଥା ବିରୋଧରେ ଏସବୁକୁ ପ୍ରାରମ୍ଭିକ ପ୍ରୟାସ ବା ଲଢ଼େଇର ଆରମ୍ଭ ବିନ୍ଦୁ ଭାବରେ ଗ୍ରହଣ କରାଯାଇପାରେ ।

ଅନ୍ୟକିଛି ପ୍ରଶ୍ନ ଉଠୁଛି । ପୁଞ୍ଜିବାଦୀ ବ୍ୟବସ୍ଥା ବିରୋଧରେ ଲଢ଼ିବା ପାଇଁ ରାଷ୍ଟ୍ର ଏକ ଏକକ, ଦେଶପ୍ରେମ ଏକ ଆୟୁଧ ହୋଇପାରିବ କି ? ସ୍ଥାନୀୟ ଭିତ୍ତିରେ ଗଢ଼ି ଉଠିଥିବା ଆନ୍ଦୋଳନଗୁଡ଼ିକ ଭିତରେ ସମ୍ପଦ, ସମନ୍ୱୟ ଏବଂ ମିଳିତ ଲଢ଼େଇର ସମ୍ଭାବନା କେତେ ? ସଂଗଠିତ, ଅସଂଗଠିତ କ୍ଷେତ୍ର ମଧ୍ୟରେ, କୃଷକ ଓ ଶ୍ରମିକ ଶ୍ରେଣୀ ଭିତରେ ମିଳିତ ଲଢ଼େଇର ସର୍ବସମ୍ମତ ବିନ୍ଦୁ ଖୋଜା ଯାଇ, ସେ ବିନ୍ଦୁର କାମ ଆରମ୍ଭ ସମ୍ଭବ କି ? ଏସବୁ ପ୍ରଶ୍ନର ଉତ୍ତର ଉପରେ ଦେଶବ୍ୟାପୀ ଆନ୍ଦୋଳନର ସମ୍ଭାବନା ନିର୍ଭର କରେ । ମାତ୍ର ଏମାନଙ୍କ ଭିତରର ଦ୍ୱନ୍ଦ, ବିଚାରଗତ ବିସଂଗତି, ପୁଞ୍ଜିବାଦୀ ପ୍ରକ୍ରିୟାକୁ ଚିହ୍ନିବା, ବୁଝିବାରେ ବିଫଳତା ଆଦି କଥା ଅନ୍ତରାୟ ହୋଇ ଛିଡ଼ା ହୋଇଛି । ଅନ୍ୟ ଦିଗରେ ଜଗତୀକରଣର ଯାତନା ବିରୋଧରେ ପୃଥିବୀର ବିଭିନ୍ନ ପ୍ରାନ୍ତରେ, ଦେଶରେ ବିଭିନ୍ନ ପ୍ରକାରର ଗୋଷ୍ଠୀ ସକ୍ରିୟ ହୋଇଛନ୍ତି । ସେମାନଙ୍କ ଭିତରେ ସମ୍ବାଦ ଓ ମିଳିତ କାର୍ଯ୍ୟକ୍ରମର କଳ୍ପନା ବି ମନକୁ ଆସୁଛି । ଦେଶସ୍ତରରେ, ବିଶ୍ୱସ୍ତରରେ ଜଗତୀକରଣ ବିରୋଧରେ ଲଢ଼େଇର କଳ୍ପନା, ସ୍ୱପ୍ନ ପରି ମନକୁ ଆସେ । ଏଇ କଳ୍ପନା ଏଇ ସ୍ୱପ୍ନ ଦେଖଣା ହିଁ ଆମର ପୁଞ୍ଜି ଯାହା ଆମକୁ ଆହୁରି ଆକ୍ରାମକ ହେବାରେ ସାହାଯ୍ୟ କରିବ । ଅନ୍ତତଃ କିଛି ମଣିଷ ହିଁ ବଞ୍ଚେଇ ରଖିବେ ବିଚାରକୁ । ଅନ୍ତତଃ କିଛି ମଣିଷ ହିଁ ବଞ୍ଚେଇ ରଖିବେ ବାକି ମଣିଷଙ୍କୁ, ପୃଥିବୀକୁ ।





ଓଡ଼ିଆ ପାଠକଙ୍କ ପାଖରେ ସରୋଜ ଜଣେ ପ୍ରତିଶ୍ରୁତିସଂପନ୍ନ ଯୁବ କବି ଭାବରେ ଯେତିକି ପରିଚିତ ଠିକ୍ ସେତିକି ପରିଚିତ ଜଣେ ମୌଳିକ ପ୍ରାବନ୍ଧିକ ଓ ଜଣେ ନିଷ୍ଠାପର ସମାଜକର୍ମୀ ଭାବରେ ।

ଦୀର୍ଘ ବର୍ଷ ଧରି ତାଙ୍କର ବିଭିନ୍ନ ପ୍ରକାରର ପ୍ରତ୍ୟକ୍ଷ ଅନୁଭୂତି ସହ ଛଳନା, ଶୋଷଣ ଏବଂ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ବୈଷମ୍ୟବିହୀନ ଏକ ବିକଳ୍ପ ବିଶ୍ୱର ଅନୁସଂଧାନ ପାଇଁ ଆବଶ୍ୟକୀୟ ଗଭୀର ଚିନ୍ତନର ଫଳଶ୍ରୁତି ଏହି ପୁସ୍ତକ ।

-ପ୍ରକାଶକ

